# ପେରିୟାର :
# ଜୀବନୀ ଓ ଭାବନା



ଧନେଶ୍ୱର ସାହୁ

# ପେରିୟାର :
# ଜୀବନୀ ଓ ଭାବନା

ମୂଳ ଲେଖା

**ମଂଜଇ ବସନ୍ତନ**

ଅନୁବାଦ

**ଧନେଶ୍ୱର ସାହୁ**

# ପେରିୟାର: ଜୀବନୀ ଓ ଭାବନା

ମୂଳଲେଖା (ତାମିଲ) : ମଂଜଇ ବସନ୍ତନ
ଇଂରାଜୀ ଅନୁବାଦ : ଜେ.ଏନ୍. ଦାମୋଦର
ଓଡ଼ିଆ ରୂପାନ୍ତର (ଇଂରାଜୀ) : ଧନେଶ୍ୱର ସାହୁ ©
ପ୍ରକାଶକାଳ : ୧୪ ଏପ୍ରିଲ ୨୦୨୨
ପ୍ରକାଶକ : ସମ୍ୟକ୍ ଫାଉଣ୍ଡେସନ୍
ଇ-୩୪, ଜି.ଜି.ପି. କଲୋନୀ
ରସୁଲଗଡ଼, ଭୁବନେଶ୍ୱର-୭୫୧୦୨୫
ମୋ. : ୯୩୪୮୬୯୭୮୭୧
ମୁଦ୍ରଣ : ପଦ୍ମାକମର୍ସିୟାଲ୍ ସେଣ୍ଟର,
ଏ /୬୨/୧, କଳିଙ୍ଗ ଭବନ, ନୟାପଲ୍ଲୀ,
ସିଣ୍ଡିକେଟ୍ ବ୍ୟାଙ୍କ ନିକଟରେ, ଭୁବନେଶ୍ୱର-୧୨
ମୂଲ୍ୟ : ଟ. ୨୦୦/-(ଦୁଇଶତ ଟଙ୍କା)

## Periyar : Jibani O Bhawana

*Author :*
**Manjai Vasanthan (Tamil)**
*English Translation :*
**J.N. Daamodhar**
*Odia Translation :*
**Dhaneswar Sahoo** ©
*Publisher :*
**Samyak Foundation**
E-34, G.G.P. Colony,
Near Nilakantheswar Temple,Rasulgarh, BBSR
Mob. : 9348697871
*Printed at :*
**Padma Commercial Centre**
Kalinga Bhawan, A/62/1, Nayapalli,
(Syndicate Bank Campus)BBSR-12
*Price :* **Rs. 200/-**

# - ମୁଖବନ୍ଧ -

ଏହି ପୁସ୍ତକଟି ଇଂରାଜୀ ପୁସ୍ତକ "He is Periyar: Life and Thoughts"ର ଅନୁବାଦ । ପୁସ୍ତକଟି ପ୍ରଥମେ ତାମିଲ ଭାଷାରେ ଲେଖାଯାଇଥିଲା ଓ ଲେଖକ ହେଉଛନ୍ତି ମଞ୍ଜାଇ ବସନ୍ତନ । ତାମିଲରୁ ବହିଟିକୁ ଇଂରାଜୀ ଅନୁବାଦ କରିଛନ୍ତି ଜେ.ଏନ. ଦାମୋଦର । ଇଂରାଜୀ ବହିରୁ ମୁଁ ଓଡ଼ିଆ ଅନୁବାଦ କରିଛି ।

ପେରିୟାରଙ୍କର ମୂଳ ନାମ ରାମସାମୀ ନାଇକର । ତେବେ ସେ ତାଙ୍କର ଜାତିସୂଚକ ସାଙ୍ଗିଆ ନାଇକରକୁ ଯୁବକ ବୟସରୁ କାଟି ଦେଇଥିଲେ । ସେତେବେଳେ ସେ "ଏରୋଡ ଭେଙ୍କଟ ରାମସ୍ୱାମୀ" ଭାବରେ ପରିଚିତ ଥିଲେ । ଏରୋଡ ତାଙ୍କ ଗ୍ରାମର ନାମ ଓ ଭେଙ୍କଟ ତାଙ୍କ ବାପାଙ୍କ ନାମ ଓ ସେ ଥିଲେ ତାମିଲନାଡୁର ବ୍ୟକ୍ତି । ଦକ୍ଷିଣ ଭାରତରେ ଜଣଙ୍କ ନାମ ପୂର୍ବରୁ ଗ୍ରାମ ନାମ ଓ ବାପାଙ୍କ ନାମ ଲେଖାଯିବାର ପରଂପରା ରହିଥିଲା । ରାମସ୍ୱାମୀ ପରେ ପେରିୟାର ଭାବରେ ପରିଚିତ ହେଲେ, ପେରିୟାର ଅର୍ଥ ତାମିଲ ଭାଷାରେ ମହାନ । ସେ ଏବେ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ପେରିୟାର ଭାବେ ସୁପରିଚିତ ।

ପେରିୟାରଙ୍କର ଜନ୍ମ ୧୭ ସେପ୍ଟେମ୍ବର ୧୮୭୯ ଓ ଦେହାନ୍ତ ୨୪ ଡିସେମ୍ବର ୧୯୭୩ । ତାଙ୍କର ଆନୁଷ୍ଠାନିକ ଶିକ୍ଷା ନଥିଲା ଓ ସେ ଚତୁର୍ଥ ଶ୍ରେଣୀରୁ ପାଠପଢ଼ା ଛାଡିଥିଲେ । ତେବେ ତାଙ୍କ ଜୀବନ ଓ ଅନୁଭୂତି ଥିଲା ତାଙ୍କ ବିଶ୍ୱବିଦ୍ୟାଳୟ । ସେ ଥିଲେ ସ୍ୱାଧୀନତା ସଂଗ୍ରାମୀ, ସମାଜ ସଂସ୍କାରକ, ଆତ୍ମମର୍ଯ୍ୟାଦା ଆନ୍ଦୋଳନର ପ୍ରତିଷ୍ଠାତା ଓ ଆଧୁନିକ ତାମିଲନାଡୁର ଜନକ । ତାଙ୍କୁ କୁହାଯାଏ ଦକ୍ଷିଣ ଏସିଆର ସକ୍ରେଟିସ୍ । ସେ ଥିଲେ ମାନବିକ ଅଧିକାରର ମହାନ ପ୍ରବକ୍ତା ଓ ବ୍ୟକ୍ତି ମର୍ଯ୍ୟାଦାବୋଧର ସଫଳ ରୂପକାର । ୟୁଏନସ୍କୋ ଆନ୍ତର୍ଜାତିକ ପୁରସ୍କାର ମାନପତ୍ରରେ ତାଙ୍କ ବିଷୟରେ କୁହାଯାଇଛି "ପେରିୟାର ହେଉଛନ୍ତି ଆଗାମୀ ଯୁଗର ପ୍ରଫେଟ୍, ଦକ୍ଷିଣ ଏସିଆର ସକ୍ରେଟିସ୍ ସାମାଜିକ କ୍ରାନ୍ତି ଆନ୍ଦୋଳନର ଜନକ ତଥା ଅଜ୍ଞତା, କୁସଂସ୍କାର, ଅର୍ଥହୀନ ପରଂପରା ଏବଂ ନିକୃଷ୍ଟ ବ୍ୟବହାରର କଠୋର ସମାଲୋଚକ ।" ପେରିୟାରଙ୍କୁ ୧୯୭୦ ମସିହାରେ ୟୁଏନସ୍କୋ ତରଫରୁ ଆନ୍ତର୍ଜାତିକ ସମ୍ମାନ ପ୍ରଦାନ କରାଯାଇଥିଲା । ଯୁବକ ବୟସରୁ ପେରିୟାର ଥିଲେ ସମାଜସେବୀ ଓ ଏରୋଡ ମୁନିସ୍‌ପାଲିଟିର

ଚେୟାରମାନ । ପରେ ଗାନ୍ଧୀଜୀଙ୍କ ଦ୍ୱାରା ପ୍ରଭାବିତ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ତେବେ ଭାରତୀୟ ସମାଜରୁ ଜାତିପ୍ରଥା, ଅସ୍ପୃଶ୍ୟତାପରି କଳଙ୍କକୁ ଦୂର କରିବାରେ ସେ ଥିଲେ ଏକ ଅଗ୍ରଣୀ ବ୍ୟକ୍ତିତ୍ୱ । ଶିକ୍ଷାର ପ୍ରସାର, ମହିଳା ସଶକ୍ତୀକରଣ, ବ୍ୟକ୍ତି ମର୍ଯ୍ୟାଦାବୋଧ, ମାନବିକ ଅଧିକାର, ସାମାଜିକ ନ୍ୟାୟ, ବୈଜ୍ଞାନିକ ମନୋଭାବ ସମାଜରେ ବ୍ୟାପକ କରିବାରେ ତାଙ୍କର ଜୀବନ ଥିଲା ଉତ୍ସର୍ଗୀକୃତ । ଏହି ସବୁ ଲକ୍ଷ୍ୟ ହାସଲ କରିବାକୁ ସେ ତାମିଲନାଡୁରେ 'ଦ୍ରାବିଡ କାଜାଗମ' ସୃଷ୍ଟି କରିଥିଲେ । ସକ୍ରିୟ ରାଜନୀତିଠାରୁ ଦୂରରେ ରହି ସମାଜ ସଂସ୍କାର ଓ ଏକ ନ୍ୟାୟପୂର୍ଣ୍ଣ ସମାଜ ଗଠନ ପାଇଁ ସେ ପଥପ୍ରଦର୍ଶକ ହୋଇ ରହିଥିଲେ । ତାଙ୍କ ସମସାମୟିକ ରାଜନୈତିକ ନେତୃବୃନ୍ଦ ତାଙ୍କଠାରୁ ପରାମର୍ଶ ଓ ପ୍ରେରଣା ନେଇ କାର୍ଯ୍ୟ କରୁଥିଲେ ।

ସମାଜ ସଂସ୍କାରକମାନେ ସାଧାରଣତଃ ବହୁ ସମାଲୋଚନାର ଶରବ୍ୟ ହୁଅନ୍ତି ଓ ଅନେକଙ୍କ ପାଇଁ ସେ ବିବାଦୀୟ ହୋଇପଡନ୍ତି । ଏହାର କାରଣ ସମାଜ ସଂସ୍କାରକମାନେ ନିଜ ସମୟଠାରୁ ବହୁ ଆଗରେ ଥାନ୍ତି । ପେରିୟାର ସେହିପରି କେତେକ କ୍ଷେତ୍ରରେ ବେଶ୍ ବିବାଦୀୟ ହୋଇଛନ୍ତି ଓ ଅନେକ ବାର ସ୍ୱାଧୀନ ଭାରତରେ ମଧ୍ୟ କାରାବରଣ କରିଛନ୍ତି । ତେବେ ତାଙ୍କର ପ୍ରଗତିଶୀଳ ଭାବନା ଓ ମାନବବାଦୀ ଦୃଷ୍ଟିଭଙ୍ଗୀ ପାଇଁ ଅଗଣିତ ସମର୍ଥକ ବା ଅନୁଗାମୀ ସୃଷ୍ଟି କରିଛନ୍ତି । ପରେ ସେ ଏକ ଅନୁଷ୍ଠାନରେ ରୂପାନ୍ତରିତ ହୋଇଛନ୍ତି । ତାଙ୍କ ନାମରେ ବିଶ୍ୱବିଦ୍ୟାଳୟ ହୋଇଛି, ତାଙ୍କ ସ୍ମୃତିରେ ଆନ୍ତର୍ଜାତିକ ପୁରସ୍କାର ଦିଆଯାଉଛି ଓ ତାମିଲନାଡୁର ବିଭିନ୍ନ ସହରରେ ତାଙ୍କର ପ୍ରତିମୂର୍ତ୍ତିମାନ ନିର୍ମିତ ହୋଇଛି । ଭାରତୀୟ ସମାଜ-ସଂସ୍କାର ଆନ୍ଦୋଳନ କ୍ଷେତ୍ରରେ ଓ ତାମିଲନାଡୁରେ ସେ ଏକ ଯୁଗାନ୍ତକାରୀ ବ୍ୟକ୍ତିତ୍ୱ ଭାବେ ଅମରକୀର୍ତ୍ତିର ଅଧିକାରୀ ହୋଇଛନ୍ତି ।

ଏହି ପୁସ୍ତକଟିରୁ ପାଠକମାନେ ପେରିୟାରଙ୍କ ଜୀବନୀ, କାର୍ଯ୍ୟ ଓ ବିଚାର ସଂପର୍କରେ ସଂକ୍ଷିପ୍ତ ସୂଚନା ପାଇପାରିବେ । ପୁସ୍ତକଟିରୁ ପାଠକମାନେ ପ୍ରେରଣା ପାଇ ତାଙ୍କ ବିଷୟରେ ଅଧିକ ଜାଣିବା ପାଇଁ ବା ତାଙ୍କର କୃତି ପଢିବା ପାଇଁ ଆଗ୍ରହୀ ହେଲେ ମୋର ଅନୁବାଦଜନିତ ଶ୍ରମ ସାର୍ଥକ ହେଲା ବୋଲି ଆଶା କରିବି ।

ଯୋଗାଯୋଗ : ୯୪୩୮୫୪୭୮୯୫ ଧନେଶ୍ୱର ସାହୁ

# ମୋର ଆନନ୍ଦ ଓ ଶ୍ରଦ୍ଧା

ମୋର ସହକର୍ମୀ ଓ ପ୍ରଗତିଶୀଳ ଲେଖକ ମଂଜାଇ ବସନ୍ତନ ତାଙ୍କର ତାମିଲ ପୁସ୍ତକ "ଅର୍ଥମାତ୍ରା ହିନ୍ଦୁ ମଦମ" ପାଇଁ ତାମିଲନାଡୁ ପାଠକମାନଙ୍କ ପାଖରେ ସୁପରିଚିତ। ସେ ବହୁ ସମୟରେ ଲୋକମାନଙ୍କୁ ବିଭିନ୍ନ ପ୍ରଶ୍ନ ପଚାରନ୍ତି ଫଳରେ ଲୋକମାନେ ସେ ବିଷୟରେ ଚିନ୍ତାକରିବେ।

ତାଙ୍କ ରଚିତ "ସେ ହେଉଛନ୍ତି ପେରିୟାର" ପୁସ୍ତକରେ ଲେଖକ ପେରିୟାରଙ୍କ ବିଷୟରେ ଲେଖିଛନ୍ତି। ସେ କିପରି ଜନଗଣଙ୍କର ଆଖି ଖୋଲିଛନ୍ତି ଓ ଜୀବନର ଶେଷ ପର୍ଯ୍ୟନ୍ତ ସମାଜ ସେବାରେ ବ୍ରତୀ ହୋଇଛନ୍ତି ତାହାର କାହାଣୀ ବର୍ଣ୍ଣନା କରିଛନ୍ତି। ଏହି ପୁସ୍ତକଟି ପଢ଼ିବାଦ୍ୱାରା ଜଣେ ପେରିୟାରଙ୍କ ଜୀବନୀ, ଦର୍ଶନ, ଗବେଷଣା, ଭାଷଣ ଓ ପ୍ରତିପାଦନକୁ ଭଲ ଭାବେ ବୁଝିପାରିବେ। ଏକ କ୍ଷୁଦ୍ର ପୁସ୍ତକରେ ସେ ପେରିୟାରଙ୍କ ଜୀବନର ମୁଖ୍ୟ ଘଟଣାବଳୀ ଓ ଦର୍ଶନର ସ୍ୱଷ୍ଟ ଚିତ୍ର ପ୍ରଦାନ କରିବାକୁ ପ୍ରୟାସ କରିଛନ୍ତି।

ଲେଖକ ବସନ୍ତନ ଭାଇକମ ଆନ୍ଦୋଳନ, ସେରନ ମାଦେବୀ ଗୁରୁକୁଳ ଘଟଣା, ସେ କାହିଁକି କଂଗ୍ରେସ ଦଳ ପରିତ୍ୟାଗ କଲେ, ଆତ୍ମସମ୍ମାନ ଅନୁଷ୍ଠାନ, ହିନ୍ଦୀ ଭାଷାର ବିରୋଧ, ଥିରୁକୁରାଳଙ୍କର ଲେଖାକୁ ଜନପ୍ରିୟ କରିବା, ଦ୍ରାବିଡ କାଜାଗମର ପ୍ରତିଷ୍ଠା ଇତ୍ୟାଦି ପେରିୟାରଙ୍କ ଜୀବନର ମୁଖ୍ୟ ଘଟଣାମାନଙ୍କୁ ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି। ଆନ୍ନାଦୁରାଇଙ୍କ ସହ ତାଙ୍କର ମତଭେଦ, ମାନିଆମାଇଙ୍କ ସହ ବିବାହ, ପେରିୟାରଙ୍କ ଧର୍ମ, ଈଶ୍ୱର, ପୁରାଣ, ଆତ୍ମମର୍ଯ୍ୟାଦାର ଅନୁଭବ, ଜାତିପ୍ରଥାର ବିଲୋପ, ମହିଳାମାନଙ୍କ ଅଧିକାର ନେଇ କାର୍ଯ୍ୟ, ସାମାଜିକ ନ୍ୟାୟ, ରାଜନୀତି ଅର୍ଥନୀତି ଇତ୍ୟାଦି ବହୁ ବିଷୟରେ ତାଙ୍କ ବିଚାର ଦର୍ଶାଇଛନ୍ତି। ସମାଜରୁ କୁସଂସ୍କାର ଦୂରୀକରଣ, ଧାର୍ମିକ ବିଶ୍ୱାସମାନଙ୍କର ପ୍ରତ୍ୟାଖ୍ୟାନ, ତାଙ୍କର ବିଦେଶ ରାଷ୍ଟ୍ରମାନଙ୍କୁ ଭ୍ରମଣ ଓ ତାର ପ୍ରଭାବ ବି ପୁସ୍ତକରେ ଆଲୋଚନା ହୋଇଛି। ସେହିପରି ଧର୍ମ, ଫଳିତ ଜ୍ୟୋତିଷ, ପୁରାଣ, ଥିରୁକୁଳ ବିଷୟ ମାନଙ୍କ ଉପରେ ସେ ଯେଉଁ ଗବେଷଣା

କରିଛନ୍ତି ତାହା ବି ପୁସ୍ତକରେ ଦେଇଛନ୍ତି । ତାମିଲନାଡୁରେ ସମାଜ ସଂସ୍କାର ଓ ସାମାଜିକ ନ୍ୟାୟ ପ୍ରତିଷ୍ଠା କ୍ଷେତ୍ରରେ ସେ ଅଗ୍ରଣୀ ଭୂମିକା ନେଇଛନ୍ତି । ଏହି ସବୁ ପ୍ରସଙ୍ଗମାନଙ୍କ ଉପରେ ଲେଖକ ସଂକ୍ଷିପ୍ତ ହେଲେ ବି ସ୍ପଷ୍ଟ ଚିତ୍ର ପ୍ରଦାନ କରିଛନ୍ତି । ଏହା ସହିତ ଭବିଷ୍ୟତ ନେଇ ତାଙ୍କର ବିଚାର ଓ ସେ ପାଇଥିବା ପୁରସ୍କାର ବା ସମ୍ମାନ ବିଷୟରେ ସୂଚନା ଦେଇଛନ୍ତି ।

ଏହା ସହ ପେରିୟାରଙ୍କ ଉପରେ ହୋଇଥିବା ଚଳଚିତ୍ର ଓ ସେ କିପରି ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଛନ୍ତି ତାହାର ବର୍ଣ୍ଣନା କରିଛନ୍ତି । ତ୍ରିଚୀ ପାଖରେ ସିରୁଗାନୁରଠାରେ କିପରି "ପେରିୟାରଙ୍କ ପୃଥିବୀ" ନିର୍ମିତ ହେଉଛି ତାହାର ବିବରଣୀ ଦେଇଛନ୍ତି । ତାମିଲନାଡୁର ଏହିଠାରେ ତାଙ୍କ ଉପରେ ଯେଉଁ ସଂଗ୍ରହାଳୟ ହେଉଛି ସେଥିରୁ ଭବିଷ୍ୟତର ବଂଶଧରମାନେ ପେରିୟାରଙ୍କ ଅବଦାନ ବିଷୟରେ ଜାଣିପାରିବେ । ଏହି ସବୁ ବିଷୟରେ ଏହି ପୁସ୍ତକରେ ସମସ୍ତ ତଥ୍ୟ ରହିଛି ଯେଉଁଥିରୁ ଜଣେ ପାଠକ ତାଙ୍କ ଉପରେ ସ୍ପଷ୍ଟ ଧାରଣା ପାଇପାରିବେ । ପେରିୟାରଙ୍କ ଉପରେ ଏହା ଯେ ଏକ ମହତ୍ତ୍ୱପୂର୍ଣ୍ଣ କୃତି ଏହା କୁହାଯାଇପାରେ ।

**ଚେନ୍ନାଇ** — **କେ. ବୀରମଣି**

**୪.୫.୨୦୧୮** — **ସଭାପତି, ଦ୍ରାବିଡ କାଜାଗମ**

# ପେରିୟାରଙ୍କ ବିଚାରର ସାରକଥା

ପେରିୟାରଙ୍କ ବିଚାର ହେଉଛି ଏକ ଖଣି ସଦୃଶ । ସ୍ୱାଧୀନ ଭାବନା ବ୍ୟକ୍ତ କରିବାରେ ସେ ଜଣେ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ । ସେ ବହୁ ପ୍ରସଙ୍ଗ ଉପରେ ତାଙ୍କ ମତ ବ୍ୟକ୍ତ କରିଛନ୍ତି । ଏପରି କୌଣସି ସମସ୍ୟା ନାହିଁ ଯାହାର ସମାଧାନ ସେ ଚିନ୍ତା କରିନାହାନ୍ତି । ତାଙ୍କ ବିଚାର ସାର୍ବଜନୀନ । ଏହି ଦୃଷ୍ଟିରୁ ବିଶିଷ୍ଟ ତାମିଲ କବି ଭାରତୀ ଦଶନ ମତ ଦେଇଛନ୍ତି ଯେ "ତାଙ୍କ ବିଚାର ବିଶ୍ୱ ସ୍ତରରେ ପ୍ରଶଂସାଯୋଗ୍ୟ । ତେବେ ଭାରତବର୍ଷର ଗୋଟିଏ ଜାତିର ଧୂର୍ତ୍ତ ଲୋକମାନେ ତାଙ୍କୁ ନ୍ୟୂନ କରିବାକୁ ଚେଷ୍ଟା କରନ୍ତି କାରଣ ସେମାନଙ୍କର ଧୂର୍ତ୍ତାମୀକୁ ସେ ଲୋକଙ୍କ ପାଖରେ ପ୍ରକାଶ କରିବାକୁ ଉଦ୍ୟମ କରିଛନ୍ତି । ବ୍ରାହ୍ମଣମାନେ ତାଙ୍କୁ ନିରୀଶ୍ୱରବାଦୀ କହି ଇଶ୍ୱର ବିଶ୍ୱାସୀ ନୁହନ୍ତି ବୋଲି ତାଙ୍କ ବିରୁଦ୍ଧରେ ଅଭିଯୋଗ ଆଣନ୍ତି । ଏହି ମିଥ୍ୟା ପ୍ରଚାରରେ ବିଭ୍ରାନ୍ତ ନ ହେବା ପାଇଁ ଓ ପେରିୟାରଙ୍କ ଅବଦାନକୁ ଯଥାର୍ଥ ଭାବେ ହୃଦୟଙ୍ଗମ କରିବା ଉପଲକ୍ଷେ ଏହି ପୁସ୍ତକଟି ଲେଖାଯାଇଛି ।

ପେରିୟାରଙ୍କ ସମସ୍ତ ଭାବନାକୁ ଯଥାର୍ଥ ଭାବରେ ଅବବୋଧ କରିଥିବା ଲୋକ ଖୁବ୍ କମ୍ ରହିଛନ୍ତି । ପେରିୟାରଙ୍କୁ ବୁଝିବା ପାଇଁ ଦଶ ହଜାର ପୃଷ୍ଠା ଜଣଙ୍କ ପକ୍ଷେ ପଢ଼ିବା ସମ୍ଭବ ନୁହେଁ । ଏହା ଛଡା ସାଂପ୍ରତିକ ଦୁନିଆରେ କେତେ ଅଳ୍ପ ସମୟରେ ଜଣଙ୍କୁ ବୁଝିହେବ ତାହା ବି ଲୋକମାନେ ଚାହିଁଥାନ୍ତି । ତେଣୁ ଏହି ବହିର ପ୍ରଥମ ପଚାଶ ପୃଷ୍ଠାରେ ମୁଁ ପେରିୟାରଙ୍କ ଜୀବନୀକୁ ଆଲୋଚନା କରିଛି ଓ ଅବଶିଷ୍ଟ ଭାଗରେ ତାଙ୍କ ବିଚାର ବିଷୟରେ ବ୍ୟାଖ୍ୟା କରିଛି । ଉଦାହରଣ ସ୍ୱରୂପ ମହିଳା ଅଧିକାର ବିଷୟରେ ପେରିୟାର ୭୫୦ ପୃଷ୍ଠା ଲେଖିଛନ୍ତି, ମୁଁ ତାହାର ସାରାର୍ଥ ମାତ୍ର ୨୫ ପୃଷ୍ଠାରେ ପ୍ରକାଶ କରିଛି । ଏହି ପୁସ୍ତକଟି ପଢ଼ିବାଦ୍ୱାରା ଜଣେ ପାଠକ ତାଙ୍କ ଜୀବନର ଘଟଣାବଳୀ ଓ ଭାବନାମାନଙ୍କୁ ହୃଦୟଙ୍ଗମ କରିପାରିବ । ବହିରେ ତାଙ୍କ ଭାବନାର କୌଣସି ପରିବର୍ତ୍ତନ କରାଯାଇ ନାହିଁ ।

ଏକ ଅର୍ଥପୂର୍ଣ୍ଣ ଓ ସ୍ୱତନ୍ତ୍ର ଜୀବନ ନିର୍ବାହ କରିବା ପାଇଁ ପାଠକମାନେ ଏହି ପୁସ୍ତକଟି ପଢ଼ିବାକୁ ମୁଁ ଅନୁରୋଧ କରୁଛି ।

**ମଂଜଇ ବସନ୍ତନ**

# ସୂଚୀପତ୍ର

# ୧. ପିଲା ଜନ୍ମ ବିଷୟରେ ପେରିୟାରଙ୍କ ମତ

ଏରୋଡ ସହରରେ ଗୋଟିଏ ସମୟରେ ଭେଙ୍କଟ ନାଇକର ଜଣେ ଗରିବ ଶ୍ରମିକ ଥିଲେ । ସେ ବହୁ ପରିଶ୍ରମ କରି ବ୍ୟବସାୟ ଆରମ୍ଭ କଲେ । ତାଙ୍କୁ ଅଠର ବର୍ଷ ହୋଇଥିବା ବେଳେ ସେ ପଥର କାଟୁଥିଲେ ଓ ସେ ବାବଦରେ ଦିନକୁ ସେତେବେଳେ ମାତ୍ର ଦୁଇ ଅଣା ମଜୁରୀ ପାଉଥିଲେ, ସେ ସମୟର ହିସାବରେ ଏହା ଏକ ଟଙ୍କାର ଆଠଭାଗରୁ ଏକ ଭାଗ ଥିଲା । ସେ ତାଙ୍କ ପରିବାରର ଜଣେ ସଂପର୍କୀୟ ମହିଳା ଚିନ୍ନାତୟାମଲଙ୍କୁ ବିବାହ କଲେ । ଚିନ୍ନାତୟାମଲ ଏକ ଇଟା ଭାଟିରେ ଜଣେ ଶ୍ରମିକ ଭାବେ କାର୍ଯ୍ୟ କରୁଥିଲେ ଓ ସେ ବି ଦିନକୁ ଦୁଇ ଅଣା ରୋଜଗାର କରୁଥିଲେ । ସେମାନେ ଏକ ଛୋଟିଆ ଘରେ ରହୁଥିଲେ । ଭେଙ୍କଟ ନାଇକର କିଛି ଟଙ୍କା ସଞ୍ଚୟକରି ଗୋଟିଏ ବଳଦଗାଡି ଓ ଦୁଇଟି ବଳଦ କିଣିଲେ । ସେ ନିଜର ଶଗଡ ଗାଡିକୁ ଭଡାରେ ଦେଲେ । ସେହି ରୋଜଗାରରୁ ସେ ତେଜରାତି ଦୋକାନଟିଏ ଆରମ୍ଭ କଲେ । ଚିନ୍ନାତୟାମଲ ଚାଉଳ ବ୍ୟବସାୟ ଆରମ୍ଭ କଲେ ।

ସେମାନଙ୍କର ଦୁଇଟି ସନ୍ତାନ ଜନ୍ମ ହୋଇଥିଲେ । ତେବେ ସେମାନେ ଛୁଆ ବେଳେ ମରିଗଲେ । ତାପରେ ଦଶ ବର୍ଷ ଧରି ସେମାନଙ୍କର ଆଉ ପିଲା ପିଲି ହେଲା ନାହିଁ । ଏହାପରେ ମେ’ ମାସ ୧୮୭୭ ରେ ତାଙ୍କର ପୁଅଟିଏ ଜନ୍ମ ହେଲା, ତାହାର ନାମ ସେମାନେ କ୍ରିଷ୍ଣସାମୀ ରଖିଲେ । ତାର ଦୁଇ ବର୍ଷ ପରେ ୧୭ ସେପ୍ଟେମ୍ବର ୧୮୭୯ରେ ତାଙ୍କର ଆଉ ଗୋଟିଏ ପୁଅ ହେଲା ଓ ତାହାର ନାମ ସେମାନେ ରାମସାମୀ ରଖିଲେ । ରାମସାମୀଙ୍କର ଜନ୍ମପରେ ତାଙ୍କର ଆଉ ଗୋଟିଏ ଝିଅ ଜନ୍ମ ହୋଇଥିଲା, ତାହାର ନା ସେମାନେ ପୋନୁତୟାମଲ ଦେଇଥିଲେ । ତା’ର ଦଶବର୍ଷ ପରେ ସେମାନଙ୍କର ଆଉ ଗୋଟିଏ ଝିଅ ଜନ୍ମ ହେଲା ଓ ତାହାର ନାମ କାନାମଲ ରଖାଯାଇଥିଲା । ଭେଙ୍କଟ ନାଇକରଙ୍କର ସାଧୁତା, ସରଳତା ଓ ଦୟାଭାବ ଯୋଗୁ ସେ ଏରୋଡ ଓ କୋଭାଇ ଅଞ୍ଚଳରେ

ଜଣାଶୁଣା ଥିଲେ । ସେ ଅଞ୍ଚଳରେ ନାଇକର କହିଲାମାନେ ଲୋକମାନେ କେବଳ ଭେଙ୍କଟକୁ ବୁଝୁଥିଲେ । ଭେଙ୍କଟ ନାଇକରଙ୍କର ସାନ ଖୁଡିଙ୍କର କୌଣସି ପିଲା ଛୁଆ ନଥିଲେ । ସେ ରାମସାମୀଙ୍କୁ ପୁଅ କରିବାକୁ ଚାହିଁଲେ, ହେଲେ ଚିନ୍ନାତୟାମଲ ଏଥିରେ ରାଜି ହେଲେ ନାହିଁ । ଏଣୁ ଭେଙ୍କଟ ନାଇକର ରାମସାମୀଙ୍କୁ ତାଙ୍କ ଖୁଡିଙ୍କ ଘରେ କିଛି ବର୍ଷ ରହିବାକୁ ଦେଇଥିଲେ । ରାମସାମୀ ନିଜ ଜେଜେ ମା'ଙ୍କ ଘରେ ଛେଳିକ୍ଷୀର ପିଉଥିଲେ, କାରଣ ଜେଜେ ମା'ଙ୍କର ଆର୍ଥିକ ସ୍ଥିତି ଆଦୌ ଭଲ ନଥିଲା । ରାମସାମୀ ଖେଳିବାକୁ ବହୁତ ଭଲ ପାଉଥିଲେ ଓ କୌଣସି ପିଲା କିଛି ବଦମାସୀ କଲେ ସେ ତାଙ୍କୁ ବାଡେଉଥିଲେ ।

ରାମସାମୀଙ୍କୁ ଛ' ବର୍ଷ ହୋଇଥିଲା ବେଳେ ସେ ଏକ ସ୍କୁଲରେ ପଢିବାକୁ ଗଲେ । ସେ ସ୍କୁଲକୁ ଯିବାରୁ କୌଣସି ନୀଚ ଜାତିର ପିଲାଙ୍କ ଘରେ ପାଣି ନପିଇବାକୁ ତାଙ୍କୁ କୁହାଯାଇଥିଲା । ଜେଜେ ମା ତାଙ୍କୁ କହିଥିଲେ ଯେ ଶୋଷହେଲେ ସେ କେବଳ ତାଙ୍କ ଶିକ୍ଷକଙ୍କ ଘରେ ଯାଇ ପାଣି ପିଇବେ । ହେଲେ ରାମସାମୀ ନିମ୍ନ ଜାତିର ଲୋକଙ୍କ ଘରେ ଯାଇ ପାଣି ପିଉଥିଲେ ଓ ଏପରିକି ସେମାନଙ୍କ ଘରେ ଯାହା ଦେଲେ ଖାଉଥିଲେ । ଏହା ଚିନାତୟାମଲ ଜାଣିବା ପରେ ରାମସାମୀଙ୍କୁ ଆଉ ଜେଜେ ମା'ଘରକୁ ପଠାଇଲେ ନାହିଁ, କାରଣ ତାଙ୍କ ପୁଅ ନୀଚଜାତିର ଲୋକଙ୍କ ଘରକୁ ଯାଇ ପାଣି ପିଇବା, ଖାଇବା କଥାକୁ ସେ ଗ୍ରହଣ କରିପାରୁ ନଥିଲେ । ତେବେ ନିଜ ବାପା ମା'ଙ୍କ ପାଖକୁ ଫେରି ଆସିବା ପରେ ମଧ୍ୟ ରାମସାମୀ ନିଜର ନୀଚ ଜାତିର ସାଙ୍ଗମାନଙ୍କ ସହ ମିଳାମିଶା କରିବା, ଖେଳିବା ଅଭ୍ୟାସ ଛାଡି ନଥିଲେ । ଏହା ଜାଣିବା ପରେ ତାଙ୍କ ବାପା ମା ତାଙ୍କୁ ବହୁତ ଦଣ୍ଡ ଦେଉଥିଲେ । ଯାହା ଦଣ୍ଡ ଦେଲେ ମଧ୍ୟ ରାମସାମୀ ନିଜ ଅଭ୍ୟାସ ପରିବର୍ତ୍ତନ କଲେ ନାହିଁ । ରାମସାମୀ ନିଜ ପିଲାଦିନର ଘଟଣା ବିଷୟରେ ଲେଖିଛନ୍ତି – "ମୋ ଗୋଡକୁ ଘରେ ବାନ୍ଧି ଦେଉଥିଲେ, ଥରେ ପନ୍ଦର ଦିନ ଧରି ମୋ ଦୁଇଗୋଡକୁ ବାନ୍ଧି ଦିଆଯାଇଥିଲା । ଏପରିକି ମୋ ହାତ ମାନଙ୍କୁ ମଧ୍ୟ ବାନ୍ଧି ଦିଆଯାଉଥିଲା । ମୋତେ ନୀଚଜାତିର ପିଲାଙ୍କ ସହ ନ ମିଶିବାକୁ କୁହାଗଲେ ବି ମୁଁ ସୁଯୋଗ

ପାଇଲେ ସେମାନଙ୍କ ସହ ମିଳାମିଶା କରୁଥିଲି "। ରାମସାମୀ ଜଣେ ପଥର କଟାଳିଙ୍କର ସହକାରୀ ଭାବରେ କାର୍ଯ୍ୟକଲେ । ପରେ ସେ ଭାରତୀୟ ସମାଜରେ ସଂସ୍କାର ଆଣିବାକୁ ଉଦ୍ୟମ କରିଥିଲେ । ସମାଜରେ କିଛି ଭଲ କାମକରିବା ପାଇଁ ତାଙ୍କ ଭିତରେ ପିଲାଟି ବେଳୁ ସଂକଳ୍ପ ସୃଷ୍ଟି ହୋଇଥିଲା ।

ସେ ଗୋଟିଏ ଇଂରାଜୀ ମାଧ୍ୟମ ସ୍କୁଲରେ ପଢିବାକୁ ତାଙ୍କ ନାମ ଲେଖାଗଲା । ତେବେ ସେ ସ୍କୁଲରେ ଦୁଷ୍ଟାମୀ କଲେ ଓ ପାଠପଢ଼ାରେ ଆଦୌ ଆଗ୍ରହ ଦେଖାଇଲେ ନାହିଁ । ସେ ତାଙ୍କ ଶିକ୍ଷକଙ୍କୁ ଖରାପ ବ୍ୟବହାର ଦେଖାଇ ଥିବାରୁ ଦଣ୍ଡିତ ହୋଇଥିଲେ, ହେଲେ ତାଙ୍କର ବ୍ୟବହାରରେ କିଛି ପରିବର୍ତ୍ତନ ହେଲା ନାହିଁ । ଭେଙ୍କଟ ନାଇକର ପୁଅର ବ୍ୟବହାରରେ ଅତିଷ୍ଠ ହୋଇ ଶେଷରେ ତାର ପାଠପଢ଼ା ବନ୍ଦ କରିଦେଲେ । ରାମସାମୀଙ୍କୁ ଦଶବର୍ଷ ବେଳକୁ ତାଙ୍କର ପାଠପଢ଼ାରେ ଡୋରି ବନ୍ଧାଗଲା ।

ରାମସାମୀ ବାପାଙ୍କ ବ୍ୟବସାୟରେ ସହଯୋଗ ଦେଇ ସେଠାରେ ଭଲ କାର୍ଯ୍ୟ କଲେ । ଏଣୁ ବାପା ତାଙ୍କ ଉପରେ ସନ୍ତୁଷ୍ଟ ହେଲେ । ସେ ପୁରାଣ, ଈଶ୍ୱର, ଭାଗ୍ୟ ଇତ୍ୟାଦି ବିଷୟରେ ଆଲୋଚନା କରିବାକୁ ଭଲ ପାଉଥିଲେ । ସମୟ ପାଇଲେ ଏସବୁ ବିଷୟରେ ପଢୁଥିଲେ ଓ ଅନ୍ୟମାନଙ୍କ ସହ ଏ ବିଷୟରେ ଆଲୋଚନା କରୁଥିଲେ । ତାଙ୍କ ପରିବାରକୁ ଆସୁଥିବା ସାଧୁ ସନ୍ଥମାନଙ୍କୁ ସେ ପ୍ରଶ୍ନ ପଚାରୁଥିଲେ ଓ ସେମାନଙ୍କ ସହ ଯୁକ୍ତିତର୍କ କରୁଥିଲେ । ସେମାନେ ଏହି କାରଣରୁ ତାଙ୍କ ଉପରେ ଅସନ୍ତୁଷ୍ଟ ହେଉଥିଲେ । ସାଧୁ ସନ୍ଥମାନେ ତାଙ୍କ ଘରକୁ ଆସି ବହୁ ସମୟରେ ରହୁଥିଲେ ଓ ବାପାଙ୍କର ଆତିଥ୍ୟ ଗ୍ରହଣ କରୁଥିଲେ । ରାମସାମୀ ଅନୁଭବ କରୁଥିଲେ ଯେ ସେମାନେ ବିଭିନ୍ନ ଅବାନ୍ତର ଓ ଅବିଶ୍ୱାସନୀୟ କଥାମାନ କହୁଛନ୍ତି । ରାମସାମୀ ଯଦିବା ଈଶ୍ୱରଙ୍କୁ ଭକ୍ତି କରୁଥିଲେ ତେବେ ବ୍ରାହ୍ମଣମାନେ ପୁରାଣରୁ ଯେଉଁ ସବୁ ମନଗଢ଼ା କାହାଣୀମାନ କହୁଥିଲେ ତାକୁ ସେ ବିଶ୍ୱାସ କରିପାରୁ ନଥିଲେ । ସେ ସମୟ ପାଇଲେ ପୁରାଣମାନ ପଢୁଥିଲେ ଓ ସେସବୁ ବିଷୟରେ ଚର୍ଚ୍ଚା କରୁଥିଲେ ।

ରାମସାମୀଙ୍କ ବାପାଙ୍କ ମଣ୍ଡି ପାଖରେ ଜଣେ ବ୍ରାହ୍ମଣ ଦୋକାନଟିଏ କରିଥିଲେ । ସେ ସବୁବେଳେ କହୁଥିଲେ ଯେ ଯାହା ଭାଗ୍ୟରେ ରହିଛି ତାହା ନିଶ୍ଚୟ ଘଟିବ । ଯାହା ଘଟେ ତାହା ପୂର୍ବନିର୍ଦ୍ଧାରିତ । ଥରେ ରାମସାମୀ ସେହି ବ୍ରାହ୍ମଣଙ୍କୁ ଗୋଟିଏ ଶିକ୍ଷା ଦେବାକୁ ଚାହିଁଲେ । ବ୍ରାହ୍ମଣଙ୍କ ଦୋକାନର ଉପରଟି ଗୋଟିଏ ବାଡି ଉପରେ ଢିରା ଦିଆଯାଇଥିଲା । ଥରେ ରାସମାସୀ ସେହି ବାଡିଟିକୁ ଠେଲିଦେଲେ, ଫଳରେ ଉପର  ଭାଗଟି ପଡିଗଲା ଓ ବ୍ରହ୍ମାଣଙ୍କ ମୁଣ୍ଡରେ ବାଜିଲା । ସେ ରାମସାମୀଙ୍କୁ ଗାଳି ଦେଇ ଘଉଡାଇଲେ । ରାମସାମୀ କହିଲେ "ଯାହା ଘଟେ ତାହା ତ କପାଳ ଲିଖନ"– ଏହା କହି ସେ ସେସ୍ଥାନ ଛାଡି ଚାଲିଯାଇଥିଲେ । ରାମସାମୀଙ୍କର କାର୍ଯ୍ୟ ଯଦିବା ବିରକ୍ତିକର ଥିଲା, ତାଙ୍କ ବାପା ପୁଅଙ୍କର ଯୁକ୍ତିସଂଗତ କଥାକୁ ଭଲ ପାଉଥିଲେ ।

ରାମସାମୀ ବ୍ୟବସାୟରେ ବେଶ୍ ଆଗ୍ରହ ଓ ନିପୁଣତା  ଦେଖାଇଲେ । ବାପା ଅନୁଭବ କଲେ ଯେ ରାମସାମୀ ଭିନ୍ନ ଆବେଗ ଦେଖାଉଛନ୍ତି । ତାଙ୍କ ବାପା, ମା ତାଙ୍କୁ ବିବାହ କରିଦେବାକୁ ଆଗ୍ରହୀ ହେଲେ । ସେମାନଙ୍କର ପାରିବାରିକ ସମ୍ମାନକୁ ଦେଖି ସେମାନେ ଝିଅ ଖୋଜିବା ଆରମ୍ଭ କଲେ । ରାମସାମୀ ତାଙ୍କ ମାମୁଁ ରଙ୍ଗସାମୀ ନାଇକରଙ୍କ ଝିଅ ନାଗମଲଙ୍କୁ ବିବାହ କରିବାକୁ ଆଗ୍ରହ କଲେ । ରଙ୍ଗସାମୀ ସେଲମ ଜିଲ୍ଲାର ତଥାଂପତି ଗ୍ରାମରେ ରହୁଥିଲେ । ନାଗମଲ ମଧ୍ୟ ରାମସାମୀଙ୍କୁ ବିବାହ ପାଇଁ ବହୁତ ଆଗ୍ରହ କଲେ । ରାମସାମୀ ବହୁ ସମୟରେ ମାମୁଁଙ୍କ ଘରକୁ ଯାଉଥିଲେ, ଫଳରେ ସେ ଓ ନାଗମଲ ପରସ୍ପର ପ୍ରତି ଆକର୍ଷିତ ହୋଇଥିଲେ । ତେବେ ନାଗମଲଙ୍କର ବାପା, ମା ଅନ୍ୟ ଜଣେ ବ୍ୟକ୍ତିଙ୍କୁ ଝିଅର ବିବାହ ପାଇଁ ଭାବିଥିଲେ । ନାଗମଲଙ୍କର ବାପା, ମା ଗରିବ ଥିବାରୁ ପୂର୍ବରୁ ଥରେ ବିବାହ କରିଥିବା ଜଣେ ଯୁବକଙ୍କ ସହ ନାଗମଲଙ୍କୁ ବିବାହ ଦେବାକୁ ଚାହୁଁଥିଲେ ଫଳରେ ସେମାନଙ୍କୁ ଯୌତୁକ ଦେବାକୁ ପଡିବ ନାହିଁ । ରାମସାମୀଙ୍କର ମା ମଧ୍ୟ ଝିଆରୀକୁ ବୋହୂ କରିବାକୁ ଚାହୁଁ ନଥିଲେ, କାରଣ ସେମାନଙ୍କ ପରିବାର ଗରିବ ଥିଲେ । ତେବେ ରାମସାମୀ ନାଗମଲଙ୍କୁ ବିବାହ କରିବାକୁ ଜିଦ୍ ଧରିଲେ ।

ରାମସାମୀ ଓ ନାଗମଲ ପରସ୍ପରକୁ ବିବାହ କରିବାକୁ ଚାହିଁଥିବାରୁ ସେମାନଙ୍କର ବିବାହ ୧୮୯୮ରେ ସଂପନ୍ନ ହୋଇଥିଲା । ବିବାହ ସମୟକୁ ରାମସାମୀଙ୍କର ବୟସ ୧୯ ଓ ନାଗମଲଙ୍କର ବୟସ ୧୩ ବର୍ଷ ହୋଇଥିଲା ।

ବିଭାଘରର ଦ୍ୱିତୀୟ ବର୍ଷରେ ରାମସାମୀ ଓ ନାଗମଲଙ୍କର ଝିଅଟିଏ ଜନ୍ମ ହୋଇଥିଲା । କିନ୍ତୁ ଝିଅଟି ଛ'ମାସ ଭିତରେ ମରିଗଲା । ଝିଅଟିର ମୃତ୍ୟୁପରେ ରାମସାମୀ ଆଉ କୌଣସି ସନ୍ତାନ କରିବାକୁ ଚାହିଁଲେ ନାହିଁ । ତାଙ୍କର ଭାବନା ଆସିଲା ଯେ ସନ୍ତାନ ଜନ୍ମକରିବା ମା ପାଇଁ ଏକ ବୋଝ । ଯେଉଁମାନେ ଅଧିକ ସନ୍ତାନ ଚାହୁଁଥିଲେ ରାମସାମୀ ସେମାନଙ୍କ ସହ କୌତୁକ କରୁଥିଲେ ।

# ୨. ସେ ଗୃହ ତ୍ୟାଗକରି ସନ୍ନ୍ୟାସ ନେଲେ

ଯେତେବେଳେ ରାମସାମୀଙ୍କୁ ୨୫ ବର୍ଷ ବୟସ ହୋଇଥିଲା ତାଙ୍କ ଭିତରେ ଓ ତାଙ୍କ ବାପାଙ୍କ ମଧ୍ୟରେ ଗୁରୁତର ମତପାର୍ଥକ୍ୟ ସୃଷ୍ଟି ହେଲା । ବାପା ତାଙ୍କୁ ବହୁତ ଗାଳି ଦେଲେ । ରାମସାମୀ ବହୁତ ଅଶାନ୍ତ ହୋଇ ସେ ବନାରସ ଚାଲିଯିବାକୁ ସ୍ଥିର କଲେ । ତାଙ୍କ ଶଳା ଓ ତାଙ୍କର ଅନ୍ୟ ଜଣେ ସାଙ୍ଗ ମଧ୍ୟ ବନାରସ ଯିବାକୁ ଚାହୁଁଥିଲେ । ତେବେ ସେମାନେ ଚେନାଇ ପହଞ୍ଚିବା ପରେ ସେଠାରୁ ଫେରିଆସିଥିଲେ । ରାମସାମୀ ଏକା ବିଜୟୱାଡାରେ ପହଞ୍ଚିଲେ । ସେଠାରେ ଗଣପତି ଆୟାର ଓ ଭେଙ୍କଟରମଣ ଆୟାର ନାମକ ଦୁଇଜଣ ବ୍ୟକ୍ତିଙ୍କ ସହ ପରିଚୟ ହେଲା ଓ ସେମାନେ ପରସ୍ପରର ବନ୍ଧୁ ହେଲେ । ସେମାନେ ସେଠାରୁ ହାଇଦ୍ରାବାଦ ଗଲେ । ସେମାନେ ସ୍ଥିରକଲେ ଯେ ସେମାନେ ଖାଦ୍ୟ ମାଗିକରି ଖାଇବେ । ରାମସାମୀ ମୁଦି, ହାର, ନୋଳି ଇତ୍ୟାଦି ସୁନାର ଯାହା ପିନ୍ଧିଥିଲେ ତାହା ବାହାର କରିଦେଇ ତାଙ୍କୁ ରଖିଦେଲେ । ସେମାନେ ଘର ଘର ବୁଲି କିଛି ଭିକ୍ଷା କଲେ । ସେମାନେ ଯାହା ଚାଉଳ ପାଇଲେ ତାକୁ ରାନ୍ଧିକରି ଖାଇଲେ । ସେମାନେ ରାସ୍ତାକଡରେ ବସି ପୁରାଣମାନଙ୍କ ବିଷୟରେ ଆଲୋଚନା କରିବାକୁ ଲାଗିଲେ । ରାମସାମୀ ଦୁଇ ବନ୍ଧୁଙ୍କ ମତ ସହ ଏକମତ ହେଉ ନଥିଲେ । ରାସ୍ତାରେ ଯାଉଥିବା ଲୋକମାନେ ଛିଡାହୋଇ ସେମାନଙ୍କର ଯୁକ୍ତି ତର୍କକୁ ଉପଭୋଗ କରୁଥିଲେ । ଏକଦା ତାମିଲନାଡୁ କାଞ୍ଚିପୁରମର ଜନୈକ ବ୍ୟକ୍ତି ମୁରୁଗେସା ମୁଦାଲିୟାର ଛିଡା ହୋଇ ସେମାନଙ୍କର ଆଲୋଚନା ଶୁଣିଲେ । ସେ ହାଇଦ୍ରାବାଦରେ ଚାକିରି କରୁଥିଲେ । ତାଙ୍କର ପିଲାମାନେ ଯେହେତୁ କାଞ୍ଚିପୁରମ ଯାଇଥିଲେ ସେ ଏମାନଙ୍କୁ ତାଙ୍କ ଘରକୁ ଡାକିଲେ । ସେମାନେ ସେଠାରେ ତାଙ୍କ ପାଇଁ ରୋଷେଇକରି ନିଜେ ଖାଇବାକୁ ପରାମର୍ଶ ଦେଲେ । ମୁଦାଲିୟର ନିଜର କର୍ମସ୍ଥଳକୁ ଗଲାପରେ ଏମାନେ ତାଙ୍କ ଘରୁ ଯାଇ ଭିକ ମାଗୁଥିଲେ ଓ ସେ ଫେରିବା ପୂର୍ବରୁ ଫେରିଆସୁଥିଲେ । ମୁଦାଲିୟର ଯେତେବେଳେ ସେମାନେ ଭିକ ମାଗୁଥିବା ବିଷୟ ଜାଣିଲେ ସେ ଏହା ନକରିବାକୁ ସେମାନଙ୍କୁ ଅନୁରୋଧ କଲେ । ସେ ତାଙ୍କ ଅଫିସରୁ କିଛି ଅର୍ଥ

ସଂଗ୍ରହକରି ସେମାନଙ୍କୁ ଦେଲେ ଓ ତାଙ୍କର କେତେକ ସହକର୍ମୀ ଏହି ଯୁବକମାନଙ୍କୁ ସେମାନଙ୍କ ଗୃହକୁ ମଧ୍ୟ ଡାକୁଥିଲେ ।

ଯୁବକମାନେ ଏବେ ରାମାୟଣ ଉପରେ ପ୍ରବଚନ ଦେଲେ । ରାମସାମୀ ଯେହେତୁ ତେଲୁଗୁ ଜାଣିଥିଲେ ସେ ତେଲୁଗୁ ଭାଷାରେ ରାମାୟଣ ବିଷୟରେ ବୁଝାଉଥିଲେ । ମଝିରେ ମଝିରେ ସେ ଗପ ମଧ୍ୟ କହୁଥିଲେ ଓ ଏହା ଅନ୍ୟମାନଙ୍କଦ୍ୱାରା ଉପଭୋଗ୍ୟ ହେଉଥିଲା । ଏହାପରେ ତିନି ବନ୍ଧୁ ବାରଣାସୀ ଯାତ୍ରା କଲେ । ପେରିୟାର ତାଙ୍କ ହାତର ମୁଦି ଟିକୁ ଛାଡି ଅନ୍ୟସବୁ ସୁନାର ଅଳଙ୍କାର ଦେହରୁ ବାହାର କରିଦେଇ ମୁଦାଲିୟରଙ୍କ ପାଖରେ ରଖିଦେଇ ବାରାଣାସୀ ଗଲେ । ସେ ମୁଦାଲିୟରଙ୍କ ପାଖରେ ନିଜର ପରିଚୟ ଗୋପନ ରଖିଥିଲେ । ବାରାଣାସୀରେ ଯେଉଁଦିନ ସେମାନେ ପହଞ୍ଚିଲେ, ପେରିୟାରଙ୍କଠାରୁ ପୃଥକ୍ ହୋଇଗଲେ । ବାରାଣାସୀର କେତେକ ଦାତବ୍ୟ ଭୋଜନାଳୟରେ ବ୍ରାହ୍ମଣମାନଙ୍କୁ ମାଗଣାରେ ଖାଦ୍ୟ ଦିଆଯାଉଥିଲା । ତାମିଲନାଡୁର ନାଟ୍ଟୁକୋଟାଇ ଚେଟିୟାର ବାରାଣାସୀରେ କେତେକ ଦାତବ୍ୟ ଭୋଜନାଳୟ କେନ୍ଦ୍ର ଖୋଲିଥିଲେ । ବାରାଣାସୀରେ ପହଞ୍ଚିବା ପରେ ସେ ସେଠାରେ ଭୋକରେ ରହିଲେ । ଦାତବ୍ୟ ଭୋଜନାଳୟରେ କିଛି ଖାଦ୍ୟ ଖାଇବାକୁ ଗଲେ । ସେ ବ୍ରାହ୍ମଣ ହୋଇ ନଥିବାରୁ ସେଠିକାର ଜଗୁଆଳି ତାଙ୍କୁ ତଡି ଦେଇଥିଲେ । ରାମସାମୀ ଭୋକରେ ମ୍ରିୟମାଣ ହୋଇପଡିଲେ । ସେ ଦେଖିଲେ ଯେ କେତେକ ଲୋକ ଖଲିରେ କିଛି ଖାଦ୍ୟ ଛାଡିଯାଇ ତାକୁ ଫିଙ୍ଗି ଦେଉଛନ୍ତି । ସେ ସେଠାକୁ ଯାଇ ଅଇଁଠା ପତ୍ରରେ ରହିଥିବା ଖାଦ୍ୟ ଖାଇଲେ । ସେ କିଛି କାମ କରିବାକୁ ଚାହିଁଲେ । ସେ ଯେହେତୁ ନିଶ ଓ ଦାଢୀ ରଖିଥିଲେ ତାଙ୍କୁ କେଉଁଠି କାମ ମିଳିଲା ନାହିଁ । ସେ କିଛି ପଇସା ଭିକ ମାଗି ତାଙ୍କର ନିଶ ଓ ମୁଣ୍ଡବାଳ କାଟି ନଣ୍ଡା ହୋଇଗଲେ ।

ସେ ଗଙ୍ଗାନଦୀ କୂଳରେ କାମ ଉଦ୍ଦେଶ୍ୟରେ ଏକ ମଠକୁ ଗଲେ । ମଠର ଲୋକମାନେ କହିଲେ ତାଙ୍କୁ ମଠରୁ ନିର୍ଦ୍ଦିଷ୍ଟ ସମୟରେ ଭୋଜନ ଦିଆଯିବ, ଯଦି ସେ ପ୍ରତିଦିନ ପୂଜା ପାଇଁ ବେଲପତ୍ର ଆଣିଦେବେ । ତେବେ ବେଲପତ୍ର ତୋଳିବା

ପୂର୍ବରୁ ସେ ଗଙ୍ଗାରେ ସ୍ନାନକରି ବିଭୂତି ଲଗାଇ ଏହା କରିବାକୁ ମଠରେ ସର୍ତ୍ତ ରଖିଲେ । ରାମସାମୀ ଏହି ସର୍ତ୍ତରେ ସମ୍ମତ ହେଲେ ।

ଅତ୍ୟନ୍ତ ଥଣ୍ଡା ଜଳରେ ସେ ପ୍ରତିଦିନ ସକାଳେ ସ୍ନାନ କରିପାରୁନଥିଲେ । ନ ଗାଧୋଇ କେବଳ ବିଭୂତି ମାରି ହୋଇ ସେ ବେଲପତ୍ର ତୋଳିକରି ଦେଉଥିଲେ । ସେ ଅଣ୍ଟାରେ ତଉଲିଆଟିଏ ବାନ୍ଧି ଦେହରେ ଓ କପାଳରେ ବିଭୂତି ଲଗାଇ ବେଲପତ୍ର ତୋଳୁଥିଲେ । ମଠର ସନ୍ନ୍ୟାସୀ ରାମସାମୀ କ'ଣ କରୁଛନ୍ତି ତାହା ଲକ୍ଷ୍ୟ କରି ଦେଖିଲେ । ଏହାକୁ ନେଇ ସନ୍ନ୍ୟାସୀ ଜଣଙ୍କ ତାଙ୍କୁ ତିରସ୍କାର କଲେ ଓ ମଠକୁ ନଆସିବାକୁ ବାରଣ କଲେ ।

କିପରି ଖାଇବାକୁ ଦିଓଳା ପାଇବେ ଏହା ତାଙ୍କ ପାଇଁ ସମସ୍ୟା ହେଲା । ସେ ଦେଖିଲେ ଯେ ଗୋଟିଏ ସ୍ଥାନରେ ଭିକାରିମାନଙ୍କୁ କିଛି ଖାଦ୍ୟ ଦିଆଯାଉଛି । କେତେକ ଲୋକ ସେଠାରେ ପୂର୍ବ ବର୍ଷରେ ମୃତ୍ୟୁବରଣ କରିଥିବା ନିଜ ପରିବାରର ଲୋକଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଦେଉଛନ୍ତି ଓ କିଛି ଖାଦ୍ୟ ଭିକାରି ମାନଙ୍କୁ ଦେଉଛନ୍ତି । ସେ ସେଠାରେ ଭିକାରିମାନଙ୍କ ଧାଡିରେ ଛିଡା ହୋଇ କିଛି ଖାଦ୍ୟ ଆଣି ଖାଇଲେ । ସେ ସେଠାରେ ଲକ୍ଷ୍ୟକଲେ ଯେ ଭିକାରୁଣୀ ମାନେ ମଦ ପିଉଛନ୍ତି . ଆମିଷ ବି ଖାଉଛନ୍ତି ଓ ଯୌନ କାର୍ଯ୍ୟରେ ମଧ୍ୟ ସଂପୃକ୍ତ ହେଉଛନ୍ତି । ସେ ଏସବୁ କାର୍ଯ୍ୟକୁ ପସନ୍ଦ କରୁନଥିବାରୁ ସେଠାରୁ ଚାଲି ଆସିବାକୁ ସ୍ଥିର କଲେ ।

ସେ ଯେତେବେଳେ ବାରଣାସୀ ଆସିଲେ ହାତରେ କେବଳ ମୁଦିଟିଏ ପିନ୍ଧିଥିଲେ । ଏହାକୁ ସେ ଯାଇ ୧୯ ଟଙ୍କାରେ ବିକ୍ରି କଲେ । ବାରଣାସୀରୁ ସେ ଆସନୋସୋଲ ଗଲେ ଓ ପୁରୀକୁ ଆସିଲେ । ଶେଷରେ ସେଠାରୁ ସେ ଆନ୍ଧ୍ରର ୟେଲୁରରେ ଆସି ପହଞ୍ଚିଲେ । ତାଙ୍କ ପରିବାରର ଜଣେ ବଂଧୁଙ୍କ ଘରେ ପହଞ୍ଚିଲେ ଓ ସେଠାରେ ଗୋଟିଏ ମାସ ରହିଲେ ।

ଭେଙ୍କଟ ନାଇକର ଜାଣିବାକୁ ପାଇଲେ ଯେ ତାଙ୍କ ପୁଅ ରାମସାମୀ ୟେଲୁରୁ ଟାଉନରେ ରହୁଛନ୍ତି । ସେ ୟେଲୁରୁ ଆସିଲେ ଓ ରାମସାମୀଙ୍କୁ ଦେଖି

ତାଙ୍କୁ ଧରି କାନ୍ଦିବାକୁ ଲାଗିଲେ । ବାପ, ପୁଅ ସେଠାରୁ ହାଇଦ୍ରାବାଦ ଗଲେ । ରାମସାମୀ ମୁଦାଲିୟରଙ୍କ ପାଖରେ ତାଙ୍କର ସମସ୍ତ ସୁନାଗହଣା ନିରାପଦରେ ରଖିଥିଲେ । ବାପ ପୁଅ ସେଠାରୁ ତାଙ୍କ ସୁନା ସଂଗ୍ରହକରି ଏରୋଡରେ ପହଞ୍ଚିଲେ । ରାମସାମୀଙ୍କୁ ଘରେ ପାଇ ମା' - ଚିନା ତୟାମଲ, ପତ୍ନୀ- ନାଗମଲ ଓ ଭାଇ- କ୍ରିଷ୍ଣସାମୀ ଆନନ୍ଦିତ ହେଲେ । ସେମାନେ ସନ୍ଦେହ କରୁଥିଲେ ଯେ ରାମସାମୀ ଆଉ ଜୀବିତ ଭାବରେ ଘରକୁ ଫେରିବେ କି ନାହିଁ । ସେମାନେ ତାଙ୍କୁ ଘରେ ପାଇ ଆନନ୍ଦରେ ଅଶ୍ରୁ ବୁହାଇଲେ ।

ଭେଙ୍କଟ ନାଇକର ଭାବିଲେ ଯେ ରାମସାମୀ ଯଦି ବ୍ୟବସାୟରେ ପୂରା ସଂପୃକ୍ତ ହୁଅନ୍ତି ତେବେ ସେ ଆଉ କେବେ ଘର ଛାଡି ଯିବେନାହିଁ । ସେ ତାଙ୍କ ବ୍ୟାବସାୟିକ ପ୍ରତିଷ୍ଠାନର ନାମ, ତାଙ୍କ ନାମରୁ ରାମସାମୀଙ୍କ ନାମକୁ ପରିବର୍ତ୍ତନ କରିଦେଲେ । ବ୍ୟବସାୟର ସମସ୍ତ ଦାୟିତ୍ୱ ପୁଅକୁ ମଧ ଦେଲେ । ରାମସାମୀ ମଧ ତାଙ୍କର ସମସ୍ତ ପିଲାଳିଆ ସ୍ୱଭାବ ପରିହାର କରି ଜଣେ ଦାୟିତ୍ୱବାନ ବ୍ୟକ୍ତି ଭାବେ କାର୍ଯ୍ୟ କଲେ । ସେମାନଙ୍କ ବ୍ୟବସାୟରେ ବେଶ୍ ଉନ୍ନତି ହେଲା ।

ରାମସାମୀ ସବୁଲୋକଙ୍କୁ ଜାତି ନିର୍ବିଶେଷରେ ସମ୍ମାନଜନକ ବ୍ୟବହାର ଦେଖାଉଥିଲେ । ଏରୋଡ ସହରରେ ସମସ୍ତ ସାମାଜିକ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରୁଥିଲେ । ସେ ପାରିବାରିକ ସ୍ତରରେ ହେଉ ବା ବ୍ୟବସାୟ କ୍ଷେତ୍ରରେ ହେଉ କୌଣସି ସମସ୍ୟାର ବିଚାରଶୀଳ ସମାଧାନ କରିଦେଉଥିଲେ । ସହରର ସମସ୍ତ ବୁଦ୍ଧିଜୀବୀ, ସରକାରୀ କର୍ମଚାରୀ ଓ ସମାଜକର୍ମୀଙ୍କ ସହ ତାଙ୍କର ଉତ୍ତମ ସଂପର୍କ ରହିଥିଲା । ଯେତେବେଳେ ଏରୋଡରେ ମହାମାରୀ ପ୍ଲେଗ ରୋଗ ବ୍ୟାପିଲା, ସେ ବିପଦକୁ ଭୟ ନ କରି ଅସୁସ୍ଥ ଲୋକମାନଙ୍କୁ ସେବା ଦେବାକୁ ଆଗେଇ ଆସିଲେ । ମୃତ ଲୋକମାନଙ୍କର ଶବକୁ ନେଇ ଶ୍ମଶାନରେ ପୋଡିବାରେ ସାହାଯ୍ୟ ଓ ସହଯୋଗ କରୁଥିଲେ । ପରିବାର ତରଫରୁ ସେ ସମସ୍ତ ସାମାଜିକ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରୁଥିଲେ । ୧୯୦୪ ରୁ ୧୯୧୯ ଏହି ପନ୍ଦର ବର୍ଷ ଏରୋଡରେ ଜଣେ

ବ୍ୟବସାୟୀ ଓ ଜଣେ ସମାଜସେବୀ ଭାବେ ସେ କାର୍ଯ୍ୟ କରିଥିଲେ । ସେ ସହରରେ ବେଶ୍ ପରିଚିତ ହୋଇଯାଇଥିଲେ ।

ସେ ଯେହେତୁ ବାପାଙ୍କର ସମସ୍ତ ଦାୟିତ୍ୱ ମୁଣ୍ଡକୁ ନେଇଥିଲେ ସେ ମନ୍ଦିରମାନଙ୍କର ରକ୍ଷଣବେକ୍ଷଣକୁ ମଧ ଲକ୍ଷ୍ୟ ଦେଇଥିଲେ । ଅନେକ ମନ୍ଦିରର ମରାମତି କାର୍ଯ୍ୟ କରିଦେଇଥିଲେ । ବାରବର୍ଷ ଧରି ଜଣେ ଅବୈତନିକ ମାଜିଷ୍ଟ୍ରେଟ ଭାବେ ସେ କାର୍ଯ୍ୟ କରିଥିଲେ । ଗୋଟିଏ କାର୍ଯ୍ୟ ସେ ରହୁଁନଥିଲେ ମଧ ଥରେ ଯଦି ତାଙ୍କୁ ଦାୟିତ୍ୱ ଦିଆ ଯାଉଥିଲା ସେ ତାହା ଦାୟିତ୍ୱର ସହ ନିର୍ବାହ କରୁଥିଲେ ।

ଏରୋଡ ମୁନିସପାଲିଟିର ଚେୟାରମାନ ଭାବେ ମନୋନୀତ ହୋଇ କାର୍ଯ୍ୟ କରିଥିଲେ । ଚେୟାରମାନ ଥିବା ଭିତରେ ସହରରେ ପାନୀୟ ଜଳର ସୁବିଧା ଓ ପରିବହନ କାର୍ଯ୍ୟକୁ ପ୍ରାଧାନ୍ୟ ଦେଇଥିଲେ । ଯେଉଁମାନେ ସରକାରୀ ଜମି ମାଡି ଆସିଥିଲେ ତାହାର ଉଚ୍ଛେଦକରି ଲୋକମାନଙ୍କର ପ୍ରଶଂସାର ପାତ୍ର ହୋଇଥିଲେ ।

ରାମସାମୀ ସିଲ୍‌କ ପୋଷାକ ପିନ୍ଧୁଥିଲେ । ସିଗାରେଟ ପିଉଥିଲେ ଓ ପାନ ଖାଉଥିଲେ । ୧ ୯ ୧ ୯ରେ ତାଙ୍କ ବାପା ଭେଙ୍କଟ ନାଇକରଙ୍କର ଦେହାନ୍ତ ହେଲା । ତାଙ୍କ ଜାତିର ପରଂପରା ଅନୁଯାୟୀ ମୃତ ବ୍ୟକ୍ତିଙ୍କର ଶରୀରକୁ ନିଆଁରେ ପୋଡିବା କଥା । ତେବେ ଏହି ପରଂପରାକୁ ଗ୍ରହଣ ନକରି ସେ ତାଙ୍କ ବାପାଙ୍କର ମରଶରୀରକୁ ରେଲୱେ ଷ୍ଟେସନ ପାଖର ତାଙ୍କ ଜମିରେ ଗାତ ଖୋଳି ପୋତି ଦେଇଥିଲେ । ତାଙ୍କ ଭାଇ କ୍ରିଷ୍ଣସାମୀଙ୍କର ଇଚ୍ଛା ବିରୁଦ୍ଧରେ ଲୋକମାନଙ୍କୁ ସାହାଯ୍ୟ ଉଦ୍ଦେଶ୍ୟରେ ସେ ଏକ ଦାବତ୍ୟ ଟ୍ରଷ୍ଟ ଗଠନ କରିଥିଲେ ।

**କଂଗ୍ରେସ ଦଳର ଆକର୍ଷଣ :**

ଏରୋଡ ସହରର ଉନ୍ନତିମୂଳକ କାର୍ଯ୍ୟରୁ ତାଙ୍କର ଦୃଷ୍ଟି ଜାତୀୟ ସ୍ତରକୁ ପ୍ରସାରିତ ହୋଇଥିଲା । ସେ ପ୍ରତିଦିନ ସମ୍ବାଦପତ୍ର ବେଶ୍ ଆନ୍ତରିକ ଓ ନିଷ୍ଠାର ସହ

ପଢୁଥିଲେ । ଦେଶର ସ୍ୱାଧୀନତା ପାଇଁ କାର୍ଯ୍ୟ କରୁଥିବା କଂଗ୍ରେସ ଦଳ ତାଙ୍କର ଦୃଷ୍ଟି ଆକର୍ଷଣ କଲା ।

ଏରୋଡ ଥିଲା ଏକ ରେଲ୍ ଜଙ୍କସନ ଓ ଏଠାରେ ବିଭିନ୍ନ ସ୍ଥାନକୁ ରେଲଯାତ୍ରାର ସୁବିଧା ଥିଲା । ଅଧିକାଂଶ କଂଗ୍ରେସ ନେତା ଏରୋଡ ଦେଇ ଯିବା ସମୟରେ ରାମସାମୀଙ୍କୁ ସାକ୍ଷାତ କରୁଥିଲେ । ରାମସାମୀ ସମସ୍ତଙ୍କୁ ସତ୍କାର କରୁଥିଲେ । ପି.ଭି. ନାଇଡୁ ଓ ସି ରାଜଗୋପାଳଚାରୀଙ୍କ ପରି ସମ୍ମାନିତ ବ୍ୟକ୍ତିମାନେ ରାମସାମୀଙ୍କ ଘରେ ଅତିଥି ହେଉଥିଲେ ଓ ତାଙ୍କ ସହ ଆଲୋଚନା କରୁଥିଲେ । ଏରୋଡ ଓ ଚେନ୍ନାଇଠାରେ ସର୍ବ ସାଧାରଣ ସଭାରେ ୧୯୧୪ରେ ରାମସାମୀ ଲୋକମାନଙ୍କୁ ଭଲ ଭାଷଣ ଦେଇଥିଲେ। ସେ ନିଜେ ମଧ୍ୟ ଏରୋଡଠାରେ ବିଭିନ୍ନ ସଭାସମିତି ଆୟୋଜନ କରୁଥିଲେ ।

# ୩. ରାମସାମୀଙ୍କ ସଂଗ୍ରାମ ଭୂମି

ସମସ୍ତ ସରକାରୀ କାର୍ଯ୍ୟକ୍ରମରେ ବ୍ରାହ୍ମଣମାନେ ପ୍ରଭୁତ୍ୱ ବିସ୍ତାର କରୁଥିଲେ । ଏହାକୁ ବିରୋଧକରି କେତେକ ସ୍ଥାନରେ ପ୍ରତିକ୍ରିୟା ପ୍ରକାଶ ପାଉଥିଲା । ୧୯୧୦ରେ ମାଡ୍ରାସ ପ୍ରେସିଡେନ୍‌ସିରେ ବ୍ରାହ୍ମଣମାନଙ୍କ ପ୍ରଭୁତ୍ୱ ବିରୁଦ୍ଧରେ କିଛି ସ୍ୱର ଉଠିଥିଲା । ୧୯୧୬ ନଭେମ୍ବର ୧୦ ତାରିଖ ଦିନ ଡକ୍ଟର ସି.ନଟେସ୍ ମୁଦାଲିୟର "ମାଡ୍ରାସ ଦ୍ରାବିଡ ସଂଘ" ନାମରେ ଏକ ଅନୁଷ୍ଠାନ ପ୍ରତିଷ୍ଠା କଲେ ଓ ଏହାର ସଂପାଦକ ଦାୟିତ୍ୱରେ ରହିଲେ । ଜୁନ ୧୯୧୬ରେ ସେ ଚେନାଇ ସହରରେ ଦ୍ରାବିଡ ସଂଘ ଛାତ୍ରାବାସ ଟିଏ ସ୍ଥାପନ କଲେ । ଅବ୍ରାହ୍ମଣ ଛାତ୍ରମାନେ ସେଠାରେ ରହି ଚେନ୍ନାଇରେ ପଢିବା ଉଦ୍ଦେଶ୍ୟରେ ସେ ଏହା ସ୍ଥାପନ କଲେ । ଏହା ଆରମ୍ଭ କରିବା ପାଇଁ ସେ ବିଭିନ୍ନ ଲୋକଙ୍କଠାରୁ ଅର୍ଥ ସଂଗ୍ରହ କରିଥିଲେ । ଏହା ସହ ମାଡ୍ରାସ ଦ୍ରାବିଡ ସଂଘ ତରଫରୁ ଦୁଇଟି ବହି ପ୍ରକାଶ କରିବାକୁ ପଦକ୍ଷେପ ନେଇଥିଲେ । ବହି ଦୁଇଟି ହେଲା – (୧) ଦ୍ରାବିଡମାନଙ୍କର ମହନୀୟତା (୨) ଅବ୍ରାହ୍ମଣମାନଙ୍କ ଠାରୁ ଚିଠି । ଦ୍ୱିତୀୟ ବହିଟି ଦ୍ରାବିଡମାନେ ଏକତ୍ର ରହିବେ ଓ ବ୍ରାହ୍ମଣମାନଙ୍କ ସହ ସମାନ ହେବେ ଏହି ବାର୍ତ୍ତା ଦେଉଥିଲା । ନଟେସ ମୁଦାଲିୟର ସଂଗଠନଟିକୁ ଅଧିକ ସୁଦୃଢ଼ କରିବା ପାଇଁ ଡକ୍ଟର ଟି.ଏମ୍. ନାୟାର ଓ ସାର୍ ପିଟି ତ୍ୟାଗରାୟ ଚେଟିୟାରଙ୍କ ପରି ବ୍ୟକ୍ତିମାନଙ୍କୁ ସେଥିରେ ସଂପୃକ୍ତ କରିଥିଲେ କାରଣ ସେମାନେ ମଧ୍ୟ ଅବ୍ରାହ୍ମଣମାନଙ୍କ ବିକାଶ ପାଇଁ ଚିନ୍ତା ପ୍ରକଟ କରୁଥିଲେ । ୧୯୧୬ ନଭେମ୍ବର ୨୦ ତାରିଖ ଦିନ ଚେନାଇର ଭିକ୍ଟୋରିଆ ହଲଠାରେ ଅବ୍ରାହ୍ମଣମାନଙ୍କର ଏକ ସଭା ଆହୂତ ହୋଇଥିଲା । ଏହି ସଭାରେ ଆୟୋଜକମାନଙ୍କୁ ଛାଡି ୩୦ଜଣ ବିଶିଷ୍ଟ ଅବ୍ରାହ୍ମଣ ବ୍ୟକ୍ତି ଯୋଗଦେଇଥିଲେ । ଏହି ସଭାରେ ଅବ୍ରାହ୍ମଣ ମାନଙ୍କର ସମସ୍ୟା ବିଷୟରେ ସଚେତନତା ସୃଷ୍ଟି କରିବା ପାଇଁ ଓ ସେମାନଙ୍କର ଅଧିକାର ପାଇଁ ଇଂରାଜୀ, ତାମିଲ ଓ ତେଲୁଗୁରେ ସମ୍ବାଦପତ୍ର ପ୍ରକାଶ କରିବାକୁ ନିଷ୍ପତ୍ତି ହୋଇଥିଲା । ଏହି ଉଦ୍ଦେଶ୍ୟରେ ଦକ୍ଷିଣ ଭାରତୀୟ ଜନ ସଂଗଠନ ନାମରେ ଏକ ସଂସ୍ଥା ପ୍ରତିଷ୍ଠା କଲେ ।

## ଦକ୍ଷିଣ ଭାରତୀୟ ଉଦାରବାଦୀ ମହାସଂଘ :

**(The South Indian Liberal Federation)**

ଅବ୍ରାହ୍ମଣମାନଙ୍କର ରାଜନୈତିକ ସ୍ଥିତିରେ ଉନ୍ନତି ଆଣିବା ପାଇଁ ୧୯୧୬ ନଭେମ୍ବର ୨୦ରେ ଦକ୍ଷିଣ ଭାରତୀୟ ଉଦାରବାଦୀ ମହାସଂଘ ପ୍ରତିଷ୍ଠା ହୋଇଥିଲା । ସମସ୍ତ ସରକାରୀ କର୍ମସଂସ୍ଥାନ କ୍ଷେତ୍ରରେ କେବଳ ବ୍ରାହ୍ମଣମାନେ ପ୍ରଭାବ ବିସ୍ତାର କରି ରହିଥିଲେ । ମହାସଂଘ ସରକାରୀ ନୀତିରେ ପରିବର୍ତ୍ତନ ଆଣି ସବୁ ଜାତିର ଲୋକମାନଙ୍କୁ ସରକାରୀ ଚାକିରିରେ ନିଯୁକ୍ତି ଦେବାକୁ ସରକାରଙ୍କ ପାଖରେ ଦାବିକଲେ । ଅବ୍ରାହ୍ମଣ ଜାତିର ପୁଅ ଝିଅ ମାନେ କିପରି ଅଧିକରୁ ଅଧିକ ପାଠ ପଢ଼ିବେ ସେ ପାଇଁ ମଧ୍ୟ ଦୃଷ୍ଟି ଦେବାକୁ ସ୍ଥିର ହେଲା । ସବୁ ସ୍ତରରେ ଅବ୍ରାହ୍ମଣ ସଂଗଠନମାନ କରି ଶିକ୍ଷାର ପ୍ରସାର ପାଇଁ ପ୍ରୟାସ କରିବାକୁ ନିଷ୍ପତ୍ତି ନିଆଗଲା । ଅବ୍ରାହ୍ମଣ ଗରିବ ପିଲାମାନଙ୍କ ପାଠ ପଢ଼ାରେ ସାହାଯ୍ୟ କରିବାକୁ ଗୁରୁତ୍ୱ ଦିଆଗଲା । ଶିକ୍ଷାସହ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ସ୍ତରରେ ଅବ୍ରାହ୍ମଣ ମାନଙ୍କର ବିକାଶକୁ ପ୍ରାଧାନ୍ୟ ଦିଆଗଲା । ଦକ୍ଷିଣ ଭାରତୀୟ ଉଦାରବାଦୀ ମହାସଂଘର ଏହା ଆଭିମୁଖ୍ୟ ରହିଲା ।

ଦକ୍ଷିଣ ଭାରତୀୟ ଉଦାରବାଦୀ ମହାସଂଘର ଲକ୍ଷ୍ୟ ପ୍ରସାର ଉଦ୍ଦେଶ୍ୟରେ ଏକ ଇଂରାଜୀ ସମ୍ବାଦପତ୍ର ପ୍ରକାଶ କରାଗଲା । ପତ୍ରିକାର ନାମ ରହିଲା "ଜଷ୍ଟିସ" (ନ୍ୟାୟ) ଓ ଏହାର ମୁଖ୍ୟ ଦାୟିତ୍ୱ ଡକ୍ଟର ଟି.ଏମ୍. ନାୟର ନେଲେ । ତାମିଲ ଭାଷାର ସମ୍ବାଦପତ୍ରର ନାମ ରହିଲା "ଦ୍ରାବିଡ଼ିଆନ" ଓ ଏହାର ଦାୟିତ୍ୱରେ ରହିଲେ ଭକ୍ତବଛଳମ୍ ପିଲାଇ । ତେଲୁଗୁ ଭାଷାର ସମ୍ବାଦପତ୍ରର ନାମ ରହିଲା "ଆନ୍ଧ୍ର ପ୍ରକାଶିକା" ଓ ଏହାର ପ୍ରକାଶନ ଦାୟିତ୍ୱ ଏ.ସି. ପାର୍ଥସାରଥି ନାଇଡୁଙ୍କ ଉପରେ ନ୍ୟସ୍ତ ରହିଲା । ପରେ ଦକ୍ଷିଣ ଭାରତୀୟ ଉଦାରବାଦୀ ମହାସଂଘର ନାମ ପରିବର୍ତ୍ତନ କରାଯାଇ ଏହାକୁ "ଜଷ୍ଟିସ୍ ପାର୍ଟି" କରାଗଲା । ତାମିଲ ଭାଷାରେ ଏହାକୁ 'ନୀଧିକଟଚି' କୁହାଗଲା ।

ଜଷ୍ଟିସ ପାର୍ଟିର ଲୋକମାନଙ୍କର ଉପଲବ୍ଧି ହେଲା ଯେ ଯଦି ଭାରତରେ ବ୍ରିଟିଶ ଶାସନର ପରିସମାପ୍ତି ଘଟେ ତେବେ ସବୁ ସ୍ତରରେ କେବଳ ବ୍ରାହ୍ମଣମାନେ ପ୍ରଭୁତ୍ୱ ବିସ୍ତାର କରିବେ । ଯେହେତୁ ବ୍ରାହ୍ମଣମାନେ ଆବ୍ରାହ୍ମଣମାନଙ୍କର ବିକାଶ ପ୍ରତି ପରାଙ୍ମୁଖ ଥିଲେ ତେଣୁ ଜଷ୍ଟିସ ପାର୍ଟି ଇଂରେଜମାନଙ୍କର ଶାସନ ଦେଶରେ ଅବ୍ୟାହତ ରହିବା ଚାହୁଁଥିଲେ । ବ୍ରିଟିଶ ସରକାର ସବୁ ଜାତିର ଲୋକମାନଙ୍କୁ କେବଳ ନ୍ୟାୟ ପ୍ରଦାନ କରିପାରିବ । ଲୋକମାନେ ନିଜକୁ ଶାସନ କରିବା ପାଇଁ ଯୋଗ୍ୟ ନ ହେଲେ ସ୍ୱାଧୀନତାର ଅର୍ଥ କିଛି ରହିବ ନାହିଁ । ସବୁ ସ୍ତରରେ ଶିକ୍ଷା ଓ ନ୍ୟାୟର ବ୍ୟବସ୍ଥା ବ୍ରିଟିଶ ଶାସନଦ୍ୱାରା ସମ୍ଭବ ହେବ । ଯଦିବା ବ୍ରିଟିଶ ଶାସନ ବ୍ୟବସ୍ଥାରେ ଅନେକ ତ୍ରୁଟି ରହିଛି, ତଥାପି ସେମାନଙ୍କ ଶାସନ ଉନ୍ନତତର ମନେହୁଏ । ଭାରତୀୟ ସମାଜରୁ ଜାତିଗତ ଭେଦଭାବ ଦୂର ହେଲେ ଦେଶର ସ୍ୱାଧୀନତା ସ୍ୱତଃ ଆସିପାରିବ । ଏହା ଥିଲା ଜଷ୍ଟିସ ପାର୍ଟିର ଆଭିମୁଖ୍ୟ । ଏହି ବିଚାରକୁ କଂଗ୍ରେସ ଦଳ ପୂରା ବିରୋଧ କରୁଥିଲା । ଏହି ସ୍ଥିତିରେ କଂଗ୍ରେସ ପାର୍ଟି ଏକ ଅବ୍ରାହ୍ମଣ ସଂଗଠନ ସୃଷ୍ଟି କରିବାକୁ ଚାହିଁଲା, ଯଦ୍ୱାରା ଅବ୍ରାହ୍ମଣମାନେ କଂଗ୍ରେସ ଛାଡି ଜଷ୍ଟିସ ଦଳରେ ଯୋଗଦେବେ ନାହିଁ ।

ଫଳରେ ଗୋଖଲେ ହଲଠାରେ ୧୯୧୭ ସେପ୍ଟେମ୍ବର ୨୦ ତାରିଖ ଦିନ କଂଗ୍ରେସ ପାର୍ଟି "ମାଡ୍ରାସ ଷ୍ଟେଟ୍ କାଉନ୍‌ସିଲ୍" ଗଠନ କରିଥିଲା ।

# ୪. କଂଗ୍ରେସ ଦଳ ପ୍ରତି ଆକର୍ଷଣ

ଦେୱାନ ବାହାଦୁର କେଶବ ପିଲାଇ ମାଡ୍ରାସ ଷ୍ଟେଟ କାଉନ୍‌ସିଲ୍‌କୁ ନିର୍ବାଚିତ ହୋଇଥିଲେ । ରାମସାମୀ, ଲର୍ଡ ଗୋବିନ୍ଦ ଦାସ, ନାଗାଇ ପାକିରିସାମୀ ପିଲାଇ, ଶୀର୍ଖାହି ଚିଦାମ୍ବର ନାବ ମୁଦାଲିୟର, ତାଂଜାଇ ଶ୍ରୀନିବାସ ପିଲାଇ, ଜର୍ଜ ଯୋଶେଫ ମାଡ୍ରାସ ଷ୍ଟେଟ କାଉନସିଲର ଉପସଭାପତି ହୋଇଥିଲେ । ଟି.ଭି. ଗୋପାଳସ୍ୱାମୀ ମୁଦାଲିୟର, ଗୁରୁସାମୀ ନାଇଡୁ, ସର୍କରାଇ ଚେଟ୍ଟିୟାର ଓ ଥିରୁ ଭି କା ମାଡ୍ରାସ ଷ୍ଟେଟ କାଉନସିଲର ସଂପାଦକ ଭାବେ ନିର୍ବାଚିତ ହୋଇଥିଲେ । ଜଷ୍ଟିସ ପାର୍ଟି ବିରୁଦ୍ଧରେ କୌଶଳୀ ବ୍ରାହ୍ମଣମାନେ କଂଗ୍ରେସ ଭିତରେ ଅବ୍ରାହ୍ମଣମାନଙ୍କୁ ନେଇ ମାଡ୍ରାସ ଷ୍ଟେଟ କାଉନସିଲ ଗଠନ କରିଥିଲେ । ଏହି କାଉନସିଲର ନୀତିକୁ ପ୍ରସାର କରିବା ପାଇଁ ପି.ଭି. ନାଇଡୁ ସମଗ୍ର ରାଜ୍ୟରେ ଗସ୍ତ କରିଥିଲେ । ଭି.ଓ. ଚିଦାମ୍ବରମ ପିଲାଇ ଏହି କାଉନସିଲରେ କାର୍ଯ୍ୟ କରିଥିଲେ ଓ ସହଯୋଗ ଦେଇଥିଲେ ।

ଅବ୍ରାହ୍ମଣ ଜାତିର ଲୋକମାନଙ୍କ ମଙ୍ଗଳ ପାଇଁ କାଉନ୍‌ସିଲ ଯେ କାର୍ଯ୍ୟକରୁଛି ଏହା ଲୋକମାନଙ୍କୁ ଧାରଣା ଦିଆଯାଉଥିଲା । କଂଗ୍ରେସ ଦଳକୁ ଦୃଢ଼ କରିବା ସେମାନଙ୍କର ଲକ୍ଷ୍ୟ ଥିଲା । ଜଷ୍ଟିସ ପାର୍ଟିକୁ ପ୍ରକୃତରେ ଧ୍ୱଂସ କରିବା ସେମାନଙ୍କର ଉଦ୍ଦେଶ୍ୟ ରହିଥିଲା । ଦେଶର ସ୍ୱାଧୀନତା ପାଇଁ ସଂଗ୍ରାମ ବିଷୟ ଲୋକମାନଙ୍କ ଭିତରେ ପ୍ରସାର କରାଯାଉଥିଲା । ଜଷ୍ଟିସ ପାର୍ଟିକୁ କାଉନସିଲ ଗୋଷ୍ଠୀ ନ୍ୟୂନ କରିବା ପାଇଁ ବ୍ରାହ୍ମଣଙ୍କର ଆଭିମୁଖ୍ୟ ରହିଥିଲା । ତାମିଲମାନେ ତାମିଲ ଭାଷାରେ କଥା ହେବା ପାଇଁ କାଉନସିଲ ଗୁରୁତ୍ୱ ଦେଉଥିଲା । ଜଷ୍ଟିସ ପାର୍ଟି କାଉନସିଲର ଉଦ୍ଦେଶ୍ୟ ବୁଝିଲାପରେ କାଉନ୍‌ସିଲ ଯେ ବ୍ରାହ୍ମଣମାନଙ୍କର ଅଧସ୍ତନ ହୋଇଛି, ଏହା ବିଶ୍ୱାସ କରୁଥିଲା । ପୁନଶ୍ଚ କାଉନସିଲ ଜଷ୍ଟିସ ପାର୍ଟିର ପ୍ରଭାବକୁ ନ୍ୟୂନ କରିବା ପାଇଁ "ଦେଶ ଭକ୍ତ" ନାମରେ ଏକ ତାମିଲ ସମ୍ବାଦପତ୍ର ପ୍ରକାଶ କଲା । ଦେଶ ଭକ୍ତ ସମ୍ବାଦପତ୍ରରେ ରାମସାମୀ, ଡ. ରଂଜନ, ଜର୍ଜ ଜୋସେଫ, ଲର୍ଡ ଗୋବିନ୍ଦ ଦାସଙ୍କୁ ନିର୍ଦ୍ଦେଶକ ଭାବରେ ନିଆଗଲା ।

ମାଡ୍ରାସ ଷ୍ଟେଟ୍ କାଉନ୍‌ସିଲର ଦ୍ୱିତୀୟ ସମ୍ମିଳନୀ ୧୯୧୯ରେ ଏରୋଡଠାରେ ଆୟୋଜିତ ହୋଇଥିଲା । ସେଥିରେ ରାମସାମୀଙ୍କୁ ଅଭ୍ୟର୍ଥନା କମିଟିର ଚେୟାରମାନ କରାଯାଇଥିଲା । ସମ୍ମିଳନୀରେ ଯୋଗ ଦେଇଥିବା ଥିରୁ ଭି. କା ରାମସାମୀ ଓ ନାଗମଲଙ୍କର ପୋଷାକ ଦେଖି ସେମାନଙ୍କୁ ଜମିଦାର ଓ ଜମିଦାରିଣୀ ବୋଲି ବର୍ଣ୍ଣନା କରିଥିଲେ ।

ରାମସାମୀ ୧୯୧୯ରେ କଂଗ୍ରେସ ଦଳରେ ଯୋଗ ଦେଇଥିଲେ ଓ ଏହାକୁ ସମର୍ଥନ କରୁଥିଲେ । ଜାଲିଆନ ବାଗ ଗଣହତ୍ୟା ପରେ ସେ ଦେଶରୁ ବ୍ରିଟିଶ ଶାସନର ଅବସାନ ଚାହିଁ ଦେଶର ସ୍ୱାଧୀନତା ଆଶା କରୁଥିଲେ । ସେ କଂଗ୍ରେସରେ ଯୋଗଦେବା ପାଇଁ ଏରୋଡ ମୁନିସପାଲିଟିର ଚେୟାରମାନ ପଦରୁ ଇସ୍ତଫା ଦେଇଥିଲେ । ସେ ବିଭିନ୍ନ ସଂଗଠନରେ ୨୯ଟି ପଦ ପଦବୀରୁ ମଧ୍ୟ କଂଗ୍ରେସରେ ଯୋଗଦେବା ପାଇଁ ଇସ୍ତାଫା ପ୍ରଦାନ କରିଥିଲେ । ସେଲମ ମୁନିସପାଲ କାଉନସିଲ ପଦରୁ ରାଜାଜୀ ମଧ୍ୟ ଇସ୍ତଫା ଦେଇଥିଲେ ।

ରାମସାମୀ ଯେଉଁ ବର୍ଷ ଗୁଡିକରେ ଏରୋଡ ମୁନିସପାଲିଟିର ଚେୟାରମାନ ଥିଲେ, ସେ ସହରରେ ଅନେକ ଜନହିତକର କାର୍ଯ୍ୟ କରିଥିଲେ । ସାର୍.ପି. ରାଜଗୋପାଳଚାରୀ ଆଇ.ସି. ଏସ. ରାମସାମୀଙ୍କର କାର୍ଯ୍ୟରେ ପ୍ରୀତ ହୋଇ ସେ ରାଓ ବାହାଦୁର ଉପାଧିରେ ଭୂଷିତ ହେବା ଚାହିଁଥିଲେ । ସରକାର ତାଙ୍କୁ ଏହି ଉପାଧି ଦେବାର ଅବ୍ୟବହିତ ପୂର୍ବରୁ ସେ ମୁନିସପାଲିଟିର ଚେୟାରମାନ ପଦରୁ ଇସ୍ତଫା ଦେଇଦେଲେ । ସାର ପି. ରାଜଗୋପାଳଚାରୀ ସେ ଇସ୍ତଫା ପ୍ରତ୍ୟାହାର କରିବାରୁ ତାଙ୍କୁ ପ୍ରବର୍ତ୍ତାଇବାକୁ ଏରୋଡ ଆସିଲେ । ଏହି ସମୟରେ ରାମସାମୀ ଲମ୍ବା କେଶ ଓ ନିଶ ରଖୁଥିଲେ ।

ରାମସାମୀଙ୍କର ମହାତ୍ମା ଗାନ୍ଧୀଙ୍କ ପ୍ରତି ଯଥେଷ୍ଟ ସମ୍ମାନ ରହିଥିଲା । ସେ ପାନ ଖାଇବା ଛାଡିଦେଲେ । ତାଙ୍କର ମଣ୍ଡି ବ୍ୟବସାୟ ମଧ୍ୟ ବନ୍ଦ କରିଦେଲେ । ରାମସାମୀଙ୍କର ଭାଇ କ୍ରିଷ୍ଣସାମୀ ଲୋକମାନଙ୍କୁ ମାଗଣାରେ ସ୍ୱାସ୍ଥ୍ୟ ସେବା ଯୋଗାଉଥିଲେ ।

୧୯୧୯ରେ କଂଗ୍ରେସ ଅଧିବେଶନ ଅମୃତସହରରେ ହୋଇଥିଲା, ଯେଉଁଥିରେ ତାମିଲନାଡୁର ୩୫୦ ପ୍ରତିନିଧି ଅଂଶଗ୍ରହଣ କରିଥିଲେ । ରାମସାମୀ ଭି.ଓ.ସି ପିଲାଇଙ୍କୁ ନିଜ ଖର୍ଚ୍ଚରେ ସେହି ସମ୍ମିଳନୀକୁ ନେଇଥିଲେ । ଦେଶର ସ୍ୱାଧୀନତା ପାଇଁ ପିଲାଇ ନିଜର ସମସ୍ତ ହରାଇ ସାରିଥିଲେ ଓ ଆର୍ଥିକ ଦୟନୀୟ ସ୍ଥିତିରେ ରହିଥିଲେ । କଂଗ୍ରେସ ଦଳର ଯୋଜନା କମିଟିରେ ତାମିଲନାଡୁର କେତେକ ବ୍ୟକ୍ତିଙ୍କୁ ନେବା ପାଇଁ କଂଗ୍ରେସ କର୍ତ୍ତୃପକ୍ଷଙ୍କୁ ବୁଝାଇଥିଲେ । ୧୯୨୦ରେ କଂଗ୍ରେସ ଦଳର ଅଧିବେଶନ କଲିକତାଠାରେ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ ବ୍ରିଟିଶ ସରକାର ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନ କରିବା ପାଇଁ ନିଷ୍ପତ୍ତି ହୋଇଥିଲା ।

## ଖଦୀ ବିକ୍ରି :

କଲିକତା କଂଗ୍ରେସ ଅଧିବେଶନରେ ଯୋଗ ଦେଇ ଫେରିବାପରେ ରାମସାମୀ ବିଦେଶୀ ପୋଷାକ ବ୍ୟବହାର ନକରି ଖଦୀବସ୍ତ୍ର ବ୍ୟବହାର କଲେ । ସେ ଗ୍ରାମକୁ ଗ୍ରାମ ପରିଭ୍ରମଣ କରି ଖଦୀର ବ୍ୟବହାର ପାଇଁ ଲୋକମାନଙ୍କୁ ପ୍ରବର୍ତ୍ତାଇଲେ । ସେ ଖଦୀର ଲୁଗା କାନ୍ଧରେ ନେଇ ଘର ଘର ବୁଲି ଲୋକମାନଙ୍କୁ ଖଦୀବସ୍ତ୍ର ବିକ୍ରି କଲେ । ସେ ଲୋକମାନଙ୍କୁ ବୁଝାଇଲେ ଯେ ଯଦି ଲୋକମାନେ ସମସ୍ତେ ଖଦୀ ପରିଧାନ କରିବେ, ଦେଶରେ ଅନାହାର ମୃତ୍ୟୁ ବା ଦୁର୍ଭିକ୍ଷ ପଡିବ ନାହିଁ । ଖଦୀବସ୍ତ୍ର ବିଷୟରେ ରାମସାମୀ ଯେଉଁ ସଚେତନତା ସୃଷ୍ଟି କରୁଛନ୍ତି ସେଥିରେ ମହାତ୍ମା ଗାନ୍ଧୀ ବିଶେଷ ଆନନ୍ଦ ପ୍ରକାଶ କରିଥିଲେ । ଗାନ୍ଧୀଙ୍କର ସନ୍ତୋଷ ବିଷୟ ରାମସ୍ୱାମୀ ବ୍ୟକ୍ତ କରିଛନ୍ତି – "ଗାନ୍ଧୀ ଜାଣିଥିଲେ ଯେ ମୋତେ ଯେଉଁ ଦାୟିତ୍ୱ ଦିଆଯିବ, ମୁଁ ତାହା ନିଷ୍ଠାର ସହ ସମାପନ କରିବି । ସେଥିପାଇଁ ସେ ଖଦୀର ପ୍ରସାର ଦାୟିତ୍ୱ ମୋତେ ପ୍ରଦାନ କରିଥିଲେ ।" ମିଲାଇ ନାଥନ ଲେଖିଛନ୍ତି – "ପେରିୟାର ଏକ ଚଳମାନ ସ୍ମାରକ । ସେତେବେଳେ ସୁନା ଭରିଥାଏ ୧୨ଟଙ୍କା । ଲୋକମାନେ ତାଙ୍କଠାରୁ ପଚଶ ହଜାର ଟଙ୍କା କରଜ କରିଥିଲେ । ଏହା ୧୯୨୦ ମସିହାରେ ଘଟଣା । କଂଗ୍ରେସ ଦଳ ବ୍ରିଟିଶ ସରକାର ସହ ଅସହଯୋଗ ଆନ୍ଦୋଳନ କରିବାକୁ ସ୍ଥିର କରିଥାଏ । ଫଳରେ ଲୋକମାନେ

କୋର୍ଟମାନ ବର୍ଜନ କରିଥିଲେ । ସେ ଲୋକମାନଙ୍କ ବିରୁଦ୍ଧରେ ତାଙ୍କର ଟଙ୍କା ପାଇଁ କେସ୍ କଲେ ନାହିଁ । ସେତେବେଳେ ଯାହା ପଚିଶ ହଜାର ଟଙ୍କା ଥିଲା ତାହା ବର୍ତ୍ତମାନର ମୂଲ୍ୟରେ କେତେ କୋଟି ଟଙ୍କା ହେବ ।"

୧୯୨୦ରେ ରାମସାମୀଙ୍କର କଂଗ୍ରେସ ଦଳ ସମ୍ବନ୍ଧ ପୃଷ୍ଠଭୂମିରେ ସେ ତାମିଲ ନାଡୁରେ ହିନ୍ଦୀ ଭାଷାର ପ୍ରସାର ମଧ୍ୟ ଚାହୁଁଥିଲେ । ତେବେ ୧୯୩୮ ବେଳକୁ ସେ ହିନ୍ଦୀର ବିରୋଧ କଲେ । ତେଣୁ ତାଙ୍କର ଆତ୍ମ ପ୍ରତ୍ୟୟ ଅନୁସାରେ ସେ ତାଙ୍କର ମତ ପରିବର୍ତ୍ତନ କରୁଥିଲେ ।

## କଂଗ୍ରେସ ଦଳର ସଂପାଦକ

୧୯୨୧ରେ ରାମସାମୀ ତାମିଲନାଡୁ କଂଗ୍ରେସ ଦଳର ସଂପାଦକ ନିର୍ବାଚିତ ହୋଇଥିଲେ । ଗାନ୍ଧୀ ସମସ୍ତ ମଦ ଦୋକାନ ସମ୍ମୁଖରେ ଧାରଣା ଦେବାକୁ ଆହ୍ୱାନ ଦେଇଥିଲେ । ଉତ୍ତର ଭାରତରେ ତାଳଜାତୀୟ ଗଛରୁ ଏକ ରସ ବାହାରକରି ମଦ ପ୍ରସ୍ତୁତ କରାଯାଏ । ଗାନ୍ଧୀ କହିଲେ ଯେ ଯଦି ଏହି ସବୁ ଗଛମାନଙ୍କୁ କାଟି ଦିଆଯାଏ, ତେବେ ମଦ ପ୍ରସ୍ତୁତ ହୋଇପାରିବ ନାହିଁ । ତାମିଲନାଡୁରେ ତାଳ ଓ ନଡିଆଗଛ ଉଭୟରୁ ଏକ ରସ ସଂଗ୍ରହ କରାଯାଇ ମଦ ପ୍ରସ୍ତୁତ କରାଯାଏ । ଗାନ୍ଧୀଙ୍କର ଏହି ଘୋଷଣାପରେ ରାମସାମୀ ଏକ ନିଷ୍ପତ୍ତି ନେଲେ । ତତାଂପତି ଗ୍ରାମରେ ତାଙ୍କର ବଡ ନଡିଆ ବଗିଚା ଥାଏ । ସେଥିରୁ ରସ ବାହାର କରି ନେବାକୁ କଂଟ୍ରାକ୍ଟରଙ୍କୁ ଅନୁମତି ଦିଆଯାଇଥାଏ । ରାମସାମୀ ଯେଉଁ ଠିକାଦାରଙ୍କୁ ଏହା ଦେଇଥିଲେ ତାଙ୍କୁ କିଛି କ୍ଷତିପୂରଣ ଦେଇ ଏହି ରସ ବାହାର ନକରିବାକୁ କହିଲେ । ହେଲେ ଠିକାଦାର ତାଙ୍କ ପ୍ରସ୍ତାବରେ ରାଜି ହେଲେ ନାହିଁ । ଫଳରେ ରାମସାମୀ ଲୋକ ଲଗାଇ ପାଞ୍ଚଶହ ନଡିଆ ଗଛକୁ କାଟିଦେଲେ । ପରଦିନ ଠିକାଦାର ଏଥିରେ ଦୁଃଖିତ ହେଲେ । ତେବେ ଠିକାଦାର ରାମସାମୀଙ୍କ ବିରୁଦ୍ଧରେ କିଛି କରିପାରିଲେ ନାହିଁ , କାରଣ ସେ ସମୟକୁ ସେ ବେଶ୍ ପ୍ରଭାବଶାଳୀ ଥିଲେ । ଯଦି ଏହି ନଡିଆ ବଗିଚାରୁ ନଡିଆ ବିକ୍ରି କରିଥାନ୍ତେ ଭଲ ଉପାର୍ଜନ କରିପାରିଥାନ୍ତେ । ତେବେ ଦେଶର ସ୍ୱାଧୀନତା, ମହାତ୍ମା ଗାନ୍ଧୀଙ୍କର ନିବେଦନ ଓ ନିଶା ନିବାରଣ

କାରଣରୁ ସେ ଗଛକାଟି ଦେଲେ ଓ ଏକ ବଡ କ୍ଷତି ସହିଲେ । ନିଜର ଆଦର୍ଶ ପାଇଁ ସେ ଯେକୌଣସି କ୍ଷତି ସହିବାକୁ ପ୍ରସ୍ତୁତ ଥିଲେ ।

## ୧୯୨୧ରେ ମଦଦୋକାନ ସମ୍ମୁଖରେ ଧାରଣା

ରାମସାମୀ ମଦଦୋକାନ ସମ୍ମୁଖରେ ହରତାଳ କରିବାକୁ ନିଷ୍ପତ୍ତି ନେଲେ । ଶତାଧିକ ଲୋକ ତାଙ୍କ ସହ ଯୋଗଦେଲେ ଓ ସେମାନେ ମଦଦୋକାନ ଆଗରେ ଧାରଣା ଦେଲେ । ପୋଲିସ ସେମାନଙ୍କୁ ଗିରଫ କଲା ଓ ସେମାନେ ଗୋଟିଏ ମାସ ଜେଲରେ ରହିଲେ । ଏହା ଥିଲା ରାମସାମୀଙ୍କର ପ୍ରଥମ ଜେଲ ଅନୁଭୂତି । ରାମସାମୀ ଜେଲରୁ ଖଲାସ ହେବାପରେ ଧାରଣା ପୁଣି ଆରମ୍ଭ କଲେ । ମଦ ବିରୁଦ୍ଧରେ ଲୋକମାନଙ୍କର ମନୋଭାବ ତୀବ୍ର ବୋଲି ସରକାର ଅନୁଭବ କରି ଏରୋଡ ସହରରେ ୧୪୪ ଧାରା ଜାରିକଲେ । ସେ ୧୪୪ ଧାରା ଲଘନ କରି ପୁଣି ଗିରଫ ହେଲେ । ସେ ଗିରଫ ହେବାପରେ ତାଙ୍କ ପତ୍ନୀ ନାଗମଲ ଓ ଭଉଣୀ କାନ୍ନାମଲ ମଦ ବିରୋଧୀ ହରତାଳରେ ଯୋଗଦେଲେ । ରାମସାମୀଙ୍କ ପରିବାର ଏରୋଡ ସହରରେ ପ୍ରଭାବଶାଳୀ ଥିବାରୁ ଓ ସେ ଗିରଫଦ୍ୱାରା ଆଇନ ଶୃଙ୍ଖଳା ପରିବେଶ ସୃଷ୍ଟି ହେବାର ସମ୍ଭାବନା ଆଶଙ୍କା କରି ସରକାର ସହରରୁ ୧୪୪ ଧାରା ପ୍ରତ୍ୟାହର କରିନେଲେ ।

ମଦ ବିରୋଧୀ ଆନ୍ଦୋଳନରେ ଏରୋଡ ସତ୍ୟାଗ୍ରହ ଦେଶରେ ପ୍ରଭାବ ସୃଷ୍ଟି କରିଥିଲା । ଭାରତୀୟ ସମ୍ବାଦପତ୍ରମାନେ ଏରୋଡ ହରତାଳ ବିଷୟରେ ବିବରଣୀମାନ ପ୍ରକାଶ କରୁଥିଲେ । ରାମସାମୀ ଓ ତାଙ୍କ ପରିବାର ମଦବିରୋଧୀ ହରତାଳରେ ଯୋଗଦେଇ ସାରା ଭାରତରେ ପରିଚିତ ହୋଇଥିଲେ । ମଦ ବିରୋଧୀ ଆନ୍ଦୋଳନରେ ରାମସାମୀଙ୍କର ଯୋଗଦାନ ଓ କାର୍ଯ୍ୟକୁ ଗାନ୍ଧୀ ବହୁତ ପ୍ରଶଂସା କରିଥିଲେ ।

୧୯୨୧ ଡିସେମ୍ବର ୨୮ ରେ ଗାନ୍ଧୀଜୀ ତାଙ୍କ ପତ୍ରିକା ୟଙ୍ଗ ଇଣ୍ଡିଆରେ ଲେଖିଥିଲେ – "ନିଶାନିବାରଣ ପ୍ରସଙ୍ଗ ଉପରେ ଏରୋଡର ଜନଗଣ ସାହସର

ସହ ଆନ୍ଦୋଳନ କରିଛନ୍ତି । ରାସମାମୀ ଏହି ଆନ୍ଦୋଳନରେ ଯୋଗ ଦେଇ ଏକମାସ ବନ୍ଦୀ ଜୀବନ ବିତାଇଛନ୍ତି । ଏହି ସ୍ଥାନରେ ୩୭ ଜଣ ବ୍ୟକ୍ତି ବନ୍ଦୀ ହୋଇଛନ୍ତି । ଏବେ ରାମସାମୀଙ୍କର ପତ୍ନୀ ଓ ଭଉଣୀ ଏହି ହରତାଳର ନେତୃତ୍ୱ ନେଇଛନ୍ତି ।

ଯଦି ମଦବିରୋଧୀ ଆନ୍ଦୋଳନ ଅବ୍ୟାହତ ରହେ ତେବେ ସରକାର ଅନେକ ରାଜସ୍ୱ ହରାଇବେ । ଏହା ଅନୁଭବ କରି ସରକାର ମଦଦୋକାନ ସମ୍ମୁଖରେ ଏହି ଆନ୍ଦୋଳନ ବନ୍ଦ କରିବାକୁ ଗାନ୍ଧୀଙ୍କୁ ଅନୁରୋଧ କରିଛନ୍ତି । ଏହି ହରତାଳ ଦ୍ୱାରା ଲୋକମାନଙ୍କର ସାଧାରଣ ଜୀବନଯାତ୍ରା ମଧ୍ୟ ବ୍ୟାହତ ହେଉଛି । ସରକାରଙ୍କୁ ଗାନ୍ଧୀ ଏହି ଉତ୍ତର ଦେଇଥିଲେ – "ଏହି ଆନ୍ଦୋଳନ ବନ୍ଦ କରିବା ମୋ ନିୟନ୍ତ୍ରଣରେ ନାହିଁ । ଏରୋଡର ଦୁଇଜଣ ମହିଳାଙ୍କ ହାତରେ ଏହା ରହିଛି । ଏହା ବନ୍ଦ କରିବାକୁ ଆମକୁ ସେମାନଙ୍କୁ ଅନୁରୋଧ କରିବାକୁ ହେବ । " ନାଗମଲ ଓ କାନମଲ ମଦ ଦୋକାନ ଆଗରେ ଧାରଣା ଦେବା ପାଇଁ ସହସ୍ରାଧିକ ମହିଳାଙ୍କୁ ଏକଜୁଟ କରିପାରିଥିଲେ । ମହତ୍ମାଗାନ୍ଧୀ ଏହି ଆନ୍ଦୋଳନର ପ୍ରଶଂସା ପେରିୟାରଙ୍କ ପତ୍ନୀ ଓ ଭଉଣୀଙ୍କୁ ଦେଇଥିଲେ । ରାମସାମୀଙ୍କ ଘରେ ଏହି ଆନ୍ଦୋଳନ ପାଇଁ ଗାନ୍ଧୀଙ୍କ ଉପସ୍ଥିତିରେ ନିଷ୍ପତ୍ତି ହୋଇଥିଲା । ରାମସାମୀଙ୍କର ପୂର୍ଣ୍ଣ ସହଯୋଗରୁ ଏହା ସମ୍ଭବ ହେଲା । ଏହି ଆନ୍ଦୋଳନ ପାଇଁ ରାମସାମୀ ଓ ତାଙ୍କ ପରିବାର ଦେଶରେ ଖ୍ୟାତ ହେବା ସହ ଗାନ୍ଧୀଙ୍କ ମନକୁ ପ୍ରଭାବିତ କରିପାରିଥିଲେ ।

# ୫. ପ୍ରଥମ ଶ୍ରେଣୀଭିତ୍ତିକ ସରକାରୀ ନିର୍ଦ୍ଦେଶନାମା

୧୯୨୦ରେ ମଣ୍ଟେଗୁ ଚେମସଫୋର୍ଡ କମିଟି କେତେକ ସଂସ୍କାରର ସୁପାରିଶ କରିଥିଲେ, ତାହାନୁଯାୟୀ ଏକ ଦ୍ୱୈତଶାସନ ବ୍ୟବସ୍ଥାର ପ୍ରଚଳନ ହୋଇଥିଲା । ଆଶଙ୍କା ଥିଲା ସ୍ୱାୟତ୍ତ ଶାସନ ସଂପୂର୍ଣ୍ଣ ଭାବେ ବ୍ରାହ୍ମଣମାନଙ୍କ ନିୟନ୍ତ୍ରଣରେ ରହିବ । ସୁତରାଂ ବିଧାନ ପରିଷଦରେ ଅବ୍ରାହ୍ମଣ ଜାତିର ଲୋକମାନଙ୍କ ପାଇଁ ଉପଯୁକ୍ତ ସ୍ଥାନ ସଂରକ୍ଷିତ ରହିବା ଆବଶ୍ୟକ । ଏହା ଥିଲା ଜଷ୍ଟିସ ପାର୍ଟିର ଦାବି । ଏହା ଫଳରେ ଅବ୍ରାହ୍ମଣ ଜାତିର ଲୋକମାନଙ୍କ ପାଇଁ ୨୮ଟି ସ୍ଥାନ ସଂରକ୍ଷିତ ରହିଲା ।

୧୯୨୦ ନଭେମ୍ବର ୨୦ତାରିଖ ଦିନ ନିର୍ବାଚନ ଅନୁଷ୍ଠିତ ହେଲା । ୧୨୭ଟି ସ୍ଥାନ ଭିତରୁ ଜଷ୍ଟିସ ପାର୍ଟି ୮୧ଟି ସ୍ଥାନରେ ବିଜୟଲାଭ କଲା । ମାଡ୍ରାସ ପ୍ରେସିଡେନ୍‌ସିର ଗଭର୍ଣ୍ଣର ୱେଲିଙ୍ଗଟନ ଜଷ୍ଟିସ ପାର୍ଟିର ମୁଖ୍ୟ ଚେଟ୍ଟିତ୍ୟାରଙ୍କୁ ସରକାର ଗଠନ କରିବାକୁ ନିମନ୍ତ୍ରଣ କଲେ । ସେ ନିଜେ ସରକାର ଗଠନ ନକରି ଏ.ସୁବାରାୟଲୁ ରେଡ଼ିୟାରଙ୍କୁ ମୁଖ୍ୟମନ୍ତ୍ରୀ, ପଙ୍ଗଲ ମହାରାଜାଙ୍କୁ ଦ୍ୱିତୀୟ ଓ ରାୟ ବାହାଦୁର କେ. ଭେଙ୍କଟ ରେଡିଙ୍କୁ ତୃତୀୟ ମନ୍ତ୍ରୀ କରିବାକୁ ସରକାରଙ୍କୁ ପରାମର୍ଶ ଦେଲେ । ଗଭର୍ଣ୍ଣର ତାହା ପାଳନ କଲେ ଓ ସାର୍ ପି. ରାଜଗୋପାଳଚାରୀଙ୍କୁ ବିଧାନ ପରିଷଦର ବାଚସ୍ପତି କଲେ ।

ବିଧାନ ପରିଷଦର ପ୍ରଥମ ବୈଠକ ୧୯୨୧ ଜାନୁୟାରୀ ୧୨ ଦିନ ଅନୁଷ୍ଠିତ ହେଲା । ସୁବାରାୟଲୁ ରେଡି ସୁସ୍ଥ ଅନୁଭବ କରୁ ନଥିଲେ, ତେଣୁ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ପଙ୍ଗଲର ମହାରାଜା ଫଳରେ ମୁଖ୍ୟମନ୍ତ୍ରୀ ହେଲେ ଓ ଭେଙ୍କଟ ରେଡିଙ୍କୁ ଦ୍ୱିତୀୟ ମନ୍ତ୍ରୀ ଓ ସାର ଏ.ପି. ପାତ୍ର ତୃତୀୟ ମନ୍ତ୍ରୀ ରହିଲେ ।

ଜଷ୍ଟିସ ପାର୍ଟି କ୍ଷମତାକୁ ଆସିବା ପରେ ମିଲର କମିସନ ରିପୋର୍ଟକୁ ଗ୍ରହଣ କରିବାକୁ ଉଦ୍ୟମ କଲେ । ବ୍ରିଟିଶ ସରକାରଙ୍କୁ ଏହା ଦେବା ପରେ ସରକାର ୧୯୨୧ ସେପ୍ଟେମ୍ବର ୧୬ରେ ଏହାକୁ ଗ୍ରହଣ କରିଥିଲେ । ତାହାକୁ ପ୍ରଥମ ଶ୍ରେଣୀଭିତ୍ତିକ ସରକାରୀ ନିର୍ଦ୍ଦେଶନାମା କୁହାଯାଏ (First Communal G.O) । ଏହାନୁଯାୟୀ ଯେକୌଣସି ଧର୍ମର ଅବ୍ରାହ୍ମଣମାନଙ୍କ ପାଇଁ ସରକାରୀ କର୍ମ ସଂସ୍ଥାନ କ୍ଷେତ୍ରରେ ସାତବର୍ଷ ପାଇଁ ୬୬% ସ୍ଥାନ ସଂରକ୍ଷିତ ରହିବ । ପ୍ରତି ଛ ମାସରେ କେତେ ଅବ୍ରାହ୍ମଣ ବ୍ୟକ୍ତି କର୍ମ ସଂସ୍ଥାନ ପାଇଛନ୍ତି ତାହାର ସଂଖ୍ୟା ପ୍ରକାଶ ପାଇବ ।

ଏହାପରେ ୧୯୨୨ ଅଗଷ୍ଟ ୧୫ ରେ ଦ୍ୱିତୀୟ ଶ୍ରେଣୀଗତ ସରକାରୀ ନିର୍ଦ୍ଦେଶନାମା ପ୍ରକାଶ ପାଇଲା । ଏଥିରେ ପ୍ରଥମ ନିର୍ଦ୍ଦେଶନାମାକୁ ତୁରନ୍ତ କାର୍ଯ୍ୟକାରୀ କରିବାକୁ ନିର୍ଦ୍ଦେଶ ଥିଲା । ଏକ ବର୍ଷ ଭିତରେ ତୃତୀୟ ସରକାରୀ ନିର୍ଦ୍ଦେଶନାମା ପ୍ରକାଶିତ ହେଲା । ଏପରିକି ପ୍ରମୋସନ ଦେବା ବେଳେ ସେ କେଉଁ ଶ୍ରେଣୀର ତାହା ବିଚାରକୁ ନିଆଯିବ ବୋଲି ନିର୍ଦ୍ଦେଶନାମା ଥିଲା । ଜଷ୍ଟିସ ପାର୍ଟିର ଉଦ୍ୟମ ଯୋଗୁ ମହିଳାମାନଙ୍କୁ ୧୯୨୧ରେ ଭୋଟ ଦେବାର ଅଧିକାର ମିଳିଲା । ୧୯୨୩ରେ ଜଷ୍ଟିସ ପାର୍ଟି ମାଡ୍ରାସ ବିଶ୍ୱବିଦ୍ୟାଳୟ ନିୟମ ଗୃହୀତ କଲା । ଏହା ଫଳରେ ବିଶ୍ୱବିଦ୍ୟାଳୟ ସିନେଟରେ ଅବ୍ରାହ୍ମଣମାନେ ଅଧିକ ସ୍ଥାନ ପାଇବାର ଅବକାଶ ପାଇଲେ ।

୧୯୨୩ ଅକ୍ଟୋବରରେ ଦ୍ୱିତୀୟ ସାଧାରଣ ନିର୍ବାଚନ ଅନୁଷ୍ଠିତ ହେଲା । ଏହି ନିର୍ବାଚନରେ ଜଷ୍ଟିସ ପାର୍ଟି ମଧ୍ୟ ଅଧିକ ସିଟ ପାଇ ନିର୍ବାଚିତ ହେଲା । ଜଷ୍ଟିସ ପାର୍ଟିର କାର୍ଯ୍ୟ ରାମସାମୀଙ୍କର ପରବର୍ତ୍ତୀ କାର୍ଯ୍ୟସୂଚୀ ପାଇଁ ସହାୟକ ହେଲା । ସେ ସେହି ସମୟରେ କଂଗ୍ରେସ ଦଳରେ ରହିଥିଲେ । ଜଷ୍ଟିସ ପାର୍ଟି ସରକାରରେ ରହି ଶାସନ କରୁଥିଲେ ମଧ୍ୟ କଂଗ୍ରେସ ଦଳ ଅଧିକ ଜନପ୍ରିୟ ହେଉଥିଲା । ଏହାର କାରଣ ହେଉଛି ଲୋକମାନେ ଭାବୁଥିଲେ ଯେ ବ୍ରିଟିଶ ସରକାର ଶୀଘ୍ର ବିଦାୟ ନେବ । ଏହି ବିଶ୍ୱାସ କଂଗ୍ରେସ ଦଳର ଅଭିବୃଦ୍ଧି ପାଇଁ ସହାୟକ ହେଉଥିଲା ।



# ୬. ଭାଇକମ ସତ୍ୟାଗ୍ରହ

୧୯୨୪ରେ ରାମସାମୀ ତାମିଲ ନାଡୁ କଂଗ୍ରେସ ଦଳର ସଭାପତି ହେଲେ । ସେ ଦଳର ଅଫିସ ତାଙ୍କ ବାସଗୃହରେ ରଖିଥିଲେ । ମୋତିଲାଲ ନେହେରୁ, ବିଠଲ ଭାଇ ପଟେଲ, ଡ଼. ଆନସାରି, କସ୍ତୁରି ରଙ୍ଗ ଆୟେଙ୍ଗର ଓ ହକିମ ଆଜମଲ ଖାଁଙ୍କ ପରି ନେତୃବୃନ୍ଦ ତାଙ୍କ ଘରେ ରାମସାମୀଙ୍କୁ ସାକ୍ଷାତ କରିଥିଲେ । ସମଗ୍ର ତାମିଲନାଡୁରୁ ଲୋକମାନେ ଆସି ତାଙ୍କୁ ତାଙ୍କ ଘରେ ସାକ୍ଷାତ କରୁଥିଲେ । ଏହା ଫଳରେ ସେ ବେଶ୍ ଜନପ୍ରିୟ ହୋଇପାରିଥିଲେ ।

୧୯୨୪ ମେ ମାସରେ କେରଳ ପ୍ରଦେଶର ଭାଇକମ ଟାଉନରୁ ଏକ ପତ୍ର ଓ ଟେଲିଗ୍ରାମ ପାଇଲେ । ଥିରୁଅନ୍ତପୁରମ ରାଜ୍ୟର ଭାଇକମ ଏକ କ୍ଷୁଦ୍ର ସହର । ନିମ୍ନ ଜାତିର ଲୋକମାନଙ୍କ ସେଠାରେ ମନ୍ଦିର ସଂଲଗ୍ନ ରାସ୍ତାରେ ଚାଲିବାର ଅଧିକାର ନଥିଲା । ଅନ୍ୟ ରାସ୍ତାରେ ଦୀର୍ଘ ରାସ୍ତା ଅତିକ୍ରମ କରି ସେମାନଙ୍କୁ ଯିବାକୁ ପଡୁଥିଲା । ମାଧବନ ଜଣେ ଓକିଲ, କିନ୍ତୁ ସେ ଯେଜହଭା ନିମ୍ନ ଜାତିର ଲୋକଥିଲେ । ସେ କୋର୍ଟକୁ ସିଧା ରାସ୍ତାରେ ଯିବାକୁ ତାଙ୍କୁ ବାରଣ କରାଯାଇଥିଲା । ସେହି ଟାଉନର କଂଗ୍ରେସ ଲୋକମାନେ ଏହି ସାମାଜିକ ଶୋଷଣ ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କଲେ ଓ ସେମାନେ ଗିରଫ ହେଲେ । ସେମାନେ ଏହି ଆନ୍ଦୋଳନର ଦାୟିତ୍ୱ ରାମସାମୀ ନେବାକୁ ତାଙ୍କୁ ପତ୍ର ପଠାଇଲେ । ସେହି ସମୟକୁ ରାମସାମୀ ମଦୁରାଇ ଜିଲ୍ଲାରେ ତାଙ୍କ ଗସ୍ତ କାର୍ଯ୍ୟକ୍ରମ ରଖିଥାନ୍ତି । ସେ ନିଜର କାର୍ଯ୍ୟକ୍ରମକୁ ସଂକ୍ଷିପ୍ତ କରି ଭାଇକମକୁ ଆସିଲେ । ସେଠାରେ ସେ ପହଞ୍ଚିଲା ସମୟକୁ ପୋଲିସ ଓ ପ୍ରଶାସନ ତାଙ୍କୁ ସ୍ୱାଗତ କଲେ ।

ସେଠିକାର ମହାରାଜା ଯେତେବେଳେ ଦିଲ୍ଲୀ ଯାଉଥିଲେ ସେ ଏରୋଡରେ ରାମସାମୀଙ୍କ ଘରେ ରହୁଥିଲେ ଓ ସେଠାରୁ ଦିଲ୍ଲୀ ଟ୍ରେନରେ ଯାଉଥିଲେ । ନିଜର କୃତଜ୍ଞତା ସ୍ୱରୂପ ସେ ଭାଇକମ ସହରରେ ରାମସାମୀଙ୍କୁ ସ୍ୱାଗତ କଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ସେ ଏହି ଆନ୍ଦୋଳନରେ ଯେପରି ଯୋଗ ନଦେବେ, ଏଥିପାଇଁ

ତାଙ୍କୁ କହିବା । କିନ୍ତୁ ରାମସାମୀ ନିମ୍ନଜାତିର ଲୋକମାନଙ୍କର ରାସ୍ତାରେ ଚାଲିବାର ଅଧିକାର ଆନ୍ଦୋଳନରେ ସାମାଲି ହେବାର ନିଷ୍ପତ୍ତିରୁ ଓହରିଲେ ନାହିଁ । ରାମସାମୀଙ୍କର ନିଷ୍ପତ୍ତି ଯୋଗୁ ମହାରାଜା ନିରାଶ ହେଲେ । ପାଞ୍ଚ ଛ' ଦିନ ଧରି ଆନ୍ଦୋଳନ ବା ସତ୍ୟାଗ୍ରହ ସ୍ଥାନରେ ରାମସାମୀ ଲୋକମାନଙ୍କୁ ସେମାନଙ୍କ ଅଧିକାର ବିଷୟରେ ଭାବଗର୍ଭକ ଭାଷଣ ଦେଲେ । ଫଳରେ ଲୋକମାନେ ପ୍ରଭାବିତ ହୋଇ ଆନ୍ଦୋଳନରେ ସାମିଲ ହେଲେ । ସେହି ମନ୍ଦିରର ଠାକୁର 'ଭାଇକତପନ' ଯଦି ଦଳିତ ଲୋକ ରାସ୍ତାରେ ଚାଲିବା ଦ୍ୱାରା ଅପବିତ୍ର ହୋଇଯିବେ ତେବେ ସେହି ପଥର ମୂର୍ତ୍ତିକୁ ନେଇ ଗାଧୁଆ ତୁଠରେ ରଖିଦେବା ଉଚିତ । ମହାରାଜା ଏହି ପ୍ରକାର ଭାଷଣ ଉପରେ କଟକଣା ଲଗାଇଲେ । କିନ୍ତୁ ରାମସାମୀ ଆନ୍ଦୋଳନ ସ୍ଥାନରେ ଲୋକମାନଙ୍କୁ ସେମାନଙ୍କ ମାନବିକ ଅଧିକାର ସଂପର୍କରେ ଭାବଗର୍ଭକ ଭାଷଣମାନ ଦେଇଚାଲିଲେ । ଗୋଟିଏ ସପ୍ତାହପରେ ମହାରାଜା ତାଙ୍କୁ ଗିରଫ କଲେ । ତାଙ୍କର ଗିରଫ ସମ୍ବାଦ ପାଇ ରାମସାମୀଙ୍କର ପତ୍ନୀ ଓ ଭଉଣୀ – ନାଗମଲ ଓ କାନାମଲ ଏରୋଡରୁ ଭାଇକମ ଗଲେ ଓ ସେଠିକାର ଆନ୍ଦୋଳନରେ ସାମିଲ ହେଲେ । ଦିନକୁ ଦିନ ଏହି ଆନ୍ଦୋଳନ ବୃଦ୍ଧି ପାଇଲା ଓ ଅଧିକରୁ ଅଧିକ ଲୋକ ଏଥିରେ ଯୋଗଦେଲେ ।

ଏହି ସମୟରେ ରାଜାଜୀ ଏକ ପତ୍ର ରାମସାମୀଙ୍କୁ ଲେଖି ଏହି ଆନ୍ଦୋଳନ ସ୍ଥାନରୁ ଚାଲି ଆସିବାକୁ ଅନୁରୋଧ କଲେ । ତାମିଲନାଡୁର ଏରୋଡରୁ ଯାଇ କେରଳର ଭାଇକମଠାରେ ଆନ୍ଦୋଳନ ନକରି ନିଜ ରାଜ୍ୟରେ କାମ କରିବାକୁ ରାଜାଜୀ ତାଙ୍କୁ ପରାମର୍ଶ ଦେଇଥିଲେ । ତାମିଲନାଡୁର ଆଉ ଜଣେ କଂଗ୍ରେସ ନେତା ଏସ.ଶ୍ରୀନିବାସ ଆୟେଙ୍ଗର ରାମସାମୀଙ୍କୁ ଆନ୍ଦୋଳନ ସ୍ଥାନରୁ ଫେରାଇ ଆଣିବାକୁ ଭାଇକମ ଗଲେ । କିନ୍ତୁ ରାମସାମୀ ନିଜ ନିଷ୍ପତ୍ତିରେ ଅଟଳ ରହିଲେ ଓ ଆନ୍ଦୋଳନ ସ୍ଥାନରୁ ନ ଫେରିବା ପାଇଁ ନିଜର ମତ ଜଣାଇଲେ । ରାମସାମୀଙ୍କର ସେହି ଆନ୍ଦୋଳନ ବିଷୟ ସାରା ଦେଶରେ ଚର୍ଚ୍ଚାର ପ୍ରସଙ୍ଗ ହେଲା ଓ ଭାରତର ବିଭିନ୍ନ ସ୍ଥାନରୁ ତାଙ୍କ ପାଖକୁ ସମର୍ଥନର ବାର୍ତ୍ତାମାନ ଗଲା । ପଞ୍ଜାବରୁ ବି ତାଙ୍କୁ

ବହୁ ସମର୍ଥନ ମିଳିଲା । ଏହି ସମୟରେ କେତେକ ମନ୍ଦ ବୁଦ୍ଧିର ଲୋକ ପ୍ରଚାର କଲେ ଯେ ପଂଜାବୀମାନେ ହିନ୍ଦୁ ବିରୋଧୀ ହୋଇଥିବାରୁ ସେମାନେ ଭାଇକମ ଆନ୍ଦୋଳନକୁ ସମର୍ଥନ କରୁଛନ୍ତି । ଏହି ସ୍ଥିତିରେ ଗାନ୍ଧୀଜୀ ଅନ୍ୟ ଜାତିର ଲୋକମାନେ ଭାଇକମ ଆନ୍ଦୋଳନରେ ସାମିଲ ନ ହେବାକୁ ନିବେଦନ କଲେ, ଫଳରେ କେତେକ ଜାତିର ଲୋକ ଏଥିରେ ସହଯୋଗ କଲେ ନାହିଁ ।

ରାମସାମୀ କିଛି ଦିନ ପରେ ଜେଲରୁ ମୁକ୍ତ ହୋଇ ପୁଣି ଆନ୍ଦୋଳନରେ ସାମିଲ ହେଲେ । ଅସ୍ପୃଶ୍ୟତା ଓ ସମାଜର ଭେଦଭାବ ବିରୁଦ୍ଧରେ ସେ ଲୋକମାନଙ୍କୁ ପ୍ରଭାବିତ କରିବା ପରି ଭାବଗର୍ଭକ ଭାଷଣମାନ ଦେଉଥିଲେ । ଯେହେତୁ ଏହି ଆନ୍ଦୋଳନକୁ ଗାନ୍ଧୀଜୀ ସମର୍ଥନ କରୁ ନଥିଲେ, ରାମସାମୀଙ୍କୁ ପୁନଶ୍ଚ ଗିରଫ କରାଯାଇ ଛ'ମାସ ସଶ୍ରମ କାରାଦଣ୍ଡ ଦିଆଗଲା । ପାସୁପୁରାଠାରେ ସେ ବନ୍ଦୀ ହୋଇରହିଲେ ।

ଏହି ଆନ୍ଦୋଳନ କିନ୍ତୁ ଅବ୍ୟାହତ ରହିଲା । ଧାର୍ମିକ ରକ୍ଷଣଶୀଳ ଲୋକମାନେ ରାମସାମୀଙ୍କ ଉପରେ ବିରକ୍ତି ପ୍ରକାଶ କରୁଥିଲେ । ସେମାନେ ଶତ୍ରୁ ବିନାଶ ଯଜ୍ଞ କରିବାକୁ ମହାରାଜାଙ୍କୁ ପରାମର୍ଶ ଦେଲେ । ମହାରାଜା ବ୍ରାହ୍ମଣମାନଙ୍କ ପରାମର୍ଶରେ ଶତ୍ରୁ ସଂହାର ଯଜ୍ଞ ଆରମ୍ଭ କଲେ । ଯଜ୍ଞ ସମୟ ଭିତରେ ମହାରାଜାଙ୍କର ଦେହାନ୍ତ ହେଲା । ମହାରାଜା ବ୍ରାହ୍ମଣମାନଙ୍କ ପରାମର୍ଶରେ ଶତ୍ରୁ ସଂହାର ଯଜ୍ଞ ଆରମ୍ଭ କଲେ, କିନ୍ତୁ ନିଜେ ମୃତ୍ୟୁ ମୁଖରେ ପଡିଲେ । ରାଜାଙ୍କ ମୃତ୍ୟୁ ପରେ ମହାରାଣୀ ଭାଇକମ ଆନ୍ଦୋଳନ ସହ ସଂପୃକ୍ତ ବନ୍ଦୀମାନଙ୍କୁ ଜେଲରୁ ମୁକ୍ତ କରିଦେଲେ । ମହାରାଣୀ ରାଜ୍ୟର ଶାସନଭାର ନେବାପରେ ସେ ଏହି ଆନ୍ଦୋଳନର ଏକ ସମାଧାନ ଚାହିଁଲେ । ଭାଇକମ ରାଜ୍ୟର ଦେଓ୍ୱାନ ଆନ୍ଦୋଳନର ସଫଳତା ରାମସାମୀ ନ ନିଅନ୍ତୁ, ଏହି ଉଦ୍ଦେଶ୍ୟରେ ସେ ରାଜାଜୀଙ୍କୁ ଏକ ପତ୍ର ଲେଖିଲେ । ରାଜାଜୀ ମହାତ୍ମା ଗାନ୍ଧୀଙ୍କୁ ପତ୍ର ଲେଖି ଭାଇକମ ଆସି ଏହି ଘଟଣାରେ ସମାଧାନ ପାଇଁ ହସ୍ତକ୍ଷେପ କରିବାକୁ ନିବେଦନ କଲେ । ଗାନ୍ଧୀଜୀ ସେଠାକୁ ଆସିଲେ ଓ ରାଣୀଙ୍କ ସହ ଆଲୋଚନା କଲେ, କିନ୍ତୁ ସେହି ଆଲୋଚନାକୁ ରାମସାମୀଙ୍କୁ

ଡକାଗଲା ନାହିଁ । ରାଣୀ ଗାନ୍ଧୀଙ୍କୁ କହିଲେ, "ଦଳିତ ଲୋକମାନଙ୍କୁ ସର୍ବ ସାଧାରଣ ମନ୍ଦିର ରାସ୍ତାରେ ଚାଲିବା ପାଇଁ ଆମେ ଅନୁମତି ଦେବାକୁ ପ୍ରସ୍ତୁତ । କିନ୍ତୁ ରାମସାମୀ ଦଳିତମାନଙ୍କୁ ମନ୍ଦିର ଭିତରେ ପ୍ରବେଶ କରିବାକୁ ଦାବି କରିପାରନ୍ତି । ସେଥିପାଇଁ ଆମେ ଚିନ୍ତିତ ।'' ଏହାପରେ ଗାନ୍ଧୀଜୀ ଆସି ରାମସାମୀଙ୍କୁ ସାକ୍ଷାତ କରି ରାଣୀଙ୍କର ମତାମତ ଜଣାଇଲେ ଓ ତାଙ୍କର ମତ କ'ଣ ଜାଣିବାକୁ ଚାହିଁଲେ । ରାମସାମୀ ଗାନ୍ଧୀଜୀଙ୍କୁ କହିଲେ- "ନିମ୍ନ ଜାତିର ଲୋକମାନେ ମନ୍ଦିର ଭିତରେ ପ୍ରବେଶ କରିବା ବିଷୟ କଂଗ୍ରେସର ଆଭିମୁଖ୍ୟ ନୁହେଁ । ସେ ପ୍ରସଙ୍ଗ ବି ମୁଁ ଏବେ ଆଦୌ ଉଠାଇବାକୁ ଚାହୁଁ ନାହିଁ । ତେବେ ସେମାନଙ୍କର ଅଧିକାର ପ୍ରସଙ୍ଗରୁ ଆମେ ଓହରିବୁ ନାହିଁ । ଗାନ୍ଧୀଜୀ ରାମସାମୀମଙ୍କର ମତାମତ ରାଣୀଙ୍କୁ ଜଣାଇଲେ । ରାଣୀ ତାହା ଗ୍ରହଣ କଲେ । ଅସ୍ପୃଶ୍ୟ ଜାତିର ଲୋକମାନଙ୍କର ମନ୍ଦିର ସଂଲଗ୍ନ ରାସ୍ତାରେ ଚାଲିବାରେ ଯେଉଁ କଟକଣା ଥିଲା, ତାହାକୁ ଉଠାଇ ଦିଆଗଲା । ସେମାନେ ସାଧାରଣ ରାସ୍ତାରେ ଚାଲିବାର ଅଧିକାର ପାଇଲେ । ଏହି ସଫଳତା ଦଳିତ ଲୋକମାନଙ୍କର ଆତ୍ମବିଶ୍ୱାସ ବୃଦ୍ଧି କରିଥିଲା । ପରବର୍ତ୍ତୀ ସମୟରେ ମନ୍ଦିର ଭିତରେ ପ୍ରବେଶ କରିବାର ଅଧିକାର ପାଇଁ ସେମାନେ ପଦକ୍ଷେପ ନେବାକୁ ମଧ୍ୟ ଆତ୍ମବିଶ୍ୱାସ ଲାଭ କଲେ । ଏହି ଆନ୍ଦୋଳନର ସଫଳତା ଆମ୍ବେଦକରଙ୍କୁ ମଧ୍ୟ ପ୍ରେରଣା ଯୋଗାଇଥିଲା ।

ତାମିଲନାଡୁରେ ଏହି ଆନ୍ଦୋଳନର ସଫଳତା ନିମ୍ନ ଜାତି ଲୋକଙ୍କ ମନରେ ସାହସ ସଂଚାର କରିଥିଲା । ରାମସାମୀ ଏ ସଂଗ୍ରାମ ଶେଷକରି ତାମିଲନାଡୁ ଫେରିବା ଅବସରରେ ତାଙ୍କୁ ଅଭିନନ୍ଦନ ଜ୍ଞାପନ କରାଯାଇଥିଲା । ରାମସାମୀ ସେତେବେଳେ କହିଥିଲେ, "କେବଳ ସର୍ବ ସାଧାରଣ ରାସ୍ତାରେ ଚାଲିବା ଆମର ଏକ ମାତ୍ର ଦାବି ନଥିଲା । ରାସ୍ତାରେ କୁକୁର ଓ ଘୁଷୁରିମାନେ ବି ଚାଲୁଛନ୍ତି । ମଣିଷ ମଣିଷ ଭିତରେ ଏପରି ଭେଦଭାବକୁ ଆମେ ବିରୋଧ କରୁଛୁ । ସୁତରାଂ ଏହି ଆନ୍ଦୋଳନ ଏତିକିରେ ସରିଗଲା ନାହିଁ । ରାସ୍ତାରେ ଚାଲିବାର ଅଧିକାର ଏକ ସାଧାରଣ ଦାବି । ସବୁ ଲୋକମାନେ ବି ମନ୍ଦିର ଭିତରେ ପ୍ରବେଶ କରିବାର ଅଧିକାର ପାଇବା ଉଚିତ । ମନ୍ଦିରରେ ପ୍ରାର୍ଥନା କରିବାର ଅଧିକାର ସମସ୍ତଙ୍କର ରହିବା ଆବଶ୍ୟକ ।

# ମନ୍ଦିର ପ୍ରବେଶ ପ୍ରତିବାଦ

ଭାଇକମ ଆନ୍ଦୋଳନରପରେ ରାମସାମୀଙ୍କର ସଭାପତିତ୍ୱରେ କୋଟାୟମଠାରେ ଏକ ସଭା ହୋଇଥିଲା । ସେହି ସଭାରେ ମନ୍ଦିର ପ୍ରବେଶ ଅଧିକାର ପାଇଁ ଦାବି ଉଠିଥିଲା । ଜାତିପ୍ରଥାର ବିଲୋପ ପାଇଁ ଏର୍ଣ୍ଣାକୁଲମଠାରେ ଏକ ସଭା ଡକାଯାଇଥିଲା । ଯଦି ଅସ୍ପୃଶ୍ୟମାନଙ୍କୁ ହିନ୍ଦୁମାନେ ମନ୍ଦିର ଭିତରେ ପ୍ରବେଶ କରିବାର ଅଧିକାର ଦେବେ ନାହିଁ ତେବେ ସେମାନେ ଇସଲାମ ଧର୍ମ ଗ୍ରହଣ କରିପାରିବେ, କାରଣ ଇସଲାମରେ ଜାତିଭେଦ ନାହିଁ । ଫଳରେ କେତେକ ଲୋକ ଇସଲାମ ଧର୍ମ ଗ୍ରହଣକଲେ । ଏହାପରେ ହିନ୍ଦୁମାନେ ସେମାନଙ୍କ ମନ୍ଦିରରେ ଦଳିତମାନଙ୍କୁ ପ୍ରବେଶ ଅଧିକାର ଦେଲେ । ଏହା ଥିଲା ରାମସାମୀଙ୍କର ଅନ୍ୟ ଏକ ସଫଳତା । ଅବଶ୍ୟ ଅନେକ କଂଗ୍ରେସ ନେତା, ଏପରିକି ଗାନ୍ଧୀଜୀ ରାମସାମୀଙ୍କର ଏହି ପଦକ୍ଷେପକୁ ସମର୍ଥନ କରୁନଥିଲେ । ତେବେ ସମସ୍ତ ବିରୋଧ ସତ୍ତ୍ୱେ ରାମସାମୀଙ୍କ ପ୍ରୟାସ ଯୋଗୁ ଦୁଇଟି ସଫଳତା ମିଳିଲା ।

# ୭. ଗୁରୁକୁଳରେ ଜାତିଗତ ଭେଦଭାବ

ନେଲାଇ ଜିଲାରେ ସେରମାଡେବି ନାମକ ଗ୍ରାମରେ ଏକ ଗୁରୁକୁଳ ରହିଛି । ତାହା ଭି.ଭି. ଏସ. ଆୟେରଙ୍କ ଦ୍ୱାରା ପରିଚାଳିତ ହୁଏ । ଏହି ଗୁରୁକୁଳକୁ ବିଭିନ୍ନ ଲୋକ ଆର୍ଥିକ ସହାୟତା ଦିଅନ୍ତି । ତାମିଲ ନାଡୁର କଂଗ୍ରେସ ଦଳ ଏହା ଏକ ଜାତୀୟ ସ୍ମାରକ ବହନ କରୁଥିବା ଶିକ୍ଷାନୁଷ୍ଠାନ ହୋଇଥିବା ଯୋଗୁ ଏହାକୁ ପ୍ରତି ବର୍ଷ ଦଶ ହଜାର ଟଙ୍କା ଅନୁଦାନ ଦେବା ନିଷ୍ପତ୍ତି କଲା । ପୂର୍ବତନ ମୁଖ୍ୟମନ୍ତ୍ରୀ ଓମାନ୍ଦୁର ରାମସାମୀଙ୍କର ପୁଅ ଏହି ବିଦ୍ୟାଳୟରେ ପଢୁଥିଲେ । ଯେତେବେଳେ ସେହି ବାଳକ ତାଙ୍କ ଘରକୁ ଛୁଟିରେ ଆସିଥିଲେ ସେ ତାଙ୍କ ବାପାଙ୍କୁ ଏହା କହିଥିଲେ – "ଗୁରୁକୁଳରେ ବ୍ରାହ୍ମଣ ପିଲାମାନଙ୍କୁ କେତେକ ସୁବିଧା ଦିଆଯାଉଛି ଯାହା ସେମାନଙ୍କୁ ଦିଆଯାଉ ନାହିଁ । ଖାଦ୍ୟ ପଦାର୍ଥରେ ବ୍ରାହ୍ମଣ ପିଲାମାନଙ୍କୁ ଭଲ ଖାଦ୍ୟମିଳେ, ସେମାନଙ୍କୁ ମିଳେ ନାହିଁ । ବ୍ରାହ୍ମଣ ପିଲାଙ୍କ ପାଇଁ ସ୍ୱତନ୍ତ୍ର ଜଳପାତ୍ର ରଖାଯାଏ । ବ୍ରାହ୍ମଣ ପିଲାମାନେ ଓ ଅବ୍ରାହ୍ମଣ ପିଲାମାନେ ପୃଥକ୍ ପୃଥକ୍ ସ୍ଥାନରେ ବସି ଭୋଜନ କରନ୍ତି । ସେ ଥରେ ବ୍ରାହ୍ମଣ ପିଲାଙ୍କ କଳସୀରୁ ପାଣି ପିଇବା ଯୋଗୁଁ ତାଙ୍କୁ ମାଡ ଖାଇବାକୁ ପଡିଥିଲା ।" ସେ ପଚାରିବାରୁ ତାଙ୍କୁ ଶିକ୍ଷକ କହିଲେ "ତୁ, ଶୂଦ୍ର ପିଲା, ତୁ ବ୍ରାହ୍ମଣ ପିଲାଙ୍କ ଜିନିଷ ବ୍ୟବହାର କରିପାରିବୁ ନାହିଁ ।"

ଏହା ପୁଅଠାରୁ ଶୁଣିବା ପରେ ଓମାନ୍ଦୁର ପୁଅକୁ ରାମସାମୀଙ୍କ ପାଖକୁ ପଠାଇଲେ । ପୁଅ ଏରୋଡ ଆସି ରାମସାମୀଙ୍କୁ ଗୁରୁକୁଳର ସମସ୍ତ ଘଟଣା କହିଲେ । ଏହା ଶୁଣିବା ପରେ ରାମସାମୀ ରାଗି ଦୁଃଖ ପ୍ରକାଶ କଲେ । ସେ ସାଙ୍ଗେ ସାଙ୍ଗେ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ଆହୂତ କଲେ । ଏହା ୧ ୯ ୨ ୫ ଜାନୁୟାରୀ ୧ ୭ ଦିନ ହୋଇଥିଲା । ସେଠାରେ ଏହି ପ୍ରସଙ୍ଗ ଆଲୋଚିତ ହୋଇଥିଲା । ଏହାପରେ ଅନୁସନ୍ଧାନକରି ଜଣାଗଲା ଯେ ଗୁରୁକୁଳର ମୁଖ୍ୟ ଆୟେର ସେଠାରେ ପଢୁଥିବା ବ୍ରାହ୍ମଣ ପିଲାଙ୍କ ପାଇଁ ଅନ୍ୟ ପିଲାଙ୍କ ଠାରୁ ସ୍ୱତନ୍ତ୍ର ବ୍ୟବସ୍ଥା କରିଛନ୍ତି । ଏହାପରେ ଭି.ଭି.ଏସ. ଆୟରଙ୍କୁ ଗୁରୁକୁଳରେ ସବୁ ପିଲାମାନଙ୍କୁ ସମାନ ଭାବରେ

ଖାଦ୍ୟ ଦିଆଯିବା ନେଇ ଏକ ପତ୍ର ପଠାଗଲା । କିନ୍ତୁ ଆୟେର ଏହାକୁ ଗୁରୁତ୍ୱ ଦେଲେ ନାହିଁ ବା ତାଙ୍କ କାର୍ଯ୍ୟରେ ପରିବର୍ତ୍ତନ କଲେ ନାହିଁ ।

ଏହି ଘଟଣା ଗାନ୍ଧୀଜୀଙ୍କ ଦୃଷ୍ଟିକୁ ଗଲା । ଗାନ୍ଧୀଜୀ ଆୟେର ଓ ବରଦାରଜୁଲୁ ନାଇଡୁକୁ ପୃଥକ୍ ଭାବରେ ଡାକି ସେମାନଙ୍କ ସହ ଆଲୋଚନା କଲେ । ସେ ବିଦ୍ୟାଳୟ ପରିସରକୁ ବା ସମାଜରୁ ଜାତିଗତ ଭେଦଭାବର ଦୂରୀକରଣ କ୍ଷେତ୍ରରେ ବିଶେଷ ସଂପୃକ୍ତି ପ୍ରକାଶ କଲେ ନାହିଁ । ଏହି ବ୍ୟାପରରେ ଗାନ୍ଧୀଜୀଙ୍କର କିଛି ସ୍ୱଷ୍ଟ ବିଚାର ନଥିଲା । ଗାନ୍ଧୀଜୀଙ୍କର ବିଚାର ଥିଲା ଯେ "ଯଦି ଜଣେ ଅନ୍ୟ ସହ ଏକାଠି ବସି ଖାଦ୍ୟ ଖାଉନାହିଁ ତାହା ଦ୍ୱାରା ସେ କିଛି ପାପ କରୁନାହିଁ । ସବୁ ଜାତିର ଲୋକମାନେ ଯଦି ଏକାଠି ବସି ଖାଦ୍ୟ ଖାଉ ନାହାନ୍ତି ତାହା ଦ୍ୱାରା କିଛି ପାପ ହେଉନାହିଁ । ଯଦି ସମସ୍ତେ ଏକାଠି ବସି ଖାଦ୍ୟ ଖାଉଛନ୍ତି ତେବେ ଭଲକଥା । ତେବେ ଏହି ବିଷୟକୁ କାହା ଉପରେ ଲଦି ଦେବାକୁ ମୁଁ ସମର୍ଥନ କରିପାରୁ ନାହିଁ । ଗାନ୍ଧୀଜୀଙ୍କ ମତରୁ ସେ ପରୋକ୍ଷରେ ଭି.ଭି.ଏସ ଆୟେରଙ୍କୁ ସମର୍ଥନ କରୁଥିବା ଜଣାପଡେ । ରାଜାଜୀ ମଧ୍ୟ ବ୍ରାହ୍ମଣବାଦୀ ମନୋଭାବ ପୋଷଣ କରୁଥିଲେ । ସେ ଏ ପ୍ରସଙ୍ଗରେ କହିଛନ୍ତି - "ଏବେ ଗୁରୁକୁଳ ଟିଏ ସୃଷ୍ଟି କରିବା କଷ୍ଟକର ବ୍ୟାପାର । ଯେଉଁମାନେ ଗୁରୁକୁଳ ପ୍ରତିଷ୍ଠା କରୁଛନ୍ତି ସେମାନଙ୍କ ଉପରେ ତାହାର ପରିଚାଳନା ଛାଡିଦେବା ଆବଶ୍ୟକ । ସବୁ ଜାତିର ପିଲାମାନେ ଏକାଠି ବସିବା ଓ ଭୋଜନ କରିବା ହଠାତ୍ ସମ୍ଭବ ନୁହେଁ, ଏହା ଧୀରେ ଧୀରେ ହେବ ଓ ଏଥିପାଇଁ ସମୟ ଲାଗିବ" । ଏଥିରୁ ରାଜାଜୀ ମଧ୍ୟ ଆୟେରଙ୍କ ପଦକ୍ଷେପକୁ ସମର୍ଥନ କରିବା ଜଣାଯାଏ । ଗାନ୍ଧୀଜୀ ଓ ରାଜାଜୀ ଭାରତୀୟ ସମାଜରୁ ଜାତିପ୍ରଥାର ବିଲୋପ ଯେ ଚାହୁଁ ନାହାନ୍ତି ଏସବୁ ବକ୍ତବ୍ୟରୁ ଜଣାପଡେ ।

କିନ୍ତୁ ରାମସାମୀ ଓ ପି. ଭି. ନାଇଡୁ ଭାରତୀୟ ସମାଜରୁ ଜାତିଗତ ଭେଦଭାବର ବିଲୋପ ଚାହୁଁଥିଲେ । କଂଗ୍ରେସ ସଂଗଠନରେ ଜାତି ବ୍ୟବସ୍ଥାକୁ ନେଇ ହୋଇଥିବା ଭୋଟରେ ରାମସାମୀଙ୍କ ସପକ୍ଷରେ ଅଧିକ ମତ ପ୍ରକାଶ ପାଇଥିଲା । ଫଳରେ ରାଜାଜୀ ଓ ତାଙ୍କ ସମର୍ଥକ ମାନେ କମିଟି ଛାଡି ଦେଇଥିଲେ ।

ଶେଷରେ ଗଣପତି ଶାସ୍ତ୍ରୀ ଯାହାଙ୍କୁ ସମସ୍ତେ ସମ୍ମାନ କରନ୍ତି ସେ ଏ ପ୍ରସଙ୍ଗରେ ସେରନ୍ମା ଦେଭିକୁ ଆସି ଏ ବିଷୟରେ ଆଲୋଚନା କରିଥିଲେ । ଏହି ଭିତରେ ଭି.ଭି.ଏସ. ଆୟେର ପପନାସମ ନଦୀରେ ସ୍ନାନ କରୁଥିବା ତାଙ୍କ ପୁଅ ପାଣିରେ ବୁଡି ଯାଉଥିବା ଅବସ୍ଥାରେ ତାଙ୍କୁ ରକ୍ଷା କରିବାକୁ ଯାଇ ନିଜେ ମୃତ୍ୟୁ ମୁଖରେ ପଡିଥିଲେ । ଫଳରେ ଗୁରୁକୁଳ ବନ୍ଦ ହୋଇ ଯାଇଥିଲା ।

## କୁଦିଅରସୁ ସମ୍ବାଦପତ୍ର ପ୍ରକାଶନ

ରାମସାମୀଙ୍କ ନେତୃତ୍ୱରେ ହୋଇଥିବା ଭାଇକମ ଆନ୍ଦୋଳନ ବିଷୟ ଅଧିକାଂଶ ସମ୍ବାଦପତ୍ର ପ୍ରକାଶ କଲେ ନାହିଁ । କେବଳ ଗୋଟିଏ ଦୁଇଟି ଛୋଟ ଖବର କାଗଜ ଏହାକୁ ପ୍ରକାଶ କରିଥିଲେ । ଯେଉଁମାନେ ବି ଏହା ପ୍ରକାଶ କରିଥିଲେ ସେମାନେ ଏହି ଆନ୍ଦୋଳନକୁ ସମର୍ଥନ କରୁନଥିଲେ । ଯେତେବେଳେ ରାମାସାମୀ ଗିରଫ ହେଲେ, ସେତେବେଳେ କୌଣସି ସମ୍ବାଦପତ୍ର ତାଙ୍କ କାର୍ଯ୍ୟକୁ ସମର୍ଥନ କରିନଥିଲେ । ସେମାନେ କେବଳ ସରକାରଙ୍କୁ ସମର୍ଥନ କରିଥିଲେ । ସମ୍ବାଦପତ୍ରମାନେ ଅବ୍ରାହ୍ମଣମାନଙ୍କ ବିଷୟରେ ସମ୍ବାଦ କାଁ ଭାଁ ପ୍ରକାଶ କରୁଥିଲେ ।

ଏହି ପରିସ୍ଥିତିରେ ରାମସାମୀ ସମ୍ବାଦପତ୍ରଟିଏ ପ୍ରକାଶ କରିବାକୁ ଚାହିଁଲେ । ତାଙ୍କ କାର୍ଯ୍ୟ ଓ ବିଚାର ବିଷୟରେ ଲୋକମାନଙ୍କୁ ଓ ଦେଶବାସୀଙ୍କୁ ଜଣାଇବା ପାଇଁ ସମ୍ବାଦପତ୍ରଟିଏ ଯେ ଦରକାର ଏହା ସେ ଭାବିଲେ । ପ୍ରଥମେ ୧୯୨୫ ମେ'୨ ତାରିଖରେ ସେ 'କୁଦି ଅରସୁ' ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶ ଆରମ୍ଭ କଲେ । ପ୍ରଥମ ସଂଖ୍ୟାଟିକୁ ଟି. ଜି. ସ୍ୱାମିଗଲ ଉନ୍ମୋଚନ କରିଥିଲେ । ସ୍ୱାମିଗଲ ଜଣେ ତାମିଲ ପଣ୍ଡିତ ।

"ଆମ ଦେଶର ସାମାଜିକ ମନୋଭାବରେ ଜାତିଗତ ଉଚ୍ଚ ନୀଚ ଭେଦଭାବ ବିସ୍ତାରିତ ହୋଇ ରହିଛି । ସମାନତାର ଭାବନାକୁ ପ୍ରସାର କରିବାକୁ ହେବ, ଯାହା ହେଉଛି କୁଦିଅରସୁର ଲକ୍ଷ୍ୟ । ଆମ ଧର୍ମରେ ରହିଥିବା ଦୁର୍ବଳତା ମାନଙ୍କୁ ଦୂର କରିବା ଆବଶ୍ୟକ । ରାମସାମୀ ଏହି ଉଦ୍ଦେଶ୍ୟରେଖି ଏହି ସାପ୍ତାହିକ

ପତ୍ରିକାଟି ଯେ ପ୍ରକାଶ କରୁଛନ୍ତି ତାହା ମୋର ମଧ୍ୟ ଲକ୍ଷ୍ୟ”– ଏହା ଥିଲା ସ୍ୱାମିଗଲଙ୍କର ବକ୍ତବ୍ୟ ।

ପ୍ରତ୍ୟେକ ଜାତିର ଲୋକମାନଙ୍କ ବିକାଶ ହେବା ଆବଶ୍ୟକ । ତାହା ନହେଲେ ରାଷ୍ଟ୍ରର ବିକାଶ ସମ୍ଭବ ହେବ ନାହିଁ । ଲୋକମାନଙ୍କ ମଧ୍ୟରେ ଆତ୍ମମର୍ଯ୍ୟାଦା, ସମତା ଓ ଭ୍ରାତୃତ୍ୱର ଭାବ ବିକଶିତ ହେବା ଦରକାର । ଏହି ଉଦ୍ଦେଶ୍ୟ ରଖି ଏହି ସାପ୍ତାହିକ ପତ୍ରିକା କୁଦିଅରସୁ ପ୍ରକାଶିତ ହେବ ।

‘କୁଦି ଅରସୁ’ ଛ’ମାସ ଧରି ପ୍ରକାଶିତ ହେଲା ପରେ ରାମସାମୀ ପତ୍ରିକାଟିର ଆଭିମୁଖ୍ୟ ପ୍ରସଙ୍ଗରେ କହିଥିଲେ–“ଗାନ୍ଧୀଜୀ ବିକାଶର ଏକ ଚିତ୍ର ଦେଇଛନ୍ତି । ତାମିଲନାଡୁର ଅସ୍ପୃଶ୍ୟ ଲୋକମାନଙ୍କର ବିକାଶକୁ ପ୍ରାଧାନ୍ୟ ଦେବାକୁ ହେବ । ଏହି ସବୁ ଲକ୍ଷ୍ୟ ପୂରଣ ଦିଗରେ କୁଦି ଅରସୁ ଜନଚେତନା ସୃଷ୍ଟି କରିବାକୁ ପ୍ରକାଶିତ ହେଉଛି । କୁଦି ଅରସୁ କାହା ସହିତ ଶତ୍ରୁତା କରିବାକୁ ଚାହେଁ ନାହିଁ । ବ୍ରାହ୍ମଣ ବ୍ୟକ୍ତିମାନଙ୍କ ପ୍ରତି ଏହାର କୌଣସି ବିଦ୍ୱେଷ ନାହିଁ । ବ୍ରାହ୍ମଣମାନେ ଯେ ଅନ୍ୟମାନଙ୍କ ଠାରୁ ଶ୍ରେଷ୍ଠ– ଏହି ଭାବନାକୁ ଆମେ ବିରୋଧ କରୁଛୁ । କେତେକ ବ୍ୟକ୍ତି ନ୍ୟୂନ, ଅସ୍ପୃଶ୍ୟ ଏହାକୁ ଆମେ ଗ୍ରହଣ କରୁ ନାହୁଁ । ସରକାରୀ ସ୍ତରରେ ସମସ୍ତ ଉଚ୍ଚ ପଦ ପଦବୀରେ କେବଳ ବ୍ରାହ୍ମଣମାନେ ରହିବେ ଓ ଅନ୍ୟଜାତିର ଲୋକମାନେ ସେମାନଙ୍କ ତଳେ ରହିବେ ଏପରି ମନୋଭାବକୁ ଗ୍ରହଣ କରାଯାଇ ପାରିବ ନାହିଁ । ଦେଶ ବାସ୍ତବ ସ୍ୱାଧୀନତା ପାଇବା ଆବଶ୍ୟକ । ଦେଶର ପ୍ରତ୍ୟେକ ନାଗରିକ ଆତ୍ମସମ୍ମାନର ସହ ଜୀବନ ଅତିବାହିତ କରିବା ଉଚିତ । ଲୋକମାନଙ୍କଠାରୁ ଚାନ୍ଦା ସଂଗ୍ରହକରି ପତ୍ରିକାଟି ତିଷ୍ଠି ରହିବା ଆମେ ଚାହୁଁ ନାହୁଁ । ସଂରକ୍ଷଣ ବ୍ୟବସ୍ଥା କାର୍ଯ୍ୟକାରୀ ହେବା ଯଥାର୍ଥ । ଏହା ହେଲେ ଦେଶର ଅନେକ ଲୋକ ଉପକୃତ ହେବେ । ଏହା ଥିଲା ରାମସାମୀଙ୍କ ବକ୍ତବ୍ୟ ।

ଏହି ଲକ୍ଷ୍ୟ ପୂରଣ ପାଇଁ ରାମସାମୀ ସଂରକ୍ଷଣ ନୀତିକୁ ସମର୍ଥନ କରୁଥିଲେ । କଂଗ୍ରେସ ଦଳ ଏହି ଲକ୍ଷ୍ୟମାନଙ୍କୁ ପ୍ରାଧାନ୍ୟ ଦେବା ପାଇଁ ଦଳ ଭିତରେ ସଂରକ୍ଷଣ ନୀତି ପ୍ରୟୋଗ ହେବା ଉଚିତ ବୋଲି ସେ ଭାବୁଥିଲେ ।

କଂଗ୍ରେସ ଦଳର ଉପଦେଷ୍ଟା କମିଟି ମିଟିଂରେ ରାମସାମୀ ଏହି ଲକ୍ଷ୍ୟମାନଙ୍କୁ ପାରିତ କରିନେଲେ । ତିରୁନେଲଭେଲିରେ ୧୯୨୦ରେ କଂଗ୍ରେସ ଦଳର ରାଜ୍ୟସ୍ତରୀୟ ସମ୍ମିଳନୀ ଥାଏ । ସେଠାରେ ଦୁଇଟି ପ୍ରସ୍ତାବକୁ ପାରିତ କରିବାକୁ ସେ ଲକ୍ଷ୍ୟ ରଖିଥାନ୍ତି । ଗୋଟିଏ ପ୍ରସ୍ତାବ ହେଉଛି ସଂରକ୍ଷଣ ଓ ଅନ୍ୟଟି ହେଉଛି ସ୍କୁଲମାନଙ୍କରେ ସଂସ୍କୃତ ଭାଷାକୁ ଯେପରି ପ୍ରାଧାନ୍ୟ ଦିଆଯାଉଛି ସେହି ପ୍ରାଧାନ୍ୟ ତାମିଲ ଭାଷାକୁ ଦେବା । ସମ୍ମିଳନୀରେ ଯେତେବେଳେ ରାମସାମୀ ପ୍ରସ୍ତାବମାନଙ୍କୁ ଆଗତ କଲେ, ଶ୍ରୀନିବାସ ଆୟେଙ୍ଗର ସଂରକ୍ଷଣ ନୀତିକୁ ତୀବ୍ର ବିରୋଧ କଲେ ଓ ଏହାକୁ ପାରିତ କରାଇ ଦେଲେ ନାହିଁ । ୧୯୨୧ରେ ରାଜ୍ୟ କଂଗ୍ରେସ ଦଳର ୨୭ତମ ଅଧିବେଶନ ତାଂଜାବୁରଠାରେ ଅନୁଷ୍ଠିତ ହେଲା । ସେଠାରେ ମଧ୍ୟ ରାମସାମୀ ସଂରକ୍ଷଣ ନୀତିକୁ ପାରିତ କରିବାକୁ ଚାହିଁଲେ । ସେ ସମୟରେ ରାଜାଜୀ ହସ୍ତକ୍ଷେପ କରି କହିଲେ " ସଂରକ୍ଷଣକୁ ଏକ ନୀତି ଭାବରେ ରଖାଯାଉ, ଏହାକୁ ପାରିତ କରାନଯାଉ ।"

୧୯୨୩ରେ କଂଗ୍ରେସ ଦଳର ୨୯ ତମ ଅଧିବେଶନ ସେଲମଠାରେ ଅନୁଷ୍ଠିତ ହେଲା । ସେହି ଅଧିବେଶନରେ ରାମସାମୀ ଓ ଅନ୍ୟ କେତେକ ସଭ୍ୟ ସଂରକ୍ଷଣ ପ୍ରସଙ୍ଗ ଆଣିଲେ । ଏଠାରେ ମଧ୍ୟ ରାଜାଜୀ ପ୍ରତିବନ୍ଧକ ସୃଷ୍ଟି କଲେ । ସେ କହିଲେ ଯେ ଅସହଯୋଗ ଆନ୍ଦୋଳନ ଏବେ ଦୁର୍ବଳ ହୋଇଯାଉଛି । ପ୍ରଥମେ ଅସହଯୋଗ ବିଷୟରେ ନିଷ୍ପତ୍ତି ହେଉ । ଦିଲ୍ଲୀରେ କଂଗ୍ରେସ ଅଧିବେଶନ ପରେ ସଂରକ୍ଷଣ ବିଷୟରେ ନିଷ୍ପତ୍ତି ହେବ । ରାଜାଜୀ ଚତୁରତାର ସହ ସଂରକ୍ଷଣ ନୀତିକୁ ପାରିତ କରିବାରେ ପ୍ରତିବନ୍ଧକ ହେଲେ ।

୧୯୨୪ରେ ତିରୁବନମଲ୍ଲାଇଠାରେ କଂଗ୍ରେସର ୩୦ତମ ରାଜ୍ୟ ସମ୍ମିଳନୀ ଅନୁଷ୍ଠିତ ହେଲା । ଏହି ଅଧିବେଶନରେ ରାମସାମୀ ସଭାପତିତ୍ୱ କରୁଥିଲେ । ସେ ଏହି ସମ୍ମିଳନୀରେ ଭାଷଣ ପ୍ରସଙ୍ଗରେ କହିଥିଲେ, "ହିନ୍ଦୁମାନଙ୍କ ମଧ୍ୟରେ ଏକତା ହ୍ରାସ ହେବାରେ ଲାଗିଛି । ବ୍ରାହ୍ମଣ ଓ ଅବ୍ରାହ୍ମଣମାନଙ୍କ ସ୍ଥିତି ସଂପର୍କରେ ଆମେ ଚିନ୍ତାକରିବା ଉଚିତ । ସେମାନେ ଯଦିଓ ଗୋଟିଏ ଧର୍ମର

ଲୋକ, ସେମାନଙ୍କ ମଧ୍ୟରେ କାହିଁକି ଏତେ ପାର୍ଥକ୍ୟ ରହିବ ! ଏହି ପାର୍ଥକ୍ୟ ପଶ୍ଚାତରେ କେତେକ ମୌଳିକ କାରଣ ରହିଛି । ଯେଉଁମାନେ ଦେଶ ପ୍ରତି ଆଗ୍ରହ ବ୍ୟକ୍ତ କରୁଛନ୍ତି ସେମାନେ ଏହା ଅନୁଭବ କରିବା ଉଚିତ ଓ ଦେଶର ଏକତା ପାଇଁ କାର୍ଯ୍ୟକରିବା ଆବଶ୍ୟକ ।”

ଏହି ସମ୍ମିଳନୀରେ ଶ୍ରୀନିବାସ ଆୟେଙ୍ଗର, ରଙ୍ଗସାମୀ ଆୟେଙ୍ଗର ଓ ସେମାନଙ୍କର ସମର୍ଥକ ଏବଂ ରାମସାମୀଙ୍କ ସମର୍ଥକମାନଙ୍କ ମଧ୍ୟରେ ତୀବ୍ର ବାଦାନୁବାଦ ହୋଇଥିଲା । ଏହି ସବୁ କାରଣରୁ ରାମସାମୀ କଂଗ୍ରେସ ଦଳ ପ୍ରତି ଅନାଗ୍ରହ ବ୍ୟକ୍ତ କଲେ ।

# ୮. କଂଗ୍ରେସ ଦଳଦ୍ୱାରା ଅସମ୍ମାନିତ

କଂଗ୍ରେସ ଦଳର ୩୧ତମ ଅଧିବେଶନ ୧୯୨୫ରେ କାଞ୍ଚିପୁରମଠାରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ରାମସାମୀ ତାଙ୍କର ମତ ନେଇ ଅସମ୍ମାନିତ ହେଲେ । ଏହାପରେ ସେ ଅବ୍ରାହ୍ମଣ ବ୍ୟକ୍ତିଙ୍କର ଏକ ସଭା ଆହୂତ କଲେ । ଟି.ଏ. ରାମଲିଙ୍ଗମ ଚେଟ୍ଟିୟାର ଏହି ସଭାରେ ସଭାପତିତ୍ୱ କରିଥିଲେ । ଅବ୍ରାହ୍ମଣ ଲୋକମାନଙ୍କର କିପରି ବିକାଶ କରାଯିବ ଏହି ବିଷୟରେ ମୁଖ୍ୟତଃ ଆଲୋଚନା ହେଲା । ବିଶେଷକରି ରାଜ୍ୟ ବିଧାନ ପରିଷଦ ପାଇଁ ହେବାକୁ ଥିବା ନିର୍ବାଚନ ପୃଷ୍ଠଭୂମିରେ କଣ ପଦକ୍ଷେପ ଗ୍ରହଣ କରାଯିବ ଏହା ଆଲୋଚନାର ପ୍ରସଙ୍ଗ ହେଲା । ସେଠାରେ ମତ ପ୍ରକାଶ ପାଇଲା ଯେ ଅବ୍ରାହ୍ମଣ ଲୋକମାନଙ୍କ ସଂଖ୍ୟାନୁଯାୟୀ ସେମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ରହିବା ଆବଶ୍ୟକ । ଏହି ନିଷ୍ପତ୍ତି କଂଗ୍ରେସ ଦଳର କାର୍ଯ୍ୟକାରୀ କମିଟିକୁ ଜଣାଇ ଦିଆଗଲା । ତେବେ କାର୍ଯ୍ୟକାରୀ କମିଟି ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଲା । ପରଦିନ ଏହି ପ୍ରସ୍ତାବ ସାଧାରଣ ଅଧିବେଶନରେ ରଖାଗଲା । ସଭାପତି ରାମସାମୀଙ୍କୁ କହିଲେ ଯେ ଏହାର ଆଲୋଚନା ପାଇଁ ଅନ୍ତତଃ ୩୦ ଜଣ ସଦସ୍ୟ ସ୍ୱାକ୍ଷର କରିବା ଆବଶ୍ୟକ । ରାମସାମୀଙ୍କର ପଚିଶ ଜଣ ସମର୍ଥକ ସେଥିରେ ଦସ୍ତଖତ କରି ପ୍ରସ୍ତାବ ଦେଲେ ।

ବ୍ରାହ୍ମଣ ନେତାମାନେ ପ୍ରତିନିଧିମାନଙ୍କର ଏପରି ଏକ ଆନୁଷ୍ଠାନିକ ପ୍ରସ୍ତାବକୁ ଗ୍ରହଣ କରିପାରିଲେ ନାହିଁ । ସେମାନେ ନିଶ୍ଚିତ ଥିଲେ ଯେ ଯଦି ଏହି ପ୍ରସ୍ତାବ ସଂପର୍କରେ ମତ ନିଆଯାଏ, ବହୁ ଅଧିକ ବ୍ୟକ୍ତି ପ୍ରସ୍ତାବ ସପକ୍ଷରେ ମତ ଦେବେ । ସେମାନେ ଥିରୁଭିକାଙ୍କୁ ଏପରି ଏକ ପ୍ରସ୍ତାବ କାର୍ଯ୍ୟସୂଚୀରେ ନ ରଖିବାକୁ କହିଲେ । ପି.ଭି. ନାଇଡୁ ବ୍ରାହ୍ମଣମାନଙ୍କ ସପକ୍ଷରେ ଥିଲେ । ସଭାପତି ଏହି ପ୍ରସ୍ତାବଟିକୁ ଆଦୌ ବିଚାରକୁ ବା ଆଲୋଚନାକୁ ନ ନେଇ ଅଧିବେଶନ ପରିସମାପ୍ତି ଘୋଷଣା କଲେ । ଏହି ଘଟଣାରେ ରାମସାମୀ ହତୋତ୍ସାହିତ ହେଲେ ଓ ଏହାକୁ ଏକ ଅସମ୍ମାନ ଭାବେ ନେଲେ । ଥିରୁ ଭି.କା ଏହି ପ୍ରସ୍ତାବ ବିଷୟ ଉଠାଇଲେ ନାହିଁ

କାରଣ ଏହା କଂଗ୍ରେସ ଦଳର ନୀତି ବିରୁଦ୍ଧ ବୋଲି ସେ ବିଚାର କରିଥିବା ଅନେକ ମତ ଦେଲେ ।

ରାମସାମୀ ଅଶାନ୍ତ ହୋଇ ଏହା କହିଲେ -"ଆପଣ ୩୦ ଜଣଙ୍କର ଦସ୍ତଖତ ସହ ପ୍ରସ୍ତାବ ଦେବାକୁ କହିଲେ । ଏଥିରେ ପଚାଶ ଜଣ ଦସ୍ତଖତ କରି ଦେଲେ । ସେହି ସ୍ଥିତିରେ ଏହା ସାଧାରଣ ସ୍ୱାର୍ଥର ପରିପନ୍ଥୀ ବୋଲି ଆପଣ କିପରି ଭାବୁଛନ୍ତି ?" ରାମସାମୀ ବଡପାଟିରେ ଏହା କହିଲା ବେଳେ ବ୍ରାହ୍ମଣ ମାନେ କହିଲେ-"ସଭାପତି ତାଙ୍କ ଭାଷଣ ଶେଷକରି ସାରିଲେଣି । ଆଉ କିଛି ଆଲୋଚନା ହୋଇପାରିବ ନାହିଁ ।"

ସେମାନଙ୍କ ଉଦ୍ଦେଶ୍ୟରେ ରାମସାମୀ କହିଲେ-"ଏହି ଆଲୋଚନା ସଭାପତି ଓ ମୋ ଭିତରେ । ସେ ଯଦି ମୋତେ ନକହିବାକୁ କହିବେ, ମୁଁ ବନ୍ଦ କରିବି । ଆପଣାମାନେ ନୀରବ ହୁଅନ୍ତୁ ।" ବ୍ରାହ୍ମଣମାନେ ପାଟିକରି କିହିଲେ- "ବସନ୍ତୁ, ବସନ୍ତୁ । " ରାମସାମୀ କହିଲେ-"ଆପଣମାନେ ଏପରି ଚିତ୍କାର କରନ୍ତୁ ନାହିଁ । ଆମେ ଯଦି ପାଟି କରିବୁ, ଆପଣମାନଙ୍କୁ ଏଠାରୁ ଚାଲିଯିବାକୁ ହେବ । ମୁଁ ସଭାପତିଙ୍କର କାର୍ଯ୍ୟକୁ ବିରୋଧ କରୁଛି ।" ସେ ଏହାକହି ସେଠାରେ ନବସି ସଭାରୁ ଉଠି ଚାଲିଆସିଲେ । ସେ ଚାଲିଆସିବା ସହ ତାଙ୍କର ସମର୍ଥକମାନେ ମଧ୍ୟ ତାଙ୍କ ସହ ଚାଲି ଆସିଲେ । ସଭାପତି ଓ ରାଜାଜୀ ତାଙ୍କୁ କହିଲେ, "ବନ୍ଧୁ ବସନ୍ତୁ, ଚାଲିଯା'ନ୍ତୁ ନାହିଁ" । ତେବେ ରାମସାମୀ କାହାକୁ ନଚାହିଁ ସେଠାରୁ ଚାଲିଆସିଲେ ।"

ଏହି ଘଟଣା ପରେ ରାମସାମୀ କଂଗ୍ରେସ ଦଳ ଛାଡିବାକୁ ସ୍ଥିର କଲେ । ଏହାପରେ ସେ ଜଷ୍ଟିସ ପାର୍ଟିର ନିକଟବର୍ତ୍ତୀ ହେଲେ । କଂଗ୍ରେସ ଯେଉଁ ବିଷୟକୁ ଗ୍ରହଣ କଲା ନାହିଁ, ଜଷ୍ଟିସ ପାର୍ଟି ତାହାକୁ ଅକ୍ଲେଶରେ ଗ୍ରହଣ କଲା ।

# ୯. ଆତ୍ମ-ମର୍ଯ୍ୟାଦା ଅନୁଷ୍ଠାନର ଆରମ୍ଭ

ରାମସାମୀ କଂଗେ୍ରସ ଦଳ ଛାଡି ଚଳି ଆସିବା ପରେ "ଆତ୍ମମର୍ଯ୍ୟାଦା" ଭାବନା ଲୋକମାନଙ୍କ ମଧ୍ୟରେ ପ୍ରସାର କରିବାକୁ ପ୍ରଯତ୍ନ କଲେ । "ଲୋକମାନଙ୍କୁ ଉଚ୍ଚ-ନୀଚ ବୋଲି ଭେଦଭାବ ସୃଷ୍ଟି କରିବା ଯଥାର୍ଥ ନୁହେଁ । ଜନ୍ମକୁ ଆଧାରକରି କାହାକୁ ଉଚ୍ଚ ଜାତିର ଓ ଅନ୍ୟ କାହାକୁ ନୀଚ ବା ଛୋଟ ଜାତିର ବୋଲି ମନେକରିବା ଅନୈତିକ । ପ୍ରତ୍ୟେକ ମଣିଷର ଆତ୍ମମର୍ଯ୍ୟାଦା ରହିଛି । ଜଣେ ଅନ୍ୟକୁ ସମ୍ମାନ ପ୍ରଦର୍ଶନ କରିବା ଏକ ମାନବିକ ଦାୟିତ୍ୱ ।" ପେରିୟାର ଏହିପରି ଭାବଧାରାମାନ ଲୋକମାନଙ୍କ ଭିତରେ ପ୍ରସାର କରିବାକୁ ଲାଗିଲେ ।

୧୯୨୬ ଜାନୁୟାରୀ ୨୪ରେ ସେ "କୁଦି ଆରସୁ" ପତ୍ରିକାର ସଂପାଦକୀୟରେ ଆତ୍ମମର୍ଯ୍ୟାଦା ସଂପର୍କରେ ଲେଖାଟିଏ ପ୍ରକାଶ କରିଥିଲେ । ସେହି ଲେଖାକୁ ଆଧାରକରି ତାଙ୍କର ଆତ୍ମମର୍ଯ୍ୟାଦା ଆନ୍ଦୋଳନର ଭିତ୍ତି ପଡିଥିଲା ।

କୌଣସି ଗୋଷ୍ଠୀର ଆତ୍ମମର୍ଯ୍ୟାଦାକୁ ଦମନ କରିବା ଓ ସେମାନଙ୍କ ପ୍ରତି ଅସମ୍ମାନଜନକ ବ୍ୟବହାର ପ୍ରଦର୍ଶନ କରିବାଦ୍ୱାରା ସ୍ୱାଧୀନତାର କିଛି ମୂଲ୍ୟ ରହିବ କି ? ଆମେ ସ୍ୱାଧୀନତା କଥା କହିବା ବେଳେ ଅନ୍ୟର ସ୍ୱାଭିମାନକୁ ଆମେ କିପରି ଅସମ୍ମାନ କରିବା ? ଏହାଦ୍ୱାରା ସ୍ୱାଧୀନତାର ମୂଲ୍ୟ ସେମାନଙ୍କ ପାଇଁ ରହିବ କି ? ଆମ ସମାଜର କେତେ ଲୋକଙ୍କୁ ଆମେ କାହିଁକି ମନ୍ଦିର ଭିତରେ ପ୍ରବେଶ କରିବାକୁ ଅନୁମତି ଦେବା ନାହିଁ ? ଲୋକମାନଙ୍କୁ ରାସ୍ତାରେ ଚଳିବାର ଅଧିକାରରୁ ଆମେ ବଞ୍ଚିତ କରିବା କେଉଁ ସ୍ୱାଧୀନତା ? ସେମାନେ କାହିଁକି ଏହି ସ୍ୱାଧୀନତା ଉପଭୋଗ କରିବେ ନାହିଁ ?

ପାଞ୍ଚବର୍ଷ ତଳେ ଗାନ୍ଧୀଜୀ ଚେନାଇଠାରେ କହିଥିଲେ "ମୁଁ ଯଦି ଅନ୍ୟକୁ ସମ୍ମାନର ସହ ବଞ୍ଚିବାକୁ ଚାହିଁବି ନାହିଁ, ମୁଁ କିପରି ଏକ ସ୍ୱାଧୀନ ରାଷ୍ଟ୍ରର ପରିକଳ୍ପନା କରିବି ।"

ସମାଜରୁ ଅସ୍ପୃଶ୍ୟତା ଦୂର ହେବା ଓ ଖଦୀର ପ୍ରସାରଦ୍ୱାରା ଆମେ ସ୍ୱାଭିମାନର ସହ ଜୀବନ ନିର୍ବାହ କରିପାରିବା । ଆମେ ଯଦି ଦେଶର ସ୍ୱାଧୀନତା ଚାହୁଁ ଅନ୍ୟର ଆତ୍ମସମ୍ମାନ ପ୍ରତି ଆମକୁ ସମ୍ମାନ କରିବାକୁ ହେବ । ରାମସାମୀଙ୍କର ବକ୍ତବ୍ୟ ଥିଲା – "ଅବ୍ରାହ୍ମଣ ମାନଙ୍କ ପାଇଁ ଅସ୍ପୃଶ୍ୟତା ଦୂରୀକରଣ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ଅସ୍ପୃଶ୍ୟମାନଙ୍କର ବିକାଶ ଅର୍ଥ ଅବ୍ରାହ୍ମଣ ମାନଙ୍କର ଉନ୍ନତି । ଅସ୍ପୃଶ୍ୟମାନଙ୍କର ଦୁଃଖ ଦୁର୍ଦ୍ଦଶା ହେଉଛି ଅବ୍ରାହ୍ମଣମାନଙ୍କର ଦୁଃଖ ଦୁର୍ଦ୍ଦଶା । ତେଣୁ ଅସ୍ପୃଶ୍ୟତା ଦୂର ହେଲେ ଦେଶରେ ସ୍ୱାଧୀନତାର ଅର୍ଥ ରହିବ ।"

ସେମାନେ କେତେକ ରାସ୍ତାରେ ଚାଲିପାରିବେ ନାହିଁ, ମନ୍ଦିର ଭିତରେ ପ୍ରବେଶ କରିପାରିବେ ନାହିଁ । ବ୍ରାହ୍ମଣମାନେ ଯେଉଁ ସ୍ଥାନକୁ ଯିବେ ସେମାନେ ସେଠାକୁ ଯାଇପାରିବେ ନାହିଁ । ଏହିପରି ନିମ୍ନ ଶ୍ରେଣୀର ଲୋକମାନଙ୍କୁ ମନ୍ଦ ବ୍ୟବହାର ପ୍ରଦର୍ଶନ କରାଯାଇଛି । ଏହି ସାମାଜିକ ସମସ୍ୟାମାନ ଶୀର୍ଷରେ ପହଞ୍ଚିଛି । ଏହି ସ୍ଥିତିରେ ସମାଜର ଯେକୌଣସି ସମସ୍ୟାଠାରୁ ଆତ୍ମସମ୍ମାନ ଜନିତ ସମସ୍ୟା ଏକ ଗୁରୁତର ପ୍ରଶ୍ନ ।

ରାମସାମୀ କଂଗ୍ରସ ଦଳ ଛାଡି ଚାଲି ଆସିବା ପରେ ସମାଜରେ ଆତ୍ମମର୍ଯ୍ୟାଦା ଆନ୍ଦୋଳନ ପ୍ରସାରରେ ଗଭୀର ସଂପୃକ୍ତି ପ୍ରକାଶ କଲେ । ସେ ଜଷ୍ଟିସ ପାର୍ଟିର ସଭାରେ ଯୋଗ ଦେଲେ । ରାମସାମୀଙ୍କର କାର୍ଯ୍ୟ ପୃଷ୍ଠଭୂମିରେ ସେ କ'ଣ କରୁଛନ୍ତି, କଂଗ୍ରେସ ତାହା ନଜର ରଖିବାକୁ ଏକ କମିଟି ଗଠନ କଲା । କମିଟିର ବିବରଣୀ ଆଧାରରେ ସେମାନେ ରାମସାମୀଙ୍କୁ କଂଗ୍ରେସ ଦଳରୁ ବହିଷ୍କାର କରିବା ଘୋଷଣା କଲେ । ଏହି ଘଟଣାପରେ ରାମସାମୀ ଜଷ୍ଟିସ ପାର୍ଟିର ନିକଟତର ହେଲେ । ଅବ୍ରାହ୍ମଣମାନଙ୍କର ଅଧିକାର ପାଇଁ ରାମସାମୀଙ୍କର ସଂଗ୍ରାମ ଅବ୍ୟାହତ ରହିଲା । ଜଷ୍ଟିସ ପାର୍ଟିର ସମ୍ମିଳନୀରେ ଯୋଗ ଦେଇ ସେ ଅବ୍ରାହ୍ମଣ ମାନଙ୍କ ଅଧିକାର ସଂପର୍କରେ ସଚେତନତା ସୃଷ୍ଟି କରିବାକୁ ଲାଗିଲେ । ମାଡ୍ରାସ ରାଜ୍ୟ ବିଧାନ ପରିଷଦ ପାଇଁ ନଭେମ୍ବର ୧୯୨୬ରେ ନିର୍ବାଚନ ହେଲା । ଯେ କୌଣସି ରାଜନୈତିକ ଦଳ ଆଧାରରେ ପ୍ରାର୍ଥୀମାନଙ୍କୁ ସମର୍ଥନ ନ ଦେଇ ନିସ୍ୱାର୍ଥପର, ନୀତିବାଦୀ ଅବ୍ରାହ୍ମଣ ପ୍ରାର୍ଥୀମାନଙ୍କୁ ସମର୍ଥନ କଲେ ।

ଏହି ନିର୍ବାଚନରେ ଜଷ୍ଟିସ ପାର୍ଟି ଭଲ ପ୍ରଦର୍ଶନ କଲା ନାହିଁ । କଂଗ୍ରେସଦଳ ସରକାର ଗଠନ କରିବାକୁ ଚାହିଁଲା ନାହିଁ । ଡକ୍ଟର ପି.ସୁବୋରାୟନ ଡିସେମ୍ବରରେ ଏକ ସ୍ୱାଧୀନ ସରକାର ଗଠନ କଲେ । ଜଷ୍ଟିସ ପାର୍ଟି ବିରୋଧୀ ଦଳ ଭାବେ କାର୍ଯ୍ୟ କଲା ।

ନିର୍ବାଚନରେ ପରାଜୟ ପରେ ଜଷ୍ଟିସ ପାର୍ଟିରେ ଫାଟ ଦେଖାଦେଲା । ଏହା ଜାଣିବାପରେ ରାମସାମୀ ପାର୍ଟିରେ ସଂହତି ପାଇଁ ପ୍ରୟାସକଲେ । ୧୯୨୬ ଡିସେମ୍ବର ୨୫, ୨୬ ଦୁଇଦିନ ଧରି ମଦୁରାଇ ଠାରେ ଅବ୍ରାହ୍ମଣମାନଙ୍କର ଏକ ସମ୍ମିଳନୀ ହେଲା । ରାମସାମୀ ଲୋକମାନଙ୍କୁ ଖଦୀ ପିନ୍ଧିବାକୁ କହିଲେ ଓ ଜଷ୍ଟିସ ପାର୍ଟିର ଲୋକମାନଙ୍କୁ ପ୍ରେରଣା ଦେଲେ । ଏହି ସମ୍ମିଳନୀରେ କେତେକ ପ୍ରସ୍ତାବ ଗୃହୀତ ହେଲା ।

ଯଦିବା ରାମସାମୀ କଂଗ୍ରେସ ପରିତ୍ୟାଗ କରିଥିଲେ, ତାଙ୍କର ଗାନ୍ଧୀଙ୍କ ପ୍ରତି ଗଭୀର ସମ୍ମାନ ରହିଥିଲା । ସୁଦେଶ ମିତ୍ରାନ ନାମକ ଏକ ତାମିଲ ସମ୍ବାଦପତ୍ରରେ ଗାନ୍ଧୀଜୀଙ୍କର ଏକ ବିବୃତ୍ତି ପଢ଼ି ରାମସାମୀ ବହୁତ ଆଘାତ ପାଇଲେ । ଫଳରେ ଗାନ୍ଧୀଙ୍କ ସହ ତାଙ୍କର ମତପାର୍ଥକ୍ୟ ହେଲା । ସେହି ବିବୃତ୍ତିରେ ଗାନ୍ଧୀଙ୍କର ମତ ରହିଥିଲା– "ପ୍ରତ୍ୟେକ ବର୍ଣ୍ଣର ଏକ କର୍ତ୍ତବ୍ୟ ନିର୍ଦ୍ଧାରିତ ହୋଇଛି । ପ୍ରତ୍ୟେକ ବ୍ୟକ୍ତି ନିଜ ବର୍ଣ୍ଣର ଧର୍ମ / କର୍ତ୍ତବ୍ୟ କରିବା ଆବଶ୍ୟକ । ଜଣେ ଏପରି କରିବାଦ୍ୱାରା ସେ ମହାନ ହୋଇଥାଏ ।

"ଜଣେ ବ୍ରାହ୍ମଣର ନିର୍ଦ୍ଦିଷ୍ଟ ଧର୍ମ/କର୍ତ୍ତବ୍ୟ ରହିଛି । ସେ ନିଜର ଧର୍ମ ସଂପାଦନ କରିବାଦ୍ୱାରା ବଡ ହୋଇଥାଏ । ଅନ୍ୟକୁ ସେବା ଦେବା ଜଣେ ବ୍ରାହ୍ମଣର କର୍ତ୍ତବ୍ୟ । ଅନ୍ୟମାନଙ୍କୁ ସୁରକ୍ଷା ଦେବା ଜଣେ କ୍ଷତ୍ରିୟର ଧର୍ମ ବା କର୍ତ୍ତବ୍ୟ । ସେପରି କରିବା ଦ୍ୱାରା ସେ ବଡ ହୋଇଥାଏ । ସେହିପରି ଅନ୍ୟ ବର୍ଣ୍ଣର ଲୋକମାନେ ନିଜର କର୍ତ୍ତବ୍ୟ କରିବା ଉଚିତ । ତାହା କରିବା ଦ୍ୱାରା ସେମାନେ ବଡ ହୋଇଥାନ୍ତି । ଯେତେବେଳେ ଏହି ପ୍ରକାର ଏକ ବିଧାନ ରହିଛି, ସେତେବେଳେ ଉଚ୍ଚ-ନୀଚର

ପ୍ରଶ୍ନ କୁଆଡୁ ଉଠୁଛି । ଏଥିରେ କୌଣସି ବର୍ଣ୍ଣକୁ ଅନ୍ୟ ବର୍ଣ୍ଣର ଲୋକଙ୍କଠାରୁ ସୁରକ୍ଷା ଦେବାର ପ୍ରଶ୍ନ କାହିଁକି ଉଠୁଛି !"

ଗାନ୍ଧୀଜୀଙ୍କର ଏହି ଉକ୍ତି ଦେଖିବାପରେ ରାମସାମୀ ବହୁତ ଅସନ୍ତୁଷ୍ଟ ହେଲେ । ସେ ଗାନ୍ଧୀଜୀଙ୍କୁ ସାକ୍ଷାତକରି ଏହି ପ୍ରସଙ୍ଗ ଉପରେ ଆଲୋଚନା କରିବାକୁ ଚାହିଁଲେ । ସେ ସମୟରେ ଗାନ୍ଧୀଜୀ ବାଙ୍ଗାଲୋରରେ ରହୁଥିଲେ, ରାମସାମୀ ସେଠାରେ ତାଙ୍କୁ ସାକ୍ଷାତ କରିବାକୁ ଗଲେ । ଏହି ସମୟରେ ରାମସାମୀ ତିନିଟି ବିଷୟ ଚିନ୍ତା କରିଥିଲେ ।

୧. କଂଗ୍ରେସ ଦଳକୁ ଭାଙ୍ଗିଦେବା ଆବଶ୍ୟକ

୨. ସମାଜରୁ ଜାତିଗତ ଭେଦଭାବର ବିଲୋପ

୩. ହିନ୍ଦୁଧର୍ମରେ ଗୁରୁତ୍ୱପୂର୍ଣ୍ଣ ସଂସ୍କାର ଆବଶ୍ୟକ

ଗାନ୍ଧୀ ଓ ରାମସାମୀଙ୍କ ମଧ୍ୟରେ ହୋଇଥିବା ଆଲୋଚନା ନିମ୍ନରେ ଦିଆଗଲା :-

ରାମସାମୀ – ହିନ୍ଦୁଧର୍ମର ପତନ ଆବଶ୍ୟକ ।

ଗାନ୍ଧୀ – କାହିଁକି ?

ରାମସାମୀ- ହିନ୍ଦୁଧର୍ମ ବୋଲି କିଛି ନାହିଁ ।

ଗାନ୍ଧୀ – ଏହା ଅଛି ।

ରାମସାମୀ – ଏହା କେବଳ ବ୍ରାହ୍ମଣମାନଙ୍କ ଦ୍ୱାରା ସୃଷ୍ଟି ହୋଇଛି ।

ଗାନ୍ଧୀ- ପ୍ରତ୍ୟେକ ଧର୍ମ ସେହିପରି ସୃଷ୍ଟି ହୋଇଛି ।

ରାମସାମୀ- ପ୍ରତ୍ୟେକ ଧର୍ମର ଇତିହାସ ରହିଛି । ପ୍ରତ୍ୟେକ ଧର୍ମର ଆଦର୍ଶ ଓ ନିୟମ ରହିଛି । ସେଥିପାଇଁ ଲୋକମାନେ ସେ ଧର୍ମମାନଙ୍କୁ ଗ୍ରହଣ କରୁଛନ୍ତି ।

ଗାନ୍ଧୀ- ହିନ୍ଦୁ ଧର୍ମରେ କ'ଣ ସେପରି ନାହିଁକି ?

ରାମସାମୀ- ସେପରି ନାହିଁ । ହିନ୍ଦୁମାନଙ୍କ ଭିତରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ

ଶୂଦ୍ରମାନେ ରହିଛନ୍ତି । ଏହା ବ୍ୟତୀତ ହିନ୍ଦୁଧର୍ମରେ କୌଣସି ଗୁରୁତ୍ୱପୂର୍ଣ୍ଣ ନିୟମ ନାହିଁ ।

ଗାନ୍ଧୀ– ଅନ୍ତତଃ ଏତିକି ତ ରହିଛି ।

ରାମସାମୀ – ହିନ୍ଦୁ ଧର୍ମ ଥିବା ପର୍ଯ୍ୟନ୍ତ ସମାନତା ଆସିପାରିବ ନାହିଁ ।

ଗାନ୍ଧୀ – ହିନ୍ଦୁଧର୍ମ ମଧ୍ୟରେ ଏହା ଆସିପାରିବ ।

ରାମସାମୀ – ଯଦି ତାହା ସମ୍ଭବ, ତେବେ ବ୍ରାହ୍ମଣ ଓ ଶୂଦ୍ରମାନଙ୍କ ମଧ୍ୟରେ ଏତେ ପାର୍ଥକ୍ୟ କାହିଁକି ? ଏ ବିଷୟରେ କ'ଣ କୁହାଯିବ ?

ଗାନ୍ଧୀ – ଆପଣ ଯାହା କହୁଛନ୍ତି ମୁଁ ସମ୍ମତ । ହିନ୍ଦୁ ଧର୍ମ ବୋଲି କିଛି ନାହିଁ ବୋଲି ମୁଁ ଗ୍ରହଣ କରୁଛି । ମୁଁ ଏହା ମଧ୍ୟ ମାନୁଛି ଯେ ହିନ୍ଦୁ ଧର୍ମରେ ନିୟମ ନାହିଁ । ତେବେ ଆମେ ନିଜକୁ ହିନ୍ଦୁ କହି ଆମେ ଆମର ଆଦର୍ଶ ସୃଷ୍ଟି କରିବା ଦରକାର ।

ରାମସାମୀ – ଆମେ ତାହା କରିପାରିବା ନାହିଁ ।

ଗାନ୍ଧୀ– କାହିଁକି ?

ରାମସାମୀ – ହିନ୍ଦୁ ଧର୍ମର ସ୍ୱାର୍ଥପର ଗୋଷ୍ଠୀଟି ତାହା ଆପଣଙ୍କୁ କରାଇବାକୁ ଦେବେ ନାହିଁ ?

ଗାନ୍ଧୀ– ହସିକରି, ସେମାନେ କିଏ ?

ରାମସାମୀ – ବ୍ରାହ୍ମଣମାନେ ।

ଗାନ୍ଧୀ – ସେପରି କୁହନ୍ତୁ ନାହିଁ । ମୁଁ ଗୋପାଳ କୃଷ୍ଣ ଗୋଖଲେଙ୍କ ପରି ଜଣେ ବ୍ରାହ୍ମଣଙ୍କୁ ଦେଖିଛି, ଯିଏ ଅତି ଆଦର୍ଶ ବ୍ୟକ୍ତି ।

ରାମସାମୀ– ଆପଣଙ୍କ ପରି ଜଣେ ମହାତ୍ମା ମାତ୍ର ଜଣେ ବ୍ରାହ୍ମଣଙ୍କର ସଂଧାନ ପାଇଛନ୍ତି, ଯିଏ ମହାନ, ତେବେ ମୋ ପରି ଏକ ସାଧାରଣ ମଣିଷ କିପରି ଉତ୍ତମ ବ୍ରାହ୍ମଣଙ୍କର ସନ୍ଧାନ ପାଇବ ?

ଗାନ୍ଧୀ- ବ୍ରାହ୍ମଣମାନେ ସମାଜର ଶିକ୍ଷିତ ବ୍ୟକ୍ତି । ଶିକ୍ଷିତ ହୋଇଥିବାରୁ ସେମାନେ ନିର୍ଦ୍ଦେଶ ଦେଇପାରୁଛନ୍ତି । ଆମେ ସେମାନଙ୍କୁ ସମାଲୋଚନା କରିବା ପରିବର୍ତ୍ତେ ଆମେ ସେମାନଙ୍କ ସ୍ତରରେ ପହଞ୍ଚିବାକୁ ପ୍ରୟାସ କରିବା ଉଚିତ- ଏହା ଗାନ୍ଧୀ ହସିକରି କହିଲେ ।

ରାମସାମୀ- ବ୍ରାହ୍ମଣମାନେ ବୁଦ୍ଧିମାନ ଜାତି । ସେମାନେ ୯୭% ଭାଗ ଲୋକଙ୍କୁ ଶିକ୍ଷାରୁ ବଞ୍ଚିତକରି ରଖିଛନ୍ତି ଓ ସମାଜରେ ବିଷମତା ସୃଷ୍ଟି କରିଛନ୍ତି । ଯେଉଁ ଧର୍ମ ଯୋଗୁ ସମାଜରେ ଏତେ ବୈଷମ୍ୟ ସୃଷ୍ଟି ହୋଇଛି, ତାହାର ଅବସାନ ହେବା ଆବଶ୍ୟକ ।

ଗାନ୍ଧୀ- ବ୍ରାହ୍ମଣମାନଙ୍କ ବିରୁଦ୍ଧରେ ଆପଣ ଘୃଣା ଭାବ ପୋଷଣ କରୁଛନ୍ତି । ଆପଣଙ୍କ ମନରେ ସେମାନଙ୍କ ପ୍ରତି ବିଦ୍ୱେଷ ସୃଷ୍ଟି ହୋଇଛି । ଆମେ ଆମର ଆଲୋଚନାରେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରି ନାହେଁ । ଆମେ ପୁଣି ଦୁଇ ତିନି ଥର ସାକ୍ଷାତରେ ଆଲୋଚନା କରିବା ଓ ଆମର ମତ ସଂପର୍କରେ ସିଦ୍ଧାନ୍ତରେ ପହଞ୍ଚିବା ।

ଏହି ଆଲୋଚନା ପରେ ସେ କିଛି ସିଦ୍ଧାନ୍ତକୁ ନ ଆସି ଅଶାନ୍ତ ହୋଇ ଫେରିଲେ । ତାଙ୍କର ଗାନ୍ଧୀଜୀଙ୍କ ପ୍ରତି ଯେଉଁ ସମ୍ମାନ ଥିଲା, ତାହା କମିବାରେ ଲାଗିଲା ।

ରାମସାମୀଙ୍କ ମତରେ ଯାହାଙ୍କୁ ମହାତ୍ମା କୁହାଯିବ, ତାଙ୍କର ମହତ୍ ଗୁଣ ଥିବା ଆବଶ୍ୟକ ଓ ସେହି ଅନୁଯାୟୀ ତାଙ୍କର ବିଚାର ହେବା ଦରକାର । ଜଣଙ୍କର ଭାବମୂର୍ତ୍ତି ପାଇଁ ଜଣେ ମହାତ୍ମା ନୁହନ୍ତି । ଗାନ୍ଧୀଙ୍କ ସହ ସାକ୍ଷାତ ପରେ ରାମସାମୀଙ୍କର ମନୋଭାବରେ ପରିବର୍ତ୍ତନ ହେଲା, କୁଦି ଅରସୁ, ପତ୍ରିକାରେ ମଧ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ କରାଗଲା ।

ଆତ୍ମ ମର୍ଯ୍ୟାଦା ଆନ୍ଦୋଳନ ପାଇଁ ରାମସାମୀ କେତେକ ନିୟମର ଅବତାରଣା କଲେ –

୧ . ଜନ୍ମରୁ ବ୍ୟକ୍ତିମାନଙ୍କ ଭିତରେ କୌଣସି ପାର୍ଥକ୍ୟ ନଥାଏ ।

୨. ଆମେ ଏପରି ଏକ ସମାଜ ନିର୍ମାଣ କରିବାକୁ ଚାହିଁବା, ଯେଉଁଠି ଆର୍ଥିକ ସ୍ତରରେ ବିଶାଳ ପାର୍ଥକ୍ୟ ଜନଗଣଙ୍କର ଭିତରେ ରହିବ ନାହିଁ ।

୩. ନାରୀ ପୁରୁଷ ସମସ୍ତଙ୍କର ସବୁ ସ୍ତରରେ ସମାନ୍ ଅଧିକାର ରହିବ ।

୪. ଆମେ ଏପରି ଏକ ସମାଜ ନିର୍ମାଣ କରିବାରୁ ଚାହିଁବା ଯେଉଁଠି ଜାତି, ଧର୍ମ, ରାଷ୍ଟ୍ର ଓ ଇଶ୍ୱରଙ୍କୁ ନେଇ ମଣିଷ ମଣିଷ ଭିତରେ ଭେଦଭାବ ରହିବ ନାହିଁ ।

୫. ମାଲିକ ଓ ଶ୍ରମିକ ମଧ୍ୟରେ ସାମାଜିକ ଭେଦଭାବ ରହିବ ନାହିଁ । ସମସ୍ତେ ସମାନତାର ଅବକାଶ ପାଇବେ ।

୬. କେହି କାହାର ଦାସ ନୁହେଁ । ପ୍ରତ୍ୟେକ ବ୍ୟକ୍ତିର ସ୍ୱାଧୀନତା ଓ ଆତ୍ମମର୍ଯ୍ୟାଦା ରହିବା ଆବଶ୍ୟକ ।

ଏହି ଲକ୍ଷ୍ୟ ସବୁକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ସେ ବିଭିନ୍ନ ସଭା ଓ କାର୍ଯ୍ୟକ୍ରମ ହାତକୁ ନେଲେ । ୧୯୧୭ରେ ସେ ତାଙ୍କର ଜାତିଗତ ସାଙ୍ଗିଆ 'ନାଇକର' ନିଜ ନାମରୁ କାଟି ଦେଲେ । ସେ ନିଜକୁ ରାମସାମୀ ନାଇକର ପରିବର୍ତ୍ତେ କେବଳ ରାମସାମୀ ଭାବେ ପରିଚିତ କରାଇଲେ ।

## ରେଳ କର୍ମଚାରୀଙ୍କ ଆନ୍ଦୋଳନ

୧୯୨୮ରେ ଦକ୍ଷିଣ ଭାରତୀୟ ରେଳ କର୍ମଚାରୀମାନେ ଏକ ଆନ୍ଦୋଳନ ଆରମ୍ଭ କଲେ । ନାଗପର୍ଛିନାମ ଓ ପୋଦାନୁରଠାରେ ରହିଥିବା ରେଳ କର୍ମଶାଳାକୁ ବ୍ରିଟିଶ ସରକାର ବନ୍ଦ କରିଦେଲେ ଓ ରେଳ କର୍ମଚାରୀ ସଂଖ୍ୟାକୁ ଅନେକ କମାଇ ଦେଲେ । ଏହି କାରଣରୁ ସହସ୍ରାଧିକ କର୍ମଚାରୀ ସେମାନଙ୍କର ଜୀବିକା ହରାଇବାର

ପରିସ୍ଥିତି ସୃଷ୍ଟି ହେଲା । ସେମାନଙ୍କର କର୍ମଚାରୀ ସଂଘ ବା ଟ୍ରେଡ ୟୁନିୟନ ସେମାନଙ୍କର ଆନ୍ଦୋଳନ ଆରମ୍ଭ କଲେ । ଏହି ଆନ୍ଦୋଳନକୁ କେଉଁମାନେ ଆରମ୍ଭ କରୁଛନ୍ତି ରାମସାମୀ ତାହା ବୁଝିବା ପର୍ଯ୍ୟନ୍ତ ଆନ୍ଦୋଳନ ଆରମ୍ଭ ନ କରିବାକୁ ନିବେଦନ କଲେ । ନାଗପଟ୍ଟିନମର ଅଧିକାଂଶ କର୍ମଚାରୀ ଆତ୍ମ -ମର୍ଯ୍ୟାଦା ଆନ୍ଦୋଳନର ସଦସ୍ୟ ରହିଥିଲେ । ତେବେ ସେମାନେ ଆନ୍ଦୋଳନ ଜାରି ରଖିବାକୁ ନିଷ୍ପତ୍ତି କଲେ । ୧୯୨୮ ଜୁଲାଇ ୧୯ଦନ ଆନ୍ଦୋଳନ ଆରମ୍ଭ ହେଲା ଓ ରାମସାମୀ ଏହାକୁ ସମର୍ଥନ କଲେ । ସରକାରୀ ନିର୍ଦ୍ଦେଶନାମାକୁ ଅବମାନନା କରି ଆନ୍ଦୋଳନ ସପକ୍ଷରେ ସେ ଭାଷଣ ଦେଲେ । ସେ ଏହି ଆନ୍ଦୋଳନ ଉଦ୍ଦେଶ୍ୟରେ ଆର୍ଥିକ ସାହାଯ୍ୟ ଦେବାକୁ ନିବେଦନ କଲେ, ଫଳରେ ଏହା ଅବ୍ୟାହତ ରହିବ । ପୋଦାନୁର ଠାରେ ହୋଇଥିବା ଆନ୍ଦୋଳନକୁ ସମର୍ଥନ କଲେ ଓ ଏହାର ଯଥାର୍ଥତା ଲୋକମାନଙ୍କୁ ବୁଝାଇଲେ । ରାମସାମୀ ଗିରଫ ହୋଇ ଏକ ମାସ ପର୍ଯ୍ୟନ୍ତ ଜେଲରେ ରହିଲେ । ଏହାପରେ ସରକାର ରାମସାମୀଙ୍କ ନାମରେ ଆରମ୍ଭ ହୋଇଥିବା କେସ୍‌କୁ ପ୍ରତ୍ୟାହର କରିନେଲେ ଓ ତାଙ୍କୁ ଜେଲରୁ ମୁକ୍ତ କରିଦେଲେ ।

## ଆତ୍ମସମ୍ମାନ ସମ୍ମିଳନୀ

୧୯୨୮ରୁ ରାମସାମୀ ଆତ୍ମ-ସମ୍ମାନ ପାଇଁ ପ୍ରଚାର କରୁଥିବାରୁ ଏହାର ଶାଖା ବିଭିନ୍ନ ସ୍ଥାନରେ ପ୍ରତିଷ୍ଠା ହୋଇଥିଲା । ସମାଜରେ ସଂସ୍କାର ଆଣିବା ପାଇଁ ବିବାହ, ମୃତ୍ୟୁ, ଗୃହପ୍ରବେଶ ଇତ୍ୟାଦି କାର୍ଯ୍ୟକ୍ରମ ବିନା ବ୍ରାହ୍ମଣରେ କରିବାକୁ ଲୋକମାନଙ୍କୁ ସଚେତନ କଲେ । ଯେଉଁମାନେ ବିନା ବ୍ରାହ୍ମଣରେ ଏସବୁ ସାମାଜିକ କାର୍ଯ୍ୟ କଲେ ସେମାନଙ୍କର ନାମ କୁଦି ଅରସୁ ସମ୍ବାଦପତ୍ରରେ ସେ ପ୍ରକାଶ କଲେ । ସେ 'Revolt' (ବିପ୍ଳବ) ନାମରେ ଏକ ଇଂରାଜୀ ସମ୍ବାଦପତ୍ର ଆରମ୍ଭ କଲେ । ଆତ୍ମମର୍ଯ୍ୟାଦା ଆନ୍ଦୋଳନ ବିଷୟରେ ତାମିଲ ଜାଣିନଥିବା ଲୋକମାନଙ୍କୁ ଅବଗତ କରାଇବା ପାଇଁ ସେ ଇଂରାଜୀ ସମ୍ବାଦପତ୍ର ପ୍ରକାଶ କଲେ ।

୧୯୨୯ ଫେବୃୟାରୀ ୧୭,୧୮ ଦୁଇଦିନ ଧରି ସେ ପ୍ରଥମ ଆତ୍ମମର୍ଯ୍ୟାଦା ସମ୍ମିଳନୀ ଆୟୋଜନ କରିଥିଲେ । ଡବ୍ଲୁ. ବି. ସୁନ୍ଦର ପାଣ୍ଡିଆନ

ଏହି ସମ୍ମିଳନୀରେ ସଭାପତିତ୍ୱ କରିଥିଲେ । ପି.ଟି. ରାଜନ ଜଷ୍ଟିସ ପାର୍ଟିର ପତାକା ଉତ୍ତୋଳନ କରି ଭାଷଣ ଦେଇଥିଲେ ।

ଏହି ସମ୍ମିଳନୀରେ ୩୪ଟି ପ୍ରସ୍ତାବ ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା । ସେଥିରୁ କେତୋଟି ହେଲା- (୧) ନିମ୍ନଶ୍ରେଣୀର ଲୋକଙ୍କ ପାଇଁ ସଂରକ୍ଷଣ (୨) ଲୋକମାନଙ୍କ ଭିତରେ କୌଣସି ଭେଦଭାବ ରହିବ ନାହିଁ । (୩) ଲୋକମାନେ ବେଦ, ଶାସ୍ତ୍ର, ପୁରାଣ ଓ ଧର୍ମରେ ଆସ୍ଥା ସ୍ଥାପନ କରିବେ ନାହିଁ । (୪) ଚତୁର୍ବର୍ଣ୍ଣ ବ୍ୟବସ୍ଥାକୁ ପରିହାର କରିବାକୁ ହେବ । (୫) ସର୍ବ ସାଧାରଣ ସ୍ଥାନମାନଙ୍କରେ ସବୁ ଶ୍ରେଣୀର / ଜାତିର ଲୋକମାନେ ସମବେତ ହୋଇପାରିବେ । ସରକାର ଏଥି ପାଇଁ ନିୟମ କରିବା ଆବଶ୍ୟକ ।

୭. ଝିଅମାନେ ୧୬ ବର୍ଷ ପରେ ବିବାହ କରିବାକୁ ଯୋଗ୍ୟ ହେବେ ।

୮. ବିଧବା ମହିଳାମାନେ ବିବାହ କରିପାରିବେ ଓ ବିବାହିତ ମହିଳାମାନେ ସ୍ୱାମୀଙ୍କଠାରୁ ପୃଥକ୍ ହୋଇପାରିବେ ।

୯. ମାତୃଭାଷାରେ ଶିକ୍ଷା ପାଇଁ ପ୍ରାଧାନ୍ୟ ଦିଆଯିବ ।

୧୦. ନିମ୍ନ ପ୍ରାଥମିକ ଓ ପ୍ରାଥମିକ ବିଦ୍ୟାଳୟ ମାନଙ୍କଠାରେ କେବଳ ମହିଳାମାନେ ଶିକ୍ଷକତା କରିପାରିବେ ।

୧୧. ଶ୍ରମଜୀବୀ ବ୍ୟକ୍ତିମାନଙ୍କର ଅଧିକାରକୁ ସୁରକ୍ଷା ଦିଆଯିବ ।

ଦ୍ୱିତୀୟ ଆତ୍ମମର୍ଯ୍ୟାଦା ସମ୍ମିଳନୀ ୧୯୩୦ରେ ଏରୋଡ ଠାରେ ଅନୁଷ୍ଠିତ ହୋଇଥିଲା ଓ ତୃତୀୟ ସମ୍ମିଳନୀ ୧୯୩୧ରେ ବିରୁଦୁନଗରଠାରେ ଆୟୋଜନ କରାଯାଇଥିଲା । ଏହି ସମ୍ମିଳନୀ ଆଧାରରେ ଆତ୍ମ ମର୍ଯ୍ୟାଦା ମହିଳା ସମ୍ମିଳନୀ ଓ ଆତ୍ମମର୍ଯ୍ୟାଦା ଯୁବ ସମ୍ମିଳନୀର ମଧ୍ୟ ଆୟୋଜନ ହୋଇଥିଲା । ଏହା ଫଳରେ ସହସ୍ରାଧିକ ମହିଳା ଉପରୋକ୍ତ ବିଷୟ ଉପରେ ସଚେତନ ହୋଇପାରିଥିଲେ । ଫଳରେ ବହୁ ଯୁବକ ଏଥିରେ ଅନୁପ୍ରାଣିତ ହୋଇ ଏହି ସଂଗଠନରେ ଯୋଗଦାନ କରିଥିଲେ ।

# ୧୦. ବିଦେଶ ଯାତ୍ରା ଓ ତାହାର ଉପକାର

୧୯୨୯ ଡିସେମ୍ବର ୧୫ ଦିନ ନାଗପଟିନମଠାରୁ ସମୁଦ୍ର ପଥରେ ରାମସାମୀ ମାଲୟ (ଏବେ ମାଲେସିଆ) ରାଜିଲା ନାମକ ଜାହାଜରେ ଯାତ୍ରା କଲେ । ପାଞ୍ଚ ଦିନର ଯାତ୍ରା ପରେ ଜାହାଜଟି ୨୦ ଡିସେମ୍ବର ଦିନ ପେନାଙ୍ଗ ବନ୍ଦରରେ ପହଞ୍ଚିଲା । ରାମସାମୀ ଓ ପତ୍ନୀ ନାଗମଲ ସେଠାରେ ଓହ୍ଲାଇଲେ । ସିପ୍ ଟ୍ରାଭେଲରସ ଓ୍ୱେଲଫେୟାର ଆସୋସିଏସନର ସଭାପତି ଏ. ସିଙ୍ଗରାମ ପିଲାଇ, ସଂପାଦକ ଏମ. ଦୁରାଇ ରକ ଓ ଇନସ୍‌ପେକ୍ଟର ଏମ.ଏସ.ଏସ ମୁଦାଲିୟର ପୁଷ୍ପ ଗୁଚ୍ଛ ଦେଇ ରାମସାମୀ ଓ ତାଙ୍କ ପତ୍ନୀଙ୍କୁ ସ୍ୱାଗତ କରିଥିଲେ । ସେମାନେ ରାମସାମୀଙ୍କ ସହ କେତେକ ବ୍ୟକ୍ତିଗତ ବିଷୟରେ ଆଲୋଚନା କରିବାକୁ ଇଚ୍ଛାକରି ତାଙ୍କୁ ଏକ ରୁମ୍‌କୁ ନେଲେ । ତାଙ୍କୁ ସେମାନେ କହିଲେ ଯେ ପେନାଙ୍ଗରେ ତାଙ୍କ ବିଷୟରେ କେତେକ ଭୁଲ ଧାରଣା ଲୋକମାନେ ପାଇଛନ୍ତି । କିନ୍ତୁ ବହୁ ଲୋକ ତାଙ୍କୁ ସାକ୍ଷାତ କରିବାକୁ ଆଗ୍ରହୀ । ସେ ଈଶ୍ୱର ଧର୍ମ ବିଷୟରେ କିଛି ମନ୍ତବ୍ୟ ନଦେବାକୁ ତାଙ୍କୁ ଅନୁରୋଧ କଲେ । ରାମସାମୀ ଏହା ଶୁଣି କହିଲେ, "ଈଶ୍ୱର ଧର୍ମ ସଂପର୍କରେ କିଛି କହିବା ତାଙ୍କର ଉଦ୍ଦେଶ୍ୟ ନୁହେଁ, ସେ କେବଳ କେତେକ ସଂସ୍କାରର କଥା କହୁଛନ୍ତି । ତାଙ୍କ ବିରୋଧୀ ଲୋକମାନେ ତାଙ୍କର ପ୍ରଶ୍ନର ଉତ୍ତର ଦେବାରୁ ବିଫଳ ହେବାରୁ ସେମାନେ ଲୋକମାନଙ୍କୁ ବିଭ୍ରାନ୍ତ କରୁଛନ୍ତି । ବରଂ ସେମାନେ ଧର୍ମ, ଈଶ୍ୱର ଓ ପୁରାଣ ବିଷୟରେ ଅଜ୍ଞ ଲୋକମାନଙ୍କୁ ବିଭିନ୍ନ କଥା କହୁଛନ୍ତି । ସେମାନଙ୍କ କଥାଗୁଡିକ ମିଥ୍ୟା ଓ ନିରାଧାର ହୋଇଥିବାରୁ ସେ ବାଧ୍ୟ ହୋଇ ସତ୍ୟ କ'ଣ ଏହା ଲୋକମାନଙ୍କ ଦୃଷ୍ଟିକୁ ଆଣୁଛନ୍ତି । ଯଦି ଧର୍ମ, ପୁରାଣରେ ସତ୍ୟର ବର୍ଣ୍ଣନା ରହିଥାନ୍ତା ତେବେ ତାଙ୍କ ଭାଷଣରେ ଏହା କ'ଣ ମିଥ୍ୟା ହୋଇଯାନ୍ତା ? ଏଣୁ ସେମାନେ ଏଥିରେ ବ୍ୟସ୍ତ ହେବା ଦରକାର ନାହିଁ । ଏହ କହି ସେ ସେମାନଙ୍କଠାରୁ ବିଦାୟ ନେଲେ ।

ତାଙ୍କୁ ଅପେକ୍ଷାରତ ଲୋକମାନେ ଅତି ଶ୍ରଦ୍ଧାର ସହ ତାଙ୍କୁ ସ୍ୱାଗତ ଜଣାଇଲେ । ତାଙ୍କୁ ସେମାନେ ସେଠାରୁ ପୁନାଙ୍ଗସ୍ଥିତ ସଂଯୁକ୍ତ ଇଣ୍ଡିଆ କାଉନ୍‌ସିଲ୍‌କୁ

ନେଲେ । ସେଠାରେ କାଉନ୍‌ସିଲର ସଭାପତି ଅବଦୁଲ କାଦେର ତାଙ୍କୁ ସ୍ୱାଗତ କଲେ । ଏକ ବଙ୍ଗଲୋରେ ତାଙ୍କର ରହିବା ପାଇଁ ଜନାବ ମହମଦ ରବୁତେର ଆୟୋଜନ କରିଥିଲେ । ଭୋଜନ ପରେ ରାମସାମୀ ସେଠାରେ ସମବେତ ଲୋକମାନଙ୍କୁ କହିଲେ, "ମନ୍ଦିର ନଷ୍ଟ କରିବାକୁ ଆମେ ଏଠାକୁ ଆସି ନାହୁଁ ।" ଆପଣମାନଙ୍କର ଜ୍ଞାନ, ଦକ୍ଷତା ଓ ଉତ୍ସାହ ଦେଖିବାକୁ ଏଠାକୁ ଆସିଛୁ ।"

ଅପରାହ୍ନରେ ଇଣ୍ଡିଆ କାଉନ୍‌ସିଲକୁ ସେମାନଙ୍କୁ ନିଆଗଲା ଓ ସେଠାରେ ଭବ୍ୟ ସମ୍ବର୍ଦ୍ଧନା ଦିଆଗଲା । ସେଥିପାଇଁ ରାମସ୍ୱାମୀ ନିଜର କୃତଜ୍ଞତା ଜଣାଇ ଯୁବକମାନଙ୍କୁ ପ୍ରଶଂସା କରିଥିଲେ । ସେ କହିଲେ, "ଆତ୍ମ ମର୍ଯ୍ୟାଦା ଆନ୍ଦୋଳନର ପ୍ରସାର ପାଇଁ ସେ ଯୁବକମାନଙ୍କ ଉପରେ ନିର୍ଭର କରୁଛନ୍ତି ।" ଆତ୍ମ ମର୍ଯ୍ୟାଦା ଆନ୍ଦୋଳନ ପଶ୍ଚାତରେ ଥିବା ଆଦର୍ଶ ବିଷୟରେ ସେ ସେଠାରେ କହିଥିଲେ । ତାଙ୍କୁ କଲପିରାଇ ନିଆଯାଇଥିଲା ଓ ସେଠାରେ ସେ ଏକ ଭାଷଣ ଦେଇଥିଲେ । କଲପିରାଇରୁ ସେ ଥାଇପିଙ୍ଗ ଯାଇଥିଲେ ଯାହା ସେଠାରୁ ଛ' ମାଇଲ ହେବ । ସେଠାରେ ମଧ୍ୟ ସେ ଏକ ଭାଷଣ ଦେଇଥିଲେ । ସେଠାରୁ ସେ କୋଲାଙ୍ଗଜାର ଯାଇ ସେଠାରେ ରାତି ଯାପନ କଲେ । ଏହାପରେ ସେ ଟ୍ରେନରେ ଏପୋ ଗଲେ ।

ଏପୋରେ କାନାଲିରୋଡ ସ୍ଥିତ ସିଲୋନ ଆସୋସିଏସନ ହଲରେ ଏକ ସମ୍ମିଳନୀର ଆୟୋଜନ ହୋଇଥିଲା । ଏହା ୨୧.୧୨.୧୯୨୯ ଦିନ ଆରମ୍ଭ ହେଲା । ଯେଉଁମାନେ ସେଠାରେ ସମ୍ମିଳନୀରେ ଯୋଗ ଦେଇଥିଲେ ସେମାନଙ୍କୁ ଟଙ୍କା ଦେଇ ଟିକେଟ କରିବାକୁ ପଡିଥିଲା । ଏହା ସତ୍ତ୍ୱେ ହଲଟି ଲୋକାରଣ୍ୟ ଥିଲା । ସ୍ୱାମୀ ଅର୍ପୁତାନନ୍ଦ ପ୍ରଥମେ ସ୍ୱାଗତ ଭାଷଣଟି ପଢିଥିଲେ । ଏହାପରେ ରାମସାମୀ ସମ୍ମିଳନୀଟିକୁ ଉଦ୍‌ଘାଟନ କରି ଅଢ଼େଇ ଘଣ୍ଟା ଧରି ଭାଷଣ ଦେଇଥିଲେ । ଏହାପରେ ମହମ୍ମଦ ୟୁସୁଫ ରାମସାମୀଙ୍କର ଏକ ବଡ ଫଟୋ ଅନାବରଣ କରିଥିଲେ ।

ଡିସେମ୍ବର ୨୩, ୧୯୨୯ ଦିନ ମଲକ ପେରୁମଲ ନାଦର ଲୋକମାନଙ୍କ ତରଫରୁ ସ୍ୱାଗତ ଭାଷଣ ଦେଇଥିଲେ । ରାମସାମୀ ଘଣ୍ଟାଟିଏ ଧରି ଭାଷଣ

ଦେଇଥିଲେ । ସେଠାରୁ ପାଞ୍ଚ ମାଇଲ ଦୂରରେ ଏକ ଉଷ୍ଣ ଝରଣା ରହିଛି । ରାମସାମୀ ଯାଇ ସେଠାରେ ସ୍ନାନ କଲେ । ଏହାପରେ ସେ କୁଲାଲାଂପୁର ଆସିଲେ ଓ ସେଠାରୁ ଟ୍ରେନ ଯୋଗେ ସିଙ୍ଗାପୁର ଗଲେ । ସେ ସିଙ୍ଗାପୁର ଯିବା ରାସ୍ତାରେ ବିଭିନ୍ନ ଷ୍ଟେସନରେ ଲୋକମାନେ ତାଙ୍କୁ ସାକ୍ଷାତକରି ତାଙ୍କୁ କିଛି ଫଳ ଉପହାର ଦେଉଥିଲେ । ୨୫.୧୨.୧୯୨୯ଦିନ ସକାଳେ ସେ ସିଙ୍ଗାପୁରରେ ପହଞ୍ଚିଲେ । ସିଙ୍ଗାପୁରର ଷ୍ଟେସନରେ ଭାରତୀୟ ମାନଙ୍କ ବ୍ୟତୀତ ଇଉରୋପୀୟ, ଜାପାନୀ, ଚୀନା ଓ ମାଲୟୀ ଲୋକମାନେ ବହୁ ସଂଖ୍ୟାରେ ତାଙ୍କୁ ସ୍ୱାଗତ ଜଣାଇଥିଲେ । ତାଙ୍କୁ ଏକ ସୁସଜ୍ଜିତ କାରରେ ନିଆଗଲା ।  ତାଙ୍କ ପଛରେ ୧୨୦ଟି ମଟର ସାଇକେଲରେ ଲୋକମାନେ ଆସୁଥିଲେ । ରାସ୍ତାରେ ଆସିଲା ବେଳେ ବିଭିନ୍ନ ସ୍ଥାନରେ ଲୋକମାନେ ତାଙ୍କ ଗାଡିକୁ ଅଟକାଇ ତାଙ୍କୁ ଫୁଲ ଓ ଫଳ ଉପହାର ଦେଉଥିଲେ । ସିଂଗାପୁରର ପ୍ରସିଦ୍ଧ ଡ୍ରାମା ହଲଠାରେ ତାଙ୍କୁ ସ୍ୱାଗତ କରାଯାଇଥିଲା । ସେଠାରେ ତାଙ୍କୁ ଗୋଟିଏ ବାଡି ଓ ଘଣ୍ଟା ଉପହାର ପ୍ରଦାନ କରାଗଲା । ସନ୍ଧ୍ୟା ୫ଟାରେ ଆଲେକ୍‌ଜାଣ୍ଡର ଥେଟର ହଲଠାରେ ସାତ ହଜାର ଲୋକ ସମବେତ ହୋଇଥିଲେ । ତାଙ୍କ ସହ ଯାଇଥିବା ରାମନାଥନ ପ୍ରଥମେ ଏକ ଘଣ୍ଟାର ଭାଷଣ ଦେଇଥିଲେ । ରାମସାମୀ ଦୁଇଘଣ୍ଟାର ଭାଷଣ ଦେଇଥିଲେ । ମୁନେତ୍ରମ ସମ୍ବାଦପତ୍ରର ସଂପାଦକ ସରଂଗପାନି ଶେଷରେ ଧନ୍ୟବାଦ ଅର୍ପଣ କରିଥିଲେ । ୧୯୨୮ ଡିସେମ୍ବର ୨୬ ତାରିଖ ଦିନ ସିଙ୍ଗାପୁର ଟାଉନ ହଲଠାରେ ଆୟୋଜିତ ସଭାରେ ରାମସାମୀ ନିଶାନିବାରଣ ଓ ଟେଙ୍ଗଲପଟୁ ସମ୍ମିଳନୀ ବିଷୟରେ ଦୁଇଘଣ୍ଟାର ଭାଷଣ ଦେଇଥିଲେ । ପରଦିନ ସକାଳ ଆଠଟାରେ ସିଙ୍ଗାପୁର ନିକଟସ୍ଥ ଜୋଗୁରଠାରେ ଆତ୍ମମର୍ଯ୍ୟାଦା ଆନ୍ଦୋଳନ ସଂପର୍କରେ ପ୍ରାୟ ଦୁଇ ଘଣ୍ଟାର ଭାଷଣ ପ୍ରଦାନ କରିଥିଲେ । ସିଙ୍ଗାପୁରଠାରୁ ୧୦ ମାଇଲ ଦୂରରେ କିଲୋଟରଠାରେ ଜାହାଜ ନିର୍ମାଣ କାରଖାନା ରହିଛି । ସେ ସ୍ଥାନକୁ ଯାଇ ସେ ତାହା ପରିଦର୍ଶନ କଲେ । ସେଠାରୁ ଛଅ ମାଇଲଦୂରରେ ପାଇଲଟ ପ୍ରଶିକ୍ଷଣ କେନ୍ଦ୍ର ରହିଛି । ଏସବୁ ସ୍ଥାନ ଦେଖିକରି ସେ ସିଙ୍ଗାପୁର ଫେରିଲେ । ସିଙ୍ଗାପୁର ଟାଉନ ହଲଠାରେ ଡିସେମ୍ବର ୨୭ ତାରିଖ ଦିନ

ହୋଇଥିବା ସଭାରେ ରାମସାମୀ ଆତ୍ମ-ମର୍ଯ୍ୟାଦା ଉପରେ ଭାଷଣ ଦେଲେ ଓ ବିଭିନ୍ନ ପ୍ରଶ୍ନମାନଙ୍କର ଉତ୍ତର ଦେଲେ । ପରଦିନ ଅର୍ଥାତ୍ ୧୯୨୯ ଡିସେମ୍ବର ୨୮ ଦିନ ସେ ପଟୁ ବହରକୁ ଗଲେ । ସେ ଦିନ ସନ୍ଧ୍ୟାରେ ହୋଇଥିବା ସଭାରେ ସେ ମନ୍ଦିର ନିର୍ମାଣ କାର୍ଯ୍ୟକୁ ସମାଲୋଚନା କଲେ । ୨୯ ତାରିଖ ଦିନ ମୁବାର ଗଲେ । ସେ ସେଠାରେ ଏକ ସଭାଗୃହରେ ଆତ୍ମ ମର୍ଯ୍ୟାଦା ସଂପର୍କରେ କହିଲେ । ୩୦ ତାରିଖରେ ସେ ମୁବାରରୁ ମଲକା ଗଲେ । ଅପରାହ୍ନରେ ସେଠାରେ ଗୋଟିଏ "ଆତ୍ମ-ସମ୍ମାନ ବିବାହ" (Self-respect marriage) କାର୍ଯ୍ୟକ୍ରମରେ ଯୋଗ ଦେଲେ । ବିବାହ ସ୍ଥାନରେ ସେ ଏକ ସଂକ୍ଷିପ୍ତ ଭାଷଣ ଦେଲେ । ଏହାପରେ ଫ୍ରାନ୍‌ସିସ ସ୍କୁଲ ହଲକୁ ଗଲେ ଓ ସେଠାରେ ସେ ଦୁଇ ଘଣ୍ଟାର ଭାଷଣ ପ୍ରଦାନ କରିଥିଲେ । ସେଠାରୁ ସେ ଥାଂପିନ ନାମକ ଏକ ସ୍ଥାନକୁ ଗଲେ, ସେଠାରେ ଅଧିକାଂଶ ମହିଳା ଯୋଗ ଦେଇଥିଲେ । ସେ ସେଠାରେ 'ନିରୀଶ୍ୱରବାଦ' କ'ଣ ଏହା ବ୍ୟାଖ୍ୟା କରିଥିଲେ । ମହିଳା ବିକାଶ ଉପରେ ମଧ୍ୟ ସେ ସେଠାରେ ଭାଷଣ ଦେଇଥିଲେ । ୧.୧.୧୯୩୦ରେ ସେ ତାଂଫିନଠାରୁ ସିରଂପନ ଗଲେ । ସେଠାରେ ଅପରାହ୍ନ ସଭାରେ ସେ 'ଆତ୍ମ ମର୍ଯ୍ୟାଦା'ସଂପର୍କରେ ଦୁଇ ଘଣ୍ଟା ଧରି ନିଜର ବ୍ୟକ୍ତବ୍ୟ ରଖିଥିଲେ । ତା ପରଦିନ ସେ କୁଲାଲଂପୁର ଗଲେ । ସେ ଦିନ ସନ୍ଧ୍ୟାରେ ସେ ହିନ୍ଦୁ ଧର୍ମ ଓ ଆତ୍ମ ମର୍ଯ୍ୟାଦା ଉପରେ ତାଙ୍କର ଭାଷଣ ଦେଇଥିଲେ । ଏହାପରେ ଇଣ୍ଡିଆନ କାଉନ୍‌ସିଲ ଦ୍ୱାରା ଦିଆଯାଇଥିବା ନିମନ୍ତ୍ରଣ ସେ ଗ୍ରହଣ କଲେ । ସେଠାରେ ସେ ଆତ୍ମ- ମର୍ଯ୍ୟାଦା ଆନ୍ଦୋଳନ ଓ ଭାରତୀୟ ସମାଜରେ ପ୍ରଚଳିତ ସାମାଜିକ ଭେଦଭାବ ବିଷୟରେ କହିଥିଲେ । ସେଂଥୁଲରେ ଯୁବ କାଉନ୍‌ସିଲ ସଭାରେ ସେ ଅଢ଼େଇ ଘଣ୍ଟାରେ ଏକ ଭାଷଣ ଦେଇଥିଲେ । ଯୁବକମାନେ କିପରି ନିଜକୁ ପ୍ରସ୍ତୁତ କରିବେ ତାହା ବୁଝାଇଥିଲେ । ୩.୧.୧୯୩୦ଦିନ ଆଠଟା ସମୟରେ କୁଲାଲଂପପୁର ମେଡିକାଲ ଆସୋସିଏସନର କାର୍ଯ୍ୟକ୍ରମକୁ ମିନି ରୋଡରେ ଉଦ୍‌ଘାଟନ କରିଥିଲେ । ସେଠାରେ ଅନ୍ୟ ଏକ ସାଧାରଣ ସଭାରେ ଆଧୁନିକ ଚିକିତ୍ସା ବିଜ୍ଞାନର ବିକାଶ ଉପରେ ସେ କହିଥିଲେ । କୁଲାଲଂପପୁରଠାରୁ ୧୬

ମାଇଲ ଦୂରରେ ଥିବା ଏକ ଉଷ୍ମ ଝରଣାକୁ ଯାଇ ସେଠାରେ ସ୍ନାନ କଲେ । ସେଠାରେ ଆୟୋଜିତ ଏକ ସଭାରେ ଅନ୍ୟ ଦେଶମାନ ବୈଜ୍ଞାନିକ ଦୃଷ୍ଟିକୋଣ ଉପରେ ପ୍ରାଧାନ୍ୟ ଦେଇ ବିକାଶଲାଭ କରୁଥିବା ବେଳେ ଆମେ ଭାରତୀୟ ନାନା ଅପବିଶ୍ୱାସ ଭିତରେ ରହିଛୁ । ଆମର ଅବୈଜ୍ଞାନିକ ମନୋଭାବକୁ ସେ ସମାଲୋଚନା କରିଥିଲେ । ଏହାପରେ ବିବେକାନନ୍ଦ ଆଶ୍ରମ ତରଫରୁ ତାଙ୍କୁ କରାଯାଇଥିବା ନିମନ୍ତ୍ରଣକୁ ସେ ଗ୍ରହଣ କଲେ । ସେଠାରେ ପ୍ରାୟ ଦୁଇ ହଜାର ବ୍ୟକ୍ତିଙ୍କର ଏକ ସଂଗୋଷ୍ଠୀ ଥିଲା, ଯେଉଁଥିରେ ଅଧିକାଂଶ ମହିଳା ଯୋଗ ଦେଇଥିଲେ (ପ୍ରାୟ ୧୫୦୦ ମହିଳା ସେଠାରେ ଥିଲେ) ସେହି ସ୍ଥାନରେ ସେ ଭାଷଣ ଦେଇଥିଲେ । ବ୍ରାହ୍ମଣମାନେ ବିବେକାନନ୍ଦ ନାମରେ କିପରି ପବ୍ଲିକ ଅର୍ଥ ଆତ୍ମସାତ କରୁଛନ୍ତି ତାହା କହିଥିଲେ । ଭାରତୀୟ ବର୍ଣ୍ଣ ବ୍ୟବସ୍ଥାକୁ ସ୍ୱାମୀ ବିବେକାନନ୍ଦ କିପରି ସମାଲୋଚନା କରିଛନ୍ତି ତାହା ବୁଝାଇଥିଲେ ।

୪.୧.୧୯୩୦ ରେ ସେ କୋଲାକୁପୁ ଗଲେ । ସେଠାରେ ଲୋକମାନଙ୍କୁ ସେ ଆତ୍ମସମ୍ମାନ ବିଷୟରେ ବୁଝାଇଲେ । ଅପରାହ୍ନରେ ସେ ଥାଂଜମଲମ ସ୍ଥାନକୁ ଯାଇ ହିନ୍ଦୁଧର୍ମ ବିଷୟରେ ଦୁଇଘଣ୍ଟାର ଭାଷଣ ଦେଇଥିଲେ । ଥାଂଜମଲମରୁ ସେ ଗଙ୍ଗାଇକୁରୁଫ ଗଲେ । ସେଠାରେ ସେ ହିନ୍ଦୁ ଦେବାଦେବୀ ମାନଙ୍କ ଉପରେ ଭାଷଣ ଦେଇଥିଲେ । ୬.୧ରେ ଇଣ୍ଡିଆନ କାଉନସିଲ ତେଲୁକାଂସନଠାରେ ସେ ଦୁଇ ଘଣ୍ଟାର ଏକ ଭାଷଣ ଦେଇଥିଲେ । ୪.୧.୧୯୩୦ରେ ସେ ଅମ୍ବର ଗଲେ । ସେଠାରେ ଏକ ସଂକ୍ଷିପ୍ତ ଭାଷଣ ଦେଇ ସେଠାରୁ ଟ୍ରେନ ଯୋଗେ ପୁକଟ୍ଟାର୍ଟଜନ ଯାଇ ସେଠାରେ ପହଞ୍ଚିଲେ । ସିଙ୍ଗାପୁରରେ ତାଙ୍କୁ ସହସ୍ରାଧିକ ଲୋକ ସମ୍ବର୍ଦ୍ଧନା ଜଣାଇଥିଲେ । ସେଠାରେ ସେ ଆତ୍ମମର୍ଯ୍ୟାଦା ସଂପର୍କରେ ଲୋକମାନଙ୍କୁ ବୁଝାଇଥିଲେ । ୮.୧.୩୦ରେ ସେ ପେନାଙ୍ଗ ଗଲେ । ସେଠାରେ ସେ ଇଣ୍ଡିଆନ କାଉନସିଲ ସଭ୍ୟମାନଙ୍କୁ ଭାଷଣ ଦେଇଥିଲେ । ପରଦିନ ଅର୍ଥାତ ୯.୧.୧୯୩୦ ପେନାଙ୍କ ଦ୍ୱୀପ ଭ୍ରମଣ କଲେ । ଏହାପରେ ସେ ସିଙ୍ଗାପଟନି ଗଲେ । ସେଠାରେ ସେ ଧର୍ମ ଓ ଈଶ୍ୱରଙ୍କ ନାମରେ କିପରି ଲୋକମାନଙ୍କୁ ଭ୍ରମିତ କରାଯାଉଛି ତାହା

ବୁଝାଇଥିଲେ । ସେଠାରେ ସେ ଧାର୍ମିକ ରକ୍ଷଣଶୀଳ ଲୋକମାନେ କିପରି ମିଥ୍ୟା ପ୍ରଚାର କରୁଛନ୍ତି ତାହା କହିଥିଲେ । ୧୦.୧.୧୯୩୦ ଦିନ ସେ ଥାଇପିଙ୍ଗ ଗଲେ । ଭାରତର ଜାତିବ୍ୟବସ୍ଥା ଓ ବ୍ରାହ୍ମଣମାନଙ୍କର ଆଧିପତ୍ୟ ବିଷୟରେ କହିଥିଲେ । ମାଲାଇ ଲୋକମାନଙ୍କ ଦ୍ୱାରା ଅଭିନୀତ ଏକ ନାଟକ ସେ ସେଠାରେ ଦେଖିଥିଲେ । ଜାନୁୟାରୀ ୧୧,୧୯୩୦ରେ ସେ ତାଙ୍କର ଭାରତ ପ୍ରତ୍ୟାବର୍ତ୍ତନ ଯାତ୍ରା ଆରମ୍ଭ କଲେ । ପେନାଙ୍ଗ ବନ୍ଦରଠାରେ ବହୁ ଲୋକଙ୍କ ସମାଗମ ହୋଇଥିଲା । ସେ ସେଠାରେ ଭାବପ୍ରବଣ ହୋଇ ଭାଷଣ ଦେଇ ଲୋକମାନଙ୍କଠାରୁ ଆବେଗଭରା ବିଦାୟ ନେଇଥିଲେ । ସେଠାରୁ ଜାହାଜ ଯୋଗେ ସେ ତାଙ୍କର ଭାରତ ପ୍ରତ୍ୟାବର୍ତ୍ତନ ଯାତ୍ରା ଆରମ୍ଭ କଲେ ।

ରାମସାମୀ ମାଲେସିଆ ଦାଢି ନରଖି ଯାଇଥିଲେ । ସେଠାରେ ବିଭିନ୍ନ ସ୍ଥାନ ଭ୍ରମଣ ଓ ଭାଷଣରେ ବ୍ୟସ୍ତ ରହି ସେ ଦାଢ଼ି କାଟିନଥିଲେ । ସେଠାରୁ ଫେରିବା ବେଳକୁ ତାଙ୍କର ଦାଢ଼ି ବେଶ୍ ଧଳା ଓ ବଢ଼ି ଯାଇଥିଲା । ସେହି ପରଠାରୁ ତାଙ୍କର ଦାଢ଼ି ବଢ଼ିଚାଲିଲା ।

## ଇଉରୋପ, ରୁଷ ଆଦି ଭ୍ରମଣ

୧୯୨୭ ମସିହା ପରଠାରୁ ଆତ୍ମ ମର୍ଯ୍ୟାଦା ଓ ସମାଜବାଦୀ ନୀତି ବିଷୟରେ ସେ କହିବାକୁ ଲାଗିଲେ । ଭାରତରେ ଏକ ସମାଜବାଦୀ ସରକାର ହେଉ ସେ ଚାହୁଁଥିଲେ । ରୁଷର ଅନେକ ପ୍ରଭାବ ତାଙ୍କ ଉପରେ ପଡିଥିଲା । ଫଳରେ ସେ ରୁଷ ଓ ଅନ୍ୟାନ୍ୟ ଇଉରୋପୀୟ ରାଷ୍ଟ୍ର ଦେଖିବାକୁ ଆଗ୍ରହ ପ୍ରକାଶ କରିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ, ୧୯୪୫ ରୁ ଭାରତରୁ ବା ଅନ୍ୟାନ୍ୟ ଦେଶରୁ ଲୋକମାନେ ରୁଷ ଦେଶକୁ ଭ୍ରମଣ କରିବା ସମ୍ଭବ ହେଲା । ତା'ପୂର୍ବରୁ ସେଠାକୁ ଯିବାରେ କେତେକ ଅସୁବିଧା ଥିଲା । ତେବେ ୧୯୨୦ରୁ ୧୯୩୦ ଭିତରେ ମୋତିଲାଲ ନେହରୁ, ଜବାହାରଲାଲ ନେହରୁ ଓ କବି ରବୀନ୍ଦ୍ରନାଥ ଟାଗୋରଙ୍କ ପରି ବ୍ୟକ୍ତିମାନେ ରୁଷ ଯାଇଥିଲେ ।

ମସାମୀ ରୁଷ ଯିବା ପାଇଁ ଆବଶ୍ୟକୀୟ ପାସପୋର୍ଟ ଓ ଭିସା ସଂଗ୍ରହ କଲେ । ସେ ଦୁଇ ଜଣ ବନ୍ଧୁ ରାମନାଥନ ଓ ଇରୋଡେ ରମୁଙ୍କ ସହ ୧୯୩୧ ଡିସେମ୍ବର ୧୩ରେ ଚେନ୍ନାଇକୁ ଫରାସୀ ଜାହାଜ 'ଆମ୍ବୋସୀ'ରେ ଯାତ୍ରା ଆରମ୍ଭ କଲେ । ସେ ଶ୍ରୀଲଙ୍କା, ଇଜିପ୍ଟ, ଗ୍ରୀସ୍, ତୁର୍କୀ, ରୁଷ, ଜର୍ମାନୀ, ଇଂଲଣ୍ଡ, ଇଟାଲି, ସ୍ପେନ, ଫ୍ରାନସ ଓ ପର୍ତ୍ତୁଗାଲ ଦେଶମାନଙ୍କୁ ମଧ୍ୟ ଯାଇଥିଲେ । କେବଳ ରୁଷରେ ସେ ୯୪ ଦିନ ଅତିବାହିତ କରିଥିଲେ ।

ରୁଷରେ ରାମସାମୀ ଓ ତାଙ୍କର ବନ୍ଧୁମାନଙ୍କୁ ସରକାରୀ ଅତିଥି ଭାବେ ଗ୍ରହଣ କରାଯାଇଥିଲା । ୯୪ ଦିନ ରହଣି ଭିତରେ ସେ ବିଭିନ୍ନ କଳକାରଖାନା, ଶିକ୍ଷାନୁଷ୍ଠାନ, କୃଷି ଫାର୍ମ ଓ ଗ୍ରାମମାନଙ୍କୁ ଯାଇ ପରିଦର୍ଶନ କରିଥିଲେ । ସେ କେତେକ ସ୍ଥାନରେ ରୁଷ ନାଟକ ପ୍ରଦର୍ଶିତ ହେବା ମଧ୍ୟ ଦେଖିଲେ ।

ରୁଷରେ ଜାତି, ଧର୍ମର ଭାବନାକୁ ନେଇ କୌଣସି ଭେଦଭାବ ନାହିଁ । ଭାରତ ପରି ସେଠାରେ କେହି ଛୋଟ ଜାତିର, ଅସ୍ପୃଶ୍ୟ ନାହାନ୍ତି । ଲୋକମାନେ କୌଣସି କଥାକୁ ଅନ୍ଧାନୁଭାବେ ବିଶ୍ୱାସ କରନ୍ତି ନାହିଁ । ଏହି ସବୁ ବିଷୟ ରାମସାମୀଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ସେ ସେଠାରୁ ଅନେକ ପ୍ରେରଣା ଲାଭ କରିଥିଲେ ।

କ୍ରେମଲିନ ପାଲେସରେ ୬.୫.୧୯୩୨ ଦିନ ମେ' ଦିବସ ଉପଲକ୍ଷେ କେତେକ ପରିଦର୍ଶକ ତାଙ୍କୁ ବିଭିନ୍ନ ପ୍ରଶ୍ନ ପଚାରିଥିଲେ ଓ ସେ ତାର ଉତ୍ତର ଦେଇଥିଲେ । ତାଙ୍କର କେତେକ ଉତ୍ତର ଥିଲା –

"ଭାରତରେ ଆତ୍ମ ମର୍ଯ୍ୟାଦାର ପରିବେଶ ନାହିଁ । ଭାରତରୁ ଗାନ୍ଧୀବାଦ ଗଲେ ସମାଜବାଦ ଆସିବ"।

ଭାରତକୁ ଫେରି ରାମସାମୀ କୁଦି ଅରସୁରେ ଲେଖିଥିଲେ- "ସମସ୍ତ ବ୍ୟକ୍ତିମାନଙ୍କ ଭିତରେ ସମାନତା ଜାତୀୟ କଂଗ୍ରେସ ଓ ଗାନ୍ଧୀଜୀଙ୍କ ପରେ ଆସିପାରିବ । ସେମାନେ ଥିବା ପର୍ଯ୍ୟନ୍ତ ଏହା ସମ୍ଭବ ନୁହେଁ ।" ରାମସାମୀଙ୍କର ବିଶ୍ୱାସ ଥିଲା ଯେ କମ୍ୟୁନିଜମ ଦ୍ୱାରା ସମସ୍ତ ଜନଗଣ ସବୁ ସ୍ତରରେ ସମାନତାର

ସୁଯୋଗ ପାଇପାରିବେ । ଏହି ଦୃଷ୍ଟିରୁ ସେ ସମାଜବାଦ ଓ କମ୍ୟୁନିଜିମ ଦ୍ୱାରା ପ୍ରଭାବିତ ହୋଇଥିଲେ ।

୧୯.୫.୧୯୩୨ରୁ ୧୪.୬.୧୯୩୨ ପର୍ଯ୍ୟନ୍ତ ୨୭ ଦିନ ସେ ଜର୍ମାନ ଭ୍ରମଣରେ ଥିଲେ । ତାଙ୍କର ବିଦେଶ ଭ୍ରମଣ ସମୟରେ ସେ ବିଭିନ୍ନ ଟ୍ରେଡ ୟୁନିୟନ ନେତାମାନଙ୍କ ସହ ସେମାନଙ୍କ ସଂଗଠନ ସଂପର୍କରେ ଆଲୋଚନା କରିଥିଲେ । ସେ କେତେକ ଶ୍ରମିକମାନଙ୍କର ସଭାରେ ଭାଷଣ ଦେଇଥିଲେ । ସେ ଇଂଲଣ୍ଡରେ ଥିବା ବେଳେ ଭାରତୀୟ ଶ୍ରମିକମାନେ କେତେ କମ୍ ମଜୁରୀ ପା'ନ୍ତି ସେଥିପାଇଁ ସରକାରଙ୍କୁ ସମାଲୋଚନା କରିଥିଲେ । ସେ ଇଂଲଣ୍ଡରେ ଥିବା ଅବସରରେ ସାଂସଦ ଶାପୁର ସକ୍ଲତୱାଲାଙ୍କୁ ସାକ୍ଷାତ କରିଥିଲେ । ସକ୍ଲତୱାଲା ଥିଲେ ଜଣେ କମ୍ୟୁନିଷ୍ଟ ନେତା । ୮.୧୧.୧୯୩୨ରେ ସେ ତାଙ୍କ ଭ୍ରମଣ ଶେଷ କରି ଭାରତ ପ୍ରତ୍ୟାବର୍ତ୍ତନ କଲେ । ୧୩.୮ ରେ କୁଦି ଅରସୁ ସମ୍ବଦପତ୍ରରେ ସେ ଲେଖିଥିଲେ – ତାମିଲନାଡୁରେ ପୁରୁଷମାନଙ୍କ ନାମ ଆଗରେ ଶ୍ରୀ ଓ ମହିଳା ମାନଙ୍କ ନାମ ପୂର୍ବରୁ ଶ୍ରୀମତୀ ଲେଖାଯାଉଥିଲା । ଏବେ ପରିବର୍ତ୍ତନ କରାଯାଇ ପୁରୁଷମାନଙ୍କ ନାମ ପୂର୍ବରୁ ତିରୁବାଲର ଓ ମହିଳାମାନଙ୍କ ନାମ ପୂର୍ବରୁ ତିରୁମତୀ ଲେଖାଇ ପରଂପରା ଆରମ୍ଭ ହେଲା । ସେହିପରି ସମସ୍ତଙ୍କ ନାମ ପୂର୍ବରୁ ସେ 'କମ୍ରେଡ' କହିଲେ । ଏହା ସେ ରୁଷ ଭ୍ରମଣରୁ ଶିକ୍ଷା କରିଥିଲେ ।

ରାମସାମୀ ଜୀବନାନ୍ଦମଙ୍କ ସହ ସମ୍ବନ୍ଧିତ ହେଲେ । ଜୀବନାନ୍ଦମ ପୂର୍ବରୁ କମ୍ୟୁନିଷ୍ଟ ଆଦର୍ଶଦ୍ୱାରା ପ୍ରଭାବିତ ହୋଇଥିଲେ । ରାମସାମୀ ଯେହେତୁ ରୁଷ ଭ୍ରମଣକରି ଫେରିଛନ୍ତି, ଜୀବନାନ୍ଦମ ତାଙ୍କ ସହ ସମ୍ବନ୍ଧ ରଖି ତାଙ୍କ ସହ କାର୍ଯ୍ୟ କଲେ । ସେ କଂଗ୍ରେସ ଦଳରେ ରହିଥିଲେ । ହେଲେ ଆତ୍ମ ମର୍ଯ୍ୟାଦା ଆନ୍ଦୋଳନର ବଡ ସମର୍ଥକ ଥିଲେ । ସେ କୁଦି ଅରସୁ ପେପରରେ ନିୟମିତ ଲେଖା ପ୍ରକାଶ କଲେ ।

ରାମସାମୀ ରୁଷ ଭ୍ରମଣ ବିଷୟରେ କୁଦି ଅରସୁରେ ବିଭିନ୍ନ ଲେଖାମାନ ଲେଖିଲେ । ସବୁ ସ୍ତରରେ ମହିଳାମାନଙ୍କୁ ସମାନ ଅଧିକାର, ପୂଜା ପ୍ରାର୍ଥନାର ବିଲୋପନ, ଧନୀ ଗରିବ ଭେଦଭାବର ଦୂରୀକରଣ ଓ ସମାଜବାଦ ସଂପର୍କରେ ସେ ବିଭିନ୍ନ ଲେଖାମାନ ପ୍ରକାଶ କଲେ ।

ସେ ତାଙ୍କ ସହକର୍ମୀମାନଙ୍କୁ ମେ ଦିବସକୁ ଆର୍ଥିକ ସମାନତାର ଦିବସ ଭାବେ ପାଳନ କରିବାକୁ ଅନୁରୋଧ କଲେ । ଏହା ୧୯୩୩ରୁ ସେହିପରି ପାଳିତ ହୋଇଆସୁଛି । ଜନଗଣଙ୍କ ଭିତରେ ସମାନତାର ବିଚାରକୁ ପ୍ରସାର କରିବାକୁ ସେ ବିଭିନ୍ନ ସଭା, ସମ୍ମିଳନୀ ଆୟୋଜନ କଲେ । ସେ କମ୍ୟୁନିଷ୍ଟ ଘୋଷଣାନାମା, ଧର୍ମ ଉପରେ ଲେନିନଙ୍କର ଲେଖା ଓ ଏଂଜେଲସଙ୍କର କମ୍ୟୁନିଷ୍ଟ ଆଦର୍ଶ ଉପରେ ଲେଖାମାନଙ୍କୁ ତାମିଲ ଭାଷାରେ ପ୍ରକାଶ କଲେ ।

ଏମ. ସିଙ୍ଗରବେଲର କମ୍ୟୁନିଷ୍ଟ ଆଦର୍ଶକୁ ପ୍ରସାର ଓ ପ୍ରଚାର ପାଇଁ ନିଜକୁ ସମର୍ପିତ କଲେ ।

ଈଶ୍ୱର ଏକ କଳ୍ପନାର ଭାବନା ସେ ପୋଷଣ କଲେ । ଏହା ସହ ସମାଜବାଦୀ ଆଦର୍ଶରେ ଏକ କୁସଂସ୍କାର ମୁକ୍ତ ସମାଜ ନିର୍ମାଣ ପାଇଁ ସେ ନିଜର ସଂପୃକ୍ତି ବ୍ୟକ୍ତ କଲେ । ଫଳରେ ତାମିଲ ନାଡୁରେ ଏକତାର ଭାବନା ବେଶ୍ ପ୍ରସାରଲାଭ କରିଛି ।

ରାମସାମୀ ସିଙ୍ଗରବେଲାରଙ୍କୁ ଆତ୍ମମର୍ଯ୍ୟାଦା ଆନ୍ଦୋଳନକୁ ଏକ ରାଜନୈତିକ ଶକ୍ତିରେ ରୂପାନ୍ତରିତ କରିବାକୁ ନିବେଦନ କଲେ । ସିଙ୍ଗର- ବେଲାର ସେହି କାର୍ଯ୍ୟରେ ସଂପୃକ୍ତ ହେଲେ । ପ୍ରଥମେ କ୍ଷମତା ଅଧିକାର କରିବାକୁ ହେବ ଓ କ୍ଷମତା ହାସଲ ପରେ ସମାଜ ସଂସ୍କାର କାର୍ଯ୍ୟକୁ ପୂର୍ଣ୍ଣ ଭାବରେ କାର୍ଯ୍ୟକାରୀ କରାଯାଇ ପାରିବ ।

୧୯୩୨ ଡିସେମ୍ବର ୨୮ ଓ ୨୯ରେ ଏରୋଡଠାରେ ଆତ୍ମ ମର୍ଯ୍ୟାଦା ସମ୍ମିଳନୀ ପେରିୟାର ଆହୂତ କଲେ । ସିଙ୍ଗରବେଲର ସେଠାରେ ରାଜନୈତିକ ଲକ୍ଷ୍ୟ ବିଷୟରେ କହିଲେ । ସେ କହିଲେ ଯେ ଆତ୍ମମର୍ଯ୍ୟାଦା ଆନ୍ଦୋଳନ ଓ କାର୍ଯ୍ୟକ୍ରମ ପୂର୍ବପରି ଅବ୍ୟାହତ ରହିବ । ଏଥି ପାଇଁ ଏକ ବିକଳ୍ପ ରାଜନୈତିକ କାର୍ଯ୍ୟସୂଚୀ ମାଧ୍ୟମରେ ସାମାଜିକ ସମତା ହାସଲ ପାଇଁ ଲକ୍ଷ୍ୟ ରଖାଯିବ । ଏହାକୁ 'ଏରୋଡ ପ୍ଲାନ' ବୋଲି କୁହାଗଲା ।

- ❖ ଭାରତ ସଂପୂର୍ଣ୍ଣ ରୂପେ ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦରୁ ମୁକ୍ତ ହେବା ଉଚିତ ।
- ❖ ଭାରତ ସମସ୍ତ ଋଣରୁ ମୁକ୍ତ ହେବା ଦରକାର ।
- ❖ କଳକାରଖାନା, ରେଳସେବା, ବ୍ୟାଂକ ଓ ଗମନାଗମନ ବ୍ୟବସ୍ଥାର ଜାତୀୟକରଣ ।
- ❖ ସମସ୍ତ ଦାସତ୍ୱପ୍ରଥା, ଗୋତିପ୍ରଥାମୁକ୍ତ ସମାଜ ଗଠନ ।
- ❖ ସମଗ୍ର ଦେଶରେ ଶ୍ରମିକ ସରକାର ପ୍ରତିଷ୍ଠା ।

ନଭେମ୍ବର ୧୯୩୮ ରୁ ରାମସାମୀଙ୍କୁ ସମସ୍ତେ ପେରିୟାର କହିଲେ ଓ ସେ ସେହି ନାମରେ ପରିଚିତ ହେଲେ ।

## ପେରିୟାରଙ୍କର ମାଲେସିଆ ଓ ସିଙ୍ଗାପୁର ଦ୍ୱିତୀୟ ଭ୍ରମଣ (୧୯୫୪-୧୯୫୫)

ପେରିୟାର ବର୍ମାରେ ବିଶ୍ୱ ବୌଦ୍ଧ ସମ୍ମିଳନୀରେ ଯୋଗଦେବା ପାଇଁ ଯିବା ଅବସରରେ ସେଠାରେ ଦୁଇ ସପ୍ତାହ ରହିଲେ । ମାଲେସିଆକୁ ଦ୍ୱିତୀୟ ବାର ପାଇଁ ଯିବା ଉଦ୍ଦେଶ୍ୟରେ ରେଙ୍ଗୁନଠାରୁ ସେ ଜାହାଜ ଯୋଗେ ତାଙ୍କର ଯାତ୍ରା ୧୧.୧୨.୧୯୫୪ରେ ଆରମ୍ଭ କଲେ । ଯେଉଁ ଜାହାଜରେ ସେ ଯାତ୍ରାକଲେ ତାର ନାମ ସଂଗୋଲା । ପେନାଙ୍ଗରେ ସେ ୧୪.୧୨.୧୯୫୪ରେ ପହଞ୍ଚିଲେ । ତାଙ୍କ ସହ ମାନିଆମାଇ, ଏ.ଏନ.ନରସିଂହାନ, ତୀରୁମତୀ ରାମକୃଷ୍ଣ ମଲ ମଧ୍ୟ ଯାଇଥିଲେ । ଯେଉଁ ଦିନ ସେଠାରେ ପହଞ୍ଚିଲେ ସେହି ସନ୍ଧ୍ୟାରେ ସେଠାରେ ଏକ ସାଧାରଣ ସଭାରେ ଭାଷଣ ଦେଇଥିଲେ । ୧୫.୧୨.୧୯୫୪ ଦିନ ସେ ପେନାଙ୍ଗ 'ପାକନ ଜର୍ମାନ ଭାରତୀୟ ଆସୋସିଏସନ' କେନ୍ଦ୍ରୀୟ ହଲଠାରେ ଭାଷଣ ଦେଇଥିଲେ ।

୧୬.୧୨.୧୯୫୪ ଦିନ ସେ ପିରାଇ ଆସିଲେ । ସେହିଦିନ ସଂଧ୍ୟାରେ ମାର୍କ ସ୍କୁଲ ପରିସରରେ ସେ କହିଥିଲେ ।

୧୭.୧୨.୧୯୫୪ରେ ଇଣ୍ଡିଆନ କାଉନସିଲ ସାଧାରଣ ସଭାରେ ସେ ଅଭିଭାଷଣ ଦେଇଥିଲେ । ୧୯୩୧ର ସ୍ଥିତି ସହ ୧୯୫୪ର ସ୍ଥିତି ଭିତରେ

ସେ ତୁଳନାତ୍ମକ ବ୍ୟାଖ୍ୟା କରିଥିଲେ ଓ ଆଗକୁ କ'ଣ କରାଯିବା ଆବଶ୍ୟକ ତାହାର ସୂଚନା ଦେଇଥିଲେ ।

୧୮.୧୨.୧୯୫୪ ଦିନ ଥାଇପଙ୍ଗର ଇନଥୋଙ୍ଗ ଆସୋସିଏସନ ହଲରେ ବକ୍ତବ୍ୟ ପ୍ରଦାନ କରିଥିଲେ ।

୯.୧୨.୧୯୫୪ ଦିନ କୋଲା କଙ୍ଗଙ୍ଗସର ଭାରତୀୟ କାଉନସିଲରେ ଭାଷଣ ଦେଇଥିଲେ ।

ସେହିଦିନ ଏପୋଦ୍ୱାରା ଆୟୋଜିତ ଉତ୍ସବରେ ସେ କହିଥିଲେ । ୨୨.୧୪.୧୯୫୪ ଦିନ କୁଲାଲଂପପୁରର ସାର୍ଦ୍ଦୁଲ ପସା ହଲରେ ସେ ଏକ ଦୀର୍ଘ ଭାଷଣ ଦେଇଥିଲେ । ପୃଥିବୀ ଯେପରି ପରିବର୍ତ୍ତିତ ହୋଇଚାଲିଛି ଆମେ ସେହି ଧାରାକୁ ଅବଲମ୍ବନ ନକଲେ ଆମର ପ୍ରଗତି ହୋଇପାରିବ ନାହିଁ ବୋଲି ମନ୍ତବ୍ୟ ରଖିଥିଲେ ।

୨୫.୧୨.୧୯୫୪ ଦିନ ସେ ସିରାଂପନଠାରେ କୁସଂସ୍କାର ସଂପର୍କରେ ଭାଷଣ ଦେଇଥିଲେ । ସେହିଦିନ ସେ ବାଣ୍ଟିଙ୍ଗ୍‌ଠାରେ ମଧ୍ୟ କହିଥିଲେ ।

୨୬.୧୨.୧୯୫୪ ଦିନ ସେ ପୋର୍ଟିକସନଠାରେ ୨୦୦୦ ଲୋକଙ୍କ ଉପସ୍ଥିତିରେ ଏକ ଭାଷଣ ଦେଇଥିଲେ । ସେହିଦିନ ସେ କାଜଙ୍ଗରେ ବି ଏକ ଭାଷଣ ଦେଇଥିଲେ ।

୨୭.୧୨.୧୯୫୪ ଦିନ ସେ ଥଂଫିଗ ଟାଉନ ହଲରେ ଭାଷଣ ଦେଇଥିଲେ ।

୨.୧.୧୯୫୫ ଦିନ ସେ ଯୁବକ ମାନଙ୍କୁ ମୁହାରଠାରେ କହିଥିଲେ ।

୫.୧.୧୯୫୫ ଦିନ କ୍ଲାଙ୍ଗ ରୋଡ ହାଉସରେ ବକ୍ତବ୍ୟ ରଖିଥିଲେ ।

୬.୧.୧୯୫୫ ଦିନ ସିଂଗାପୁର ସିବିଚ ହୋଟେଲରେ ତାଙ୍କ ସମ୍ମାନାର୍ଥେ ଆୟୋଜିତ ଡିନର ପାର୍ଟିରେ ଭାଷଣ ଦେଇଥିଲେ ।

୯.୧.୧୯୫୫ ରୁ ସେ ତାଙ୍କର ଭାରତ ପ୍ରତ୍ୟାବର୍ତ୍ତନ ଯାତ୍ରା ଆରମ୍ଭ କଲେ ।

# ୧୧. ନାଗମଲଙ୍କ ଦେହାନ୍ତ

୧୯୩୩ ମେ ୧୧ ଦିନ ନାଗମଲଙ୍କର ଦେହାନ୍ତ ହେଲା । ତାଙ୍କୁ ଉତ୍ତମ ସ୍ୱାସ୍ଥ୍ୟ ସେବା ଯୋଗାଯିବା ସତ୍ତ୍ୱେ ସେ ଚାଲିଗଲେ । ତାଙ୍କୁ ଶ୍ରଦ୍ଧାଂଜଳି ଜଣାଇବା ପାଇଁ ହଜାର ହଜାର ବ୍ୟକ୍ତି ରାମସାମୀଙ୍କ ଘରକୁ ଆସିଲେ । ରାମସାମୀ ଗୃହ ସାମ୍ନାରେ ଛିଡା ହୋଇ ନ କାନ୍ଦିବାକୁ ସମସ୍ତଙ୍କୁ ନିବେଦନ କରୁଥାନ୍ତି । ସେ କହୁଥାନ୍ତି, "ଯଦି ଆପଣ ଲୁହ ଗଡାଇବେ , ଦୟାକରି ଭିତରକୁ ଯା'ନ୍ତୁ ନାହିଁ ।"

ପରଦିନ ସକାଳେ ନାଗମଲଙ୍କର ଶବସତ୍କାର କରାଗଲା । ସେହିଦିନ ସନ୍ଧ୍ୟାରେ ରାମସାମୀ ପୂର୍ବ ନିର୍ଦ୍ଧାରିତ ଏକ ସଭାରେ ଯୋଗଦେବାକୁ ବାହାରକୁ ଗଲେ । ଏହାର ଅର୍ଥ ନୁହେଁ ଯେ ତାଙ୍କର ନାଗମଲଙ୍କ ପ୍ରତି ପ୍ରୀତି ନ ଥିଲା । ବରଂ ସେ ନିଜ ଆତ୍ମପ୍ରତ୍ୟୟ ଅନୁଯାୟୀ କାର୍ଯ୍ୟ କରୁଥିଲେ ।

ନାଗମଲଙ୍କର ଦେହାନ୍ତର ତିନି ଦିନ ପରେ ରାମସାମୀ ତାଙ୍କ ସମ୍ବାଦପତ୍ରରେ ଏକ ସଂପାଦକୀୟ ଲେଖିଲେ । ସେ ଲେଖିଥିଲେ "ମୋର ଜୀବନ ସାଥି, ପ୍ରେମମୟୀ ନାଗମଲ ୧୧.୫.୧୯୧୩ ଦିନ ଶେଷ ନିଶ୍ୱାସ ତ୍ୟାଗ କଲେ । ନାଗମଲ ଥିଲେ ମୋର ଜୀବନ ସାଥି । ମୁଁ ତାଙ୍କର ପ୍ରକୃତ ଜୀବନ ସାଥି ଥିଲି କି ନାହିଁ କହିପାରିବି ନାହିଁ । ମୁଁ ଯେତେବେଳେ ବେପରୁଆ ଯୁବକ ଥିଲି ବା ପରେ ଯେତେବେଳେ ସାଧାରଣ ଜୀବନ କ୍ଷେତ୍ରକୁ ଆସିଲି ପ୍ରତ୍ୟେକ ପରିସ୍ଥିତିରେ ନାଗମଲ ମୋତେ ସମର୍ଥନ ଦେଇଥିଲେ । ଅନ୍ୟମାନେ ନିଜ ପତ୍ନୀଙ୍କୁ ଯେପରି ବ୍ୟବହାର ପ୍ରଦର୍ଶନ କରିବାକୁ ମୁଁ ଉପଦେଶ ଦିଏ, ମୁଁ ଯେ ପ୍ରକୃତରେ ନାଗମଲଙ୍କୁ ସେପରି ବ୍ୟବହାର ଦେଖାଇଛି ଏହା କହିପାରିବି ନାହିଁ । ମୁଁ ସର୍ବଦା ଅନୁଭବ କରିଛି ଯେ ନାଗମଲ ତାଙ୍କ ପାଇଁ ନୁହେଁ ବରଂ ମୋ ପାଇଁ ଜୀବନ ବଞ୍ଚିଥିଲେ । ତାଙ୍କ ଜୀବନ ମୋ ପାଇଁ ସମର୍ପିତ ଥିଲା । ତାଙ୍କ ଦେହାନ୍ତଦ୍ୱାରା ଜଣେ ଦାସୀଙ୍କର ଜୀବନ ନିର୍ବାପିତ ହେଲା, ମୋର ଆଶ୍ରା ଚାଲିଗଲେ କିମ୍ବା ମୋର ସୁଖର ଦିନ ସରିଗଲା ମୁଁ କହିପାରିବି ନାହିଁ । ମୁଁ କ'ଣ କହିବି ବୁଝିପାରୁ ନାହିଁ ।

ନାଗମଲଙ୍କର ଜୀବନ ସ୍ୱଳ୍ପକାଳ ବୋଲି ହୁଏତ କୁହାଯାଇ ପାରିବ ନାହିଁ । ସେ ୪୮ ବର୍ଷରେ ବିଦାୟ ନେଲେ । ଭାରତରେ ମହିଳାମାନଙ୍କର ହାରାହାରି ବୟସ ୨୩.୫ । ନାଗମଲଙ୍କର ଦେହାନ୍ତକୁ ଏକ ଶୋକର ଦିବସ ନେବା ପରିବର୍ତ୍ତେ ଏକ ସ୍ମୃତିର ଦିନ ଭାବେ ମୁଁ ଗ୍ରହଣ କରୁଛି ।

ଗତ ଦୁଇ ତିନି ବର୍ଷ ଧରି ମୋର ଶେଷ ପର୍ଯ୍ୟନ୍ତ ପ୍ରତିଦିନ ମୁଁ କେବଳ ଦିନବେଳେ ଭାଷଣ ଦେଇ ବଞ୍ଚିବାକୁ ଭାବୁଥିଲି । ମୋର କିଛି ଘର ଆବଶ୍ୟକ ନାହିଁ କିମ୍ବା ମୁଁ ସ୍ଥାୟୀ ଭାବେ କେଉଁଠାରେ ରହିବାକୁ ଭାବୁନାହିଁ । ସେହି କ୍ଷେତ୍ରରେ ମୋ ପାଇଁ କେବଳ ନାଗମଲ ହିଁ ପ୍ରତିବନ୍ଧକ ଥିଲେ । ତାଙ୍କ ବିଦାୟଦ୍ୱାରା ସେହି ପ୍ରତିବନ୍ଧକ ଦୂର ହୋଇଗଲା । ଏହି ଦୃଷ୍ଟିରୁ ତାଙ୍କର ଦେହାନ୍ତ ମୋ ପାଇଁ ଏକ ସୁଖର ସମ୍ବାଦ ।

ମୁଁ ଏହା କିପରି କହିବି ! ଏହା ଏକ ମୃତ୍ୟୁର ସମ୍ବାଦ, ନା ପ୍ରେମର କାହାଣୀ ନା ନିଜ ବିଚାର ଅନୁଯାୟୀ କାର୍ଯ୍ୟ କରିବାର ସ୍ୱାଧୀନତା ? ରାମସାମୀଙ୍କର ମା ରାମସାମୀଙ୍କର ପୁନଃବିବାହ ପାଇଁ ବହୁତ ଆଗ୍ରହୀ ଥିଲେ । ଏପରିକି ରାମସାମୀ ତାଙ୍କ ଭାଣିଜୀ ରସତୀକୁ ବିବାହ କରିବାକୁ ମା ଚାହୁଁଥିଲେ, ଅନ୍ୟ କେତେକ ମହିଳା ବି ଆଗ୍ରହୀ ହେଉଥିଲେ । କିନ୍ତୁ ରାମସାମୀ କୌଣସିଥିରେ ସମ୍ମତ ହେଲେ ନାହିଁ ।

ତେବେ ରାମସାମୀ ଯାହା କଲେ ବି ନାଗମଲଙ୍କୁ କେବେ ହେଲେ ଭୁଲିଯାଇ ପାରୁନଥିଲେ । ନାଗମଲଙ୍କର ପ୍ରେମ ଓ ଆନ୍ତରିକତା ଏତେ ଦୃଢ଼ ଥିଲା ଯେ ତାଙ୍କୁ ଭୁଲିଯିବା ସମ୍ଭବ ନଥିଲା ।

# ୧୭. ଛ' ମାସ ସଶ୍ରମ କାରାଦଣ୍ଡ

ସରକାର ରାମସାମୀ ଭାଷଣ ଦେବା କ୍ଷେତ୍ରରେ ପ୍ରତିବନ୍ଧକ ଲଗାଇବାକୁ ଚାହୁଁଥିଲେ । ତେଣୁ କୌଣସି ନା କୌଣସି ଆଳ ଦେଖାଇ ତାଙ୍କୁ ଗିରଫ କରିବାକୁ ସରକାର ଚାହୁଁଥିଲେ । ସବୁ ଲୋକଙ୍କର ସମାନତା ବିଷୟ ରାମସାମୀ ପ୍ରଚାର କରୁଥିଲେ । ସରକାର ବିରୁଦ୍ଧରେ ରାମସାମୀ ଲେଖିବା ଓ ଭାଷଣ ଦେବା ସରକାରଙ୍କଦ୍ୱାରା ଗ୍ରହଣଯୋଗ୍ୟ ହେଉନଥିଲା । ୧୯୩୩ ଅକ୍ଟୋବର ୨୯ରେ ରାମସାମୀ ତାଙ୍କ ସମ୍ବାଦପତ୍ର କୁଦି ଆରସୁରେ ଏକ ସଂପାଦକୀୟ ଲେଖିଥିଲେ । ସରକାର ଧନୀମାନେ କିପରି ଅଧିକ ଧନୀ ହେବେ ଓ ଗରିବମାନେ ଅଧିକ ଗରିବ ହେବେ ଏହିପରି ନୀତି ଅବଲମ୍ବନ କରୁଛନ୍ତି ବୋଲି ତାଙ୍କ ସଂପାଦକୀୟରେ ଆକ୍ଷେପ କରିଥିଲେ । ସରକାର ପୂରା ପୁଂଜିବାଦୀ ନୀତି ଅବଲମ୍ବନ କରୁଛନ୍ତି । କେବଳ ଧନୀମାନେ ଶିକ୍ଷା ଓ କର୍ମନିଯୁକ୍ତି ପାଇବା ସରକାର ଚାହାନ୍ତି ।

ଏହି ଲେଖା ପୂରା ସରକାରୀ ବିରୋଧୀ ବୋଲି କହି ୧୯୩୩ ଡିସେମ୍ବର ୨୦ ଦିନ ରାମସାମୀ ଓ ତାଙ୍କ ଭଉଣୀ କନମଲଙ୍କୁ ଗିରଫ କରାଗଲା । କନମଲ 'କୁଦି ଅରସୁ' ସମ୍ବାଦପତ୍ରର ପ୍ରକାଶକ ଥିଲେ । ସେମାନଙ୍କ ବିରୁଦ୍ଧରେ ଦେଶଦ୍ରୋହ ଅଭିଯୋଗ ଅଣାଗଲା । ରାମସାମୀଙ୍କୁ ଛ'ମାସ ସଶ୍ରମ କାରାଦଣ୍ଡ ଓ ୩୦୦ଟଙ୍କା ଯୋରିମନା ଓ କନମଲଙ୍କୁ ସାଧାରଣ କାରାଦଣ୍ଡ ଓ ୩୦୦ଟଙ୍କା ଯୋରିମନା ଦେବାକୁ ନିର୍ଦ୍ଦେଶ ଥିଲା । ସରକାରଙ୍କର ଏହି ଆଦେଶ ଯୋଗୁ କୁଦି ଆରସୁର ପ୍ରକାଶନ ବନ୍ଦ ହେଲା । ଏହି ସମୟରେ ଅନ୍ୟ ଦୁଇଟି ସମ୍ବାଦପତ୍ର 'ପୁରଚ୍ଚେହି' ଓ 'ପଗୁତରିଭୁ' ମଧ୍ୟ ଅନ୍ୟ କାରଣରୁ ବନ୍ଦ ହେଲା ।

ଜେଲଭିତରେ ରାମସାମୀ ରାଜାଜୀଙ୍କୁ ସାକ୍ଷାତ କଲେ ଯିଏ ସେତେବେଳେ ଜେଲରେ ରହିଥିଲେ । ରାମସାମୀ ପୁଣି କଂଗ୍ରେସରେ ଯୋଗଦେବାକୁ ରାଜାଜୀ ତାଙ୍କୁ ପ୍ରବର୍ତ୍ତାଇଲେ । ତେବେ ରାମସାମୀ ଏକ ସର୍ତ୍ତ ରଖିଲେ । ଯଦି ବିଧାନ ପରିଷଦରେ ଓ କର୍ମସଂସ୍ଥାନ କ୍ଷେତ୍ରରେ କଂଗ୍ରେସ ସଂରକ୍ଷଣ ବ୍ୟବସ୍ଥା

କରିବ, ତେବେ ସେ କଂଗ୍ରେସରେ ଯୋଗଦେବେ ବୋଲି କହିଲେ । ଏହି ସର୍ତ୍ତରେ କଂଗ୍ରେସ/ଗାନ୍ଧୀ ସମ୍ମତ ହେଲେ ନାହିଁ ।  ଏଣୁ ରାମସାମୀ କଂଗ୍ରେସରେ ଯୋଗ ଦେଲେ ନାହିଁ । ଜେଲରେ ନିର୍ଦ୍ଧାରିତ ସମୟ ଅତିବାହିତ କରି ରାମସାମୀ ଓ କନମଲ ମୁକ୍ତ ହେଲେ । ରାମସାମୀ ଏକ ନୂଆ ଶ୍ରମିକ ନୀତି ଘୋଷଣା କଲେ । ସେହି ନୀତିକୁ ଯେଉଁ ଦଳ ଗ୍ରହଣ  କରିବ, ସେ ସେହି  ଦଳରେ  ଯୋଗଦେବେ ବୋଲି ମତ ରଖିଲେ ।

କଂଗ୍ରେସ ସେହି ନୀତିକୁ ଗ୍ରହଣ କଲାନାହିଁ । ଜଷ୍ଟିସ ପାର୍ଟି ତାହା ଗ୍ରହଣ କରିବାରୁ ସେ ସେହି ପାର୍ଟି ପାଇଁ ପ୍ରଚାର କଲେ । ଜୀବନାନ୍ଦମ ଓ ସିଙ୍ଗର ବେଲାର ଜଷ୍ଟିସ ପାର୍ଟିର ନିଷ୍ପତ୍ତିକୁ ତୀବ୍ର ବିରୋଧ କଲେ । ସେମାନେ ଏକତାକୁ ସମର୍ଥନ କରୁଥିଲେ । ଜଷ୍ଟିସ ପାର୍ଟି ଯେ ବ୍ରିଟିଶ ଶାସନକୁ ସମର୍ଥନ କରୁଛି ଏହି  ଅଭିଯୋଗ ସେମାନେ ଆଣିଲେ । ରାମସାମୀ କିନ୍ତୁ ସେମାନଙ୍କ ମତ ସହ ସହମତ ହେଲେ ନାହିଁ ଓ ଜଷ୍ଟିସ ପାର୍ଟିର ସମର୍ଥକ ରହିଲେ । ୧୯୩୪ ନଭେମ୍ବର ମାସରେ ଯେଉଁ ନିର୍ବାଚନ ଅନୁଷ୍ଠିତ ହେଲା ସେଥିରେ କଂଗ୍ରେସ ବିପୁଳ ବିଜୟଲାଭ କଲା ଓ ଜଷ୍ଟିସ ପାର୍ଟି ହାରିଲା ।

ବ୍ରିଟିଶ ସରକାର କମ୍ୟୁନିଷ୍ଟ ପାର୍ଟିର ବିନାଶ ଚାହୁଁଥିଲା, ଯେହେତୁ ତାହା ଦ୍ରୁତ ବିକାଶଲାଭ କରୁଥିଲା । ସୁତରାଂ ସରକାର କମ୍ୟୁନିଷ୍ଟ ପାର୍ଟିକୁ ୧୯୩୪ରେ ନିଷିଦ୍ଧ ଘୋଷଣାକଲେ । ସେହିପରି ତାମିଲନାଡୁରେ ଆତ୍ମ ମର୍ଯ୍ୟାଦା ଆନ୍ଦୋଳନ ଓ ସମତା ଭାବଧାରାର ବିକାଶକୁ ନିୟନ୍ତ୍ରଣ ଓ ହ୍ରାସ କରିବାକୁ ଚାହୁଁଥିଲେ । ଜୀବନାନନ୍ଦମ ଭଗତ ସିଂହଙ୍କର ଇଂରାଜୀ ପୁସ୍ତକ Why I am an Atheist  କୁ ତାମିଲରେ ଅନୁବାଦ କଲେ । ସେହି ପୁସ୍ତକକୁ ମଧ୍ୟ ସରକାର ନିଷିଦ୍ଧ କଲେ । ସେହି ପୁସ୍ତକର ପ୍ରକାଶକ ଇ.ଭି. କ୍ରିଷ୍ଣସାମୀ ଦେଶଦ୍ରୋହ  ଅପରାଧରେ ୧୯୩୫ ଫେବୃୟାରୀ ୨୧ରେ ଗିରଫ ହେଲେ । ସରକାର ଜଷ୍ଟିସ ପାର୍ଟି ମାଧ୍ୟମରେ ରାମସାମୀଙ୍କୁ ଖବର ଦେଲେ ଯେ ଲୋକମାନଙ୍କ ମଧ୍ୟରେ ସମତାର ଭାବନା ପ୍ରସାର କରିବା ବନ୍ଦ ନକରନ୍ତି, ତେବେ ସରକାର ଆତ୍ମମର୍ଯ୍ୟାଦା ଆନ୍ଦୋଳନକୁ

ନିଷିଦ୍ଧ ଘୋଷଣା କରିବେ । ରାମସାମୀ ସୁତରାଂ ଲୋକମାନଙ୍କ ଭିତରେ ସମତାର ଭାବନା ପ୍ରସାର କରିବା କାର୍ଯ୍ୟ ବନ୍ଦ ରଖିଲେ ଓ ଏହି ପରିପ୍ରେକ୍ଷୀରେ ୧୯୩୫ ମାର୍ଚ୍ଚ ୧୦ କୁଦି ଅରସୁ ସମ୍ବାଦପତ୍ର ସଂଖ୍ୟାରେ ଏକ ବିବୃତି ପ୍ରକାଶ କଲେ । ଏହା ସହ ଜୀବନାନ୍ଦମ ଓ ଇ.ଭି. କ୍ରିଷ୍ଣସାମୀଙ୍କୁ ପରାମର୍ଶ ଦେଲେ ଯେ ସେମାନେ ସରକାରଙ୍କ ପାଖରେ କ୍ଷମା ପ୍ରାର୍ଥନା କରି ଜେଲରୁ ମୁକ୍ତ ହୁଅନ୍ତୁ । ଜୀବନାନନ୍ଦମ ଯଦିବି ଏପରି ପ୍ରସ୍ତାବରେ ସମ୍ମତ ନ ଥିଲେ, ତେବେ ସେ ରାମସାମୀଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିପାରିଲେ ନାହିଁ । ରାମସାମୀ ଏହି ବିଷୟରେ ତାଙ୍କ ସମ୍ବାଦପତ୍ର କୁଦି ଅରସୁରେ ୩୧.୩.୧୯୩୫ରେ ଏକ ବିବରଣୀ ସେମାନଙ୍କ ତରଫରୁ ପ୍ରକାଶ କଲେ । କେତେକ ଯୁବକ ରାମସାମୀଙ୍କର ଏହି ପଦକ୍ଷେପକୁ ବିରୋଧ କଲେ । ଜୀବନାନନ୍ଦମ ଓ ସିଙ୍ଗରାବେଲାର ମଧ୍ୟ ଏହି ପଦକ୍ଷେପକୁ ସମର୍ଥନ କଲେ ନାହିଁ । କେତେକ ଯୁବକ ତାଙ୍କ ଦଳ ଛାଡି ଦେଇ 'ଆତ୍ମମର୍ଯ୍ୟାଦା ସମାଜବାଦୀ ପାର୍ଟି' ନାମରେ ଏକ ନୂତନଦଳ ଗଠନ କଲେ । ରାମସାମୀ ଏ ବିଷୟରେ ତାଙ୍କ ସମ୍ବାଦପତ୍ରରେ ଲେଖିଲେ– "ଯେକୌଣସି ଦଳ ପକ୍ଷରେ ଏହା ଏକ ସାଧାରଣ ଘଟଣା । ବୟସ୍କ ବ୍ୟକ୍ତି ଦଳ ଛାଡିବା ସ୍ୱାଭାବିକ । ଏପରି ଲେଖି ସେ ତାଙ୍କ ପ୍ରତି ବିରୋଧକୁ ଏଡାଇ ଦେଇଥିଲେ ।

କଂଗ୍ରେସ ଦଳ ବୃଦ୍ଧି ପାଉଥିଲା, ଜଷ୍ଟିସ ପାର୍ଟି ପ୍ରତି ସମର୍ଥନ କମିବାରେ ଲାଗିଥିଲା । ଯୁବକମାନେ ରାମସାମୀଙ୍କୁ ମଧ୍ୟ କେତେକ ନୀତି ଉପରେ ବିରୋଧ କରୁଥିଲେ । ତେବେ ବ୍ରାହ୍ମଣମାନଙ୍କର ପ୍ରଭୁତ୍ୱ କମିବା ଓ ଅବ୍ରାହ୍ମଣ ମାନଙ୍କର ପ୍ରଭାବ ବଢିବାରେ ରାମସାମୀଙ୍କର ଯଥେଷ୍ଟ ଅବଦାନ ରହିଥିଲା । ସେ ସାମାଜିକ ସ୍ତରରେ ଭେଦଭାବକୁ ଦୂରକରିବାକୁ ଅଧିକ ପ୍ରାଧାନ୍ୟ ଦେଇଥିଲେ ଯାହାର ପରିଣତି ସ୍ୱରୂପ ସାମାଜିକ ବିକାଶ ତ୍ୱରାନ୍ୱିତ ହୋଇଥିଲା ।

# ୧୩. ଭାଷା ଆନ୍ଦୋଳନ କାରଣରୁ ଗିରଫ

୧୯୩୭ ରେ ବିଧାନ ସଭା ସାଧାରଣ ନିର୍ବାଚନରେ ଦ୍ୱୈତ ସରକାରୀ ବ୍ୟବସ୍ଥାର ଉଚ୍ଛେଦ ହେଲା ଓ ଲୋକମାନଙ୍କଦ୍ୱାରା ନିର୍ବାଚିତ ସରକାର ଗଠିତ ହେଲା । ଜଷ୍ଟିସ ପାର୍ଟିର ମୁଖ୍ୟ ପ୍ରଚାରକ ରାମସାମୀ ଥିଲେ । କଂଗ୍ରେସ ତରଫରୁ ଏସ.ରାମମୂର୍ତ୍ତି, ରାଜାଜୀ, ପି.ଜୀବନାନନ୍ଦମ ମୁଖ୍ୟ ରହିଥିଲେ । ଏହି ନିର୍ବାଚନରେ କଂଗ୍ରେସ ବହୁମତ ପାଇ ସଂଖ୍ୟାଗରିଷ୍ଠ ହେଲା । ୨୧୫ଟି ସ୍ଥାନରୁ କଂଗ୍ରେସ ୧୫୯ଟି ସ୍ଥାନରେ ବିଜୟଲାଭ କଲା । ପି.ଟି.ରାଜନ, ମୁଥିଆ ମୁଦାଲିୟର ନିର୍ବାଚନରେ ପରାଜିତ ହେଲେ । ବୋବଲି ରାଜା ଭି.ଭି. ଗିରିଙ୍କ ଦ୍ୱାରା ଓ ରାମନାଥପୁରମ ରାଜା ମିଥୁ ରାମଲିଙ୍ଗ ତେବରଙ୍କ ଦ୍ୱାରା ପରାଜିତ ହେଲେ । ପରାଜିତ ବ୍ୟକ୍ତିମାନେ ଜଷ୍ଟିସ ପାର୍ଟିର ବ୍ୟକ୍ତି ଥିଲେ । ଏହି ପରାଜୟ ଯୋଗୁ କେତେକ ଜଷ୍ଟିସପାର୍ଟି ଛାଡିଦେଲେ । ମାଡ୍ରାସ ପ୍ରେସିଡେନ୍‌ସିର ପ୍ରଧାନମନ୍ତ୍ରୀ ରାଜାଜୀ ହେଲେ । ସେ ବିଦ୍ୟାଳୟ ସ୍ତରର ଶିକ୍ଷା ଇଂରାଜୀ ପରିବର୍ତ୍ତେ ପ୍ରାଦେଶିକ ଭାଷାରେ କରିବାକୁ ନିଷ୍ପତ୍ତି ନେଲେ । ଏହା ସହ ଷଷ୍ଠ, ସପ୍ତମ ଓ ଅଷ୍ଟମ ଶ୍ରେଣୀରେ ହିନ୍ଦୀକୁ ବାଧ୍ୟତାମୂଳକ କଲେ । ରାଜାଜୀଙ୍କର ଏହି ଶିକ୍ଷା ନୀତିକୁ ରାମସାମୀ, ମାରାଇମଲାଇ ଆଜିଗଲ ଓ ସୋମସୁନ୍ଦର ଭାରତୀ ବିରୋଧ କଲେ । ରାଜାଜୀ ବିରୋଧକୁ ସମ୍ମୁଖୀନ ହୋଇନପାରି ହିନ୍ଦୀକୁ କେବଳ ୧୨୫ଟି ସ୍କୁଲରେ ବାଧ୍ୟତାମୂଳକ କଲେ ।

୧୯୩୭ ଡିସେମ୍ବର ୨୬ ଦିନ ତ୍ରିଚିଠାରେ ଶ୍ୟାମସୁନ୍ଦର ଭାରତୀ ଏକ ତାମିଲ ସମ୍ମିଳନୀର ଆୟୋଜନ କରିଥିଲେ । ସେମାନେ ହିନ୍ଦୀ ଭାଷାକୁ ସେମାନଙ୍କ ଉପରେ ଲଦିଦେବା ଘଟଣାକୁ ବିରୋଧ କରିବା ସହ ତାମିଲ ଲୋକମାନଙ୍କର ଏକ ସ୍ୱତନ୍ତ୍ର ରାଜ୍ୟ ପାଇଁ ଦାବି କଲେ । କେ.ଏ.ପି ବିଶ୍ୱନାଥମ ଓ ଟି.ଭି. ବେଦାଚଲମ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ଏହି ସମ୍ମିଳନୀ ପରେ ସମଗ୍ର ତାମିଲନାଡୁରେ ପ୍ରତିବାଦ ଆରମ୍ଭ ହେଲା । ସି. ଏନ. ଆନାଦୁରାଇ, ଇଲମ ଆଲିଗଲ, କେ.ଏମ.ବାଲସୁବ୍ରମଣ୍ୟମ, ଟି.ଏ.ଭି. ନାଦ ନାୟଗମ ଆନ୍ଦୋଳନରେ ଯୋଗଦେଲେ । ସହସ୍ରାଧିକ ଲୋକ ମଧ୍ୟ ଏହି ସମ୍ମିଳନୀରେ ଅଂଶ ଗ୍ରହଣ କରିଥିଲେ ।

୧ ୯ ୩ ୮ ନଭେମ୍ବର ୧ ୩ ଦିନ ଚେନାଇଠାରେ ମହିଳାମାନେ ଏକ ବଡ ସମ୍ମିଳନୀରେ ସି. ରାମସାମୀଙ୍କୁ 'ପେରିୟାର' ଉପାଧି ଦେଲେ ଓ ତାଙ୍କୁ ସମସ୍ତେ ପେରିୟାର ଡାକିଲେ । ୧ ୯ ୩ ୮ ଡିସେମ୍ବର ୫ ତାରିଖରେ ନ୍ୟାୟମୂର୍ତ୍ତି ମାଧବ ରାଓଙ୍କ କୋଟରେ ପେରିୟାରଙ୍କ କେସ୍‌ଟି ବିଚାର ପାଇଁ ଆସିଲା । ପେରିୟାର ନିଜ ସପକ୍ଷରେ କୌଣସି ଯୁକ୍ତି ଦେବାକୁ ଚାହିଁଲେ ନାହିଁ । ସେ କୋର୍ଟରେ ଏକ ଆଫିଡେଭିଟ୍ କେବଳ ପ୍ରଦାନ କଲେ । ସେ ନିଜ ଆଫିଡେଭିଟରେ ଏହା ପ୍ରକାଶ କରିଥିଲେ -

"ଏହି କୋର୍ଟ କଂଗ୍ରେସ ସରକାରଙ୍କ ନିୟନ୍ତ୍ରଣରେ ରହିଛି । ଯେ ନ୍ୟାୟମୂର୍ତ୍ତି ସେ ଜଣେ ବ୍ରାହ୍ମଣ । ମୋ ମତରେ ହିନ୍ଦୀ ଭାଷା ସଂପର୍କରେ ମନ୍ତ୍ରିମଣ୍ଡଳ ଦ୍ୱାରା ଯେଉଁ ନିଷ୍ପତ୍ତି ହୋଇଛି ତାହା ଏକ ଏକଛତ୍ରବାଦୀ ବିଚାର । ଏହି ଏକଛତ୍ରବାଦୀ ଶାସନ ବ୍ୟବସ୍ଥାରେ ନ୍ୟାୟ ଆଶା କରିବା ସମ୍ଭବ ନୁହେଁ ।

## ଏହି ଘଟଣାପରେ ଯେଉଁ ରାୟ ପ୍ରକାଶ ପାଇଲା -

"ପ୍ରତ୍ୟେକ ଅପରାଧ ପାଇଁ ପେରିୟାରଙ୍କୁ ଏକ ବର୍ଷ ସଶ୍ରମ କାରାଦଣ୍ଡ ସହ ଏକ ହଜାର ଟଙ୍କା ଯୋରିମନା ଦେବାକୁ ହେବ । ଯଦି ସେ ଯୋରିମନା ଦେବାକୁ ଚାହିଁବେ ନାହିଁ, ତେବେ ସେଥିପାଇଁ ଆଉ ଛ'ମାସ ଜେଲଦଣ୍ଡ ଭୋଗିବାକୁ ପଡିବ" । ତେବେ ସରକାର ସଶ୍ରମ କାରାଦଣ୍ଡକୁ ସାଧାରଣ କାରାଦଣ୍ଡରେ ରୂପାନ୍ତରିତ କରିଦେଲେ । ପେରିୟାରଙ୍କୁ ଗିରଫ କରାଯାଇ ବେଲାରି ଜେଲକୁ ପଠାଇ ଦିଆଗଲା ।

ପେରିୟାର ଜେଲରେ ଥିବା ବେଳେ ୧ ୯ ୩ ୮ ଡିସେମ୍ବର ମାସରେ ୨ ୯ ,୩୦.୩୧ ତିନି ଦନ ଧରି ଜଷ୍ଟିସ ପାର୍ଟିର ସମ୍ମିଳନୀ ଚେନାଇଠାରେ ଅନୁଷ୍ଠିତ ହେଲା । ଏହି ସମ୍ମିଳନୀରେ ନିଷ୍ପତ୍ତି ହେଲା ଯେ ଜଷ୍ଟିସ ପାର୍ଟିର ଦାୟିତ୍ୱ ପେରିୟାର ନେବେ । ଯଦିବା ତାଙ୍କୁ ଦୁଇବର୍ଷ କାରାଦଣ୍ଡ ହୋଇଥିଲା ତାଙ୍କର ଖରାପ ସ୍ୱାସ୍ଥ୍ୟ ଯୋଗୁ ତାଙ୍କୁ ଜେଲରୁ ମୁକ୍ତ କରାଗଲା । ଜେଲର ଅବଧି ୧ ୬୭ ଦିନ ଥିଲା ତାଙ୍କୁ ୧ ୯ ୩ ୯ ମେ ୨ ୨ ରେ ଖଲାସ କରାଗଲା । ସେ ଜେଲରୁ ମୁକ୍ତ ହେବାପରେ ତାଙ୍କୁ ଏକ ଭବ୍ୟ ସମ୍ବର୍ଦ୍ଧନା ଦିଆଗଲା । ତାଙ୍କର ମୁକ୍ତି ପରେ ହିନ୍ଦୀ ବିରୋଧୀ ଆନ୍ଦୋଳନରେ ଯେଉଁମାନେ ଜେଲରେ ଥିଲେ ସମସ୍ତଙ୍କୁ ୧ ୯ ୩ ୯ ଜୁନ ୭ ରେ ଖଲାସ କରିଦିଆଗଲା ।

# ୧୪. ମହିଳାଙ୍କ ଦ୍ୱାରା 'ପେରିୟାର' ଉପାଧିରେ ଭୁଷିତ

ମହିଳାମାନଙ୍କର ଉନ୍ନତି ଓ ସଶକ୍ତୀକରଣ ପାଇଁ ପେରିୟାର ପ୍ରଥମେ ସ୍ୱର ଉଠାଇଥିଲେ । ତାଙ୍କ ପୂର୍ବରୁ ମହିଳାମାନଙ୍କର ବିକାଶ ଓ ସଶକ୍ତୀକରଣ କ୍ଷେତ୍ରରେ ଏପିର ଦୃଢ଼ ମତ କେହି ପ୍ରକାଶ କରି ନଥିଲେ । ମହିଳାମାନଙ୍କ ଉପରେ ଭାରତରେ ଯେଉଁ ପରି ଅତ୍ୟାଚର ହୋଇଛି ସେପରି ଅତ୍ୟାଚର ପ୍ରାୟ ଅନ୍ୟ କୌଣସି ଦେଶରେ ହୋଇ ନାହିଁ ।

ମହିଳାମାନେ ପେରିୟାରଙ୍କ ଅବଦାନକୁ ହୃଦୟଙ୍ଗମ କରିଛନ୍ତି । କୃତଜ୍ଞତା ସ୍ୱରୂପ ୧୯୩୮ ନଭେମ୍ବର ୧୩ ଦିନ ଚେନାଇ ସହରର ଓଟ୍ରାଇବାଦାଇ ଥେଟର ପ୍ରେକ୍ଷାଳୟରେ ଏକ ବଡ ମହିଳା ସମ୍ମିଳନୀ କରାଯାଇଛି । ସହସ୍ରାଧିକ ମହିଳା ଏଥିରେ ଯୋଗ ଦେଇଛନ୍ତି । ନୀଳମ୍ବିଗାଇ ଅମଲ ଏହି ସମ୍ମିଳନୀରେ ସଭାପତିତ୍ୱ କରିଛନ୍ତି । ସେ ହେଉଛନ୍ତି ମରାଇମଲାଇ ଆଦିଗଲଙ୍କର ଝିଅ । ପ୍ରେକ୍ଷାଳୟ ବାହାରେ ବହୁ ପୁରୁଷ ସମବେତ ହୋଇଛନ୍ତି । ମହିଳାମାନଙ୍କ ସମ୍ମିଳନୀରେ ବିଭିନ୍ନ ନିଷ୍ପତ୍ତି ଭିତରେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଗ୍ରହଣ କରାଯାଇଛି । ତାହା ହେଉଛି ରାମସାମୀଙ୍କୁ "ପେରିୟାର" ଉପାଧିରେ ଭୂଷିତ କରିବା । ସେହି ଦିନଠାରୁ ଇ.ଭି.ରାମସାମୀ ପେରିୟାର ଭାବରେ ପରିଚିତ ହୋଇଛନ୍ତି ।

ପେରିୟାର ମହିଳାମାନଙ୍କ ପାଇଁ କ'ଣ କରିଛନ୍ତି ? ସେ ମହିଳାମାନଙ୍କ ପାଇଁ ଯେଉଁ ଅବଦାନ ଦେଇଛନ୍ତି ତାହାର ବିବରଣୀ ୭୫୦ ପୃଷ୍ଠା ସମ୍ବଳିତ 'ପେରିୟାର ମହିଳାମାନଙ୍କ ପାଇଁ କ'ଣ କରିଛନ୍ତି ?' ପୁସ୍ତକରେ ରହିଛି । ମୁଁ ଏଠାରେ ତାକୁ ଅତି ସଂକ୍ଷେପରେ ମାତ୍ର କେତୋଟି ପୃଷ୍ଠାରେ ବ୍ୟକ୍ତ କରୁଛି ।

## ମହିଳାଙ୍କ ଅଧିକାର

ପେରିୟାର ହେଉଛନ୍ତି ଏକ ଅଗ୍ରଗାମୀ ବ୍ୟକ୍ତିତ୍ୱ ଯେ ମହିଳା ମାନଙ୍କର ଅଧିକାର ପାଇଁ ସଂଗ୍ରାମ କରିବା ସହ ସେମାନଙ୍କୁ ଦାସତ୍ୱର ମୁକ୍ତି ଦେଇଛନ୍ତି ।

ମହିଳାମାନଙ୍କର ମୁକ୍ତି ଓ ସଶକ୍ତୀକରଣ କ୍ଷେତ୍ରରେ ସେ ଗମ୍ଭୀର ଚିନ୍ତା ପ୍ରକଟ କରିଛନ୍ତି ଓ ବହୁ ସମୟ ଓ ଶକ୍ତି ଦେଇଛନ୍ତି ।

କେବଳ ଶାରୀରିକ ଭେଦଭାବ ବ୍ୟତୀତ ନାରୀ ଓ ପୁରୁଷ ମଧ୍ୟରେ ଯେ କିଛି ଭେଦଭାବ ନାହିଁ ଏହି ବିଚାରକୁ ପେରିୟାର ପ୍ରକାଶ କରିଛନ୍ତି । କିନ୍ତୁ ଧର୍ମ ଓ ଶାସ୍ତ୍ରର ଦ୍ୱାହି ଦେଇ ସେମାନଙ୍କୁ ଦାସ ପରି ବ୍ୟବହାର କରାଯାଇଛି ଏବଂ ପୁରୁଷମାନଙ୍କର ଅଧସ୍ତନ ଓ ଅସହାୟ କରି ରଖାଯାଇଛି । ଯେଉଁମାନେ ସମାଜରୁ ଜାତିପ୍ରଥାର ବିଲୋପ ଚାହିଁଛନ୍ତି ସେମାନେ ମହିଳାମାନଙ୍କର ଅଧିକାର ବିଷୟରେ ଚିନ୍ତା କରିନାହାନ୍ତି, ଯଦିବା ସେମାନଙ୍କର ସଂଖ୍ୟା ଲୋକସଂଖ୍ୟାର ଶତକଡା ୫୦ । ସମାଜ ସଂସ୍କାର କ୍ଷେତ୍ରରେ ପେରିୟାର ପ୍ରଥମେ ମହିଳାମାନଙ୍କ ଅଧିକାରକୁ ପ୍ରାଧାନ୍ୟ ଦେଇଛନ୍ତି ।

ମହିଳାମାନେ କିପରି ଅତ୍ୟାଚରିତ ହେଉଛନ୍ତି ତାହାକୁ ପେରିୟାର ଗଭୀରଭାବେ ଅନୁଭବ କରିଛନ୍ତି । ସେମାନଙ୍କ ପ୍ରତି ହେଉଥିବା ଅମାନବିକ ବ୍ୟବହାରକୁ କିପରି ଦୂର କରାଯିବ, ସେ ପାଇଁ ସେ ବିଭିନ୍ନ ପଦକ୍ଷେପ ନେଇଛନ୍ତି । ସମାଜରେ ଏକ କ୍ରାନ୍ତିକାରୀ ପରିବର୍ତ୍ତନ ପାଇଁ ସେ ପ୍ରଥମେ ପାଦ ବଢ଼ାଇଛନ୍ତି ।

## ଶିଶୁ ବିବାହ ବ୍ୟବସ୍ଥା

ଭାରତରେ ଝିଅମାନଙ୍କୁ ବର୍ଷେ ଦୁଇବର୍ଷରେ ବିବାହ କରାଇବାର ବହୁ ଦୃଷ୍ଟାନ୍ତ ବି ରହିଛି । ଏପରିକି ମା'ଠାରୁ କ୍ଷୀର ଖାଉଥିବା ଝିଅମାନଙ୍କୁ ପାଞ୍ଚ ଛ' ବର୍ଷର ପୁଅ ସହିତ ବିବାହ କରାଇବାର ବହୁ ଉଦାହରଣ ସମାଜରେ ରହିଛି । ଯଦି କୌଣସି କାରଣରୁ ପୁଅଟି ମରିଯାଏ, ତେବେ ଏହି ଝିଅଟିକୁ ଜୀବନସାରା ବିଧବା ହୋଇ ରହିବାକୁ ପଡେ । ଯୌନ ସମ୍ଭୋଗ କ'ଣ ସେ ଝିଅଟି କେବେ ଜାଣିବାକୁ ସମର୍ଥ ହୁଏ ନାହିଁ । ସେ ଜୀବନ ସାରା ମୁଣ୍ଡର ବାଳକାଟି ନଣ୍ଡା ହୋଇ ରହିବ । ଶାଢ଼ୀରେ ମୁଣ୍ଡକୁ ଘୋଡାଇକରି ରଖିବ । ସେ ସ୍ୱାଦହୀନ ଖାଦ୍ୟ ଖାଇବ ଓ ଏକ ନୀରୋଳା ଜୀବନ ବଞ୍ଚିବ । ଏହାଠାରୁ ବଳି ବଡ ଅତ୍ୟାଚର ରହିଛି କି ?

ଏବେ ବି ଶଙ୍କରାଚାର୍ଯ୍ୟମାନେ ଏହି ପ୍ରଥାକୁ ସମର୍ଥନ କରୁଛନ୍ତି । ବାଲ୍ୟ ବିବାହ ପ୍ରଥା ଯେ ଶାସ୍ତ୍ର ସମ୍ମତ, ସେମାନେ ଏହା କହୁଛନ୍ତି । ଏହି ପ୍ରଥା ବିରୁଦ୍ଧରେ ପେରିୟାର ପ୍ରଥମେ ତାଙ୍କର ଆନ୍ଦୋଳନ କରିଥିଲେ ।

ନିଜ ପରିବାରରେ ଗୋଟିଏ ଘଟଣାପରେ ସେ ଅତ୍ୟନ୍ତ ବିଦ୍ରୋହୀ ହୋଇପଡିଲେ । ତାଙ୍କ ଭାଣିଜୀ ଆମାୟୀକୁ ବାଲ୍ୟ ଅବସ୍ଥାରେ ବିବାହ କରି ଦିଆଗଲା । ପୁଅଟିର ବୟସ ଥିଲା ୧୩ । ତେବେ ଆମାୟୀର ବିବାହର ୨ ମାସ ପରେ ପୁଅଟି ଅସୁସ୍ଥ ହୋଇ ମରିଗଲା । ଝିଅଟି ଜୀବନ, ବିବାହ କ'ଣ ଜାଣିବା ପୂର୍ବରୁ ବିଧବା ହୋଇଗଲା । ଜୀବନ ସାରା ତାଙ୍କୁ ବୈଧବ୍ୟର ଯନ୍ତ୍ରଣା ଭିତରେ ବଞ୍ଚିବାକୁ ହେବ । ସେ ସମୟରେ ଏହା ହିଁ ଥିଲା ଅନେକ ଝିଅଙ୍କର ସ୍ଥିତି । ଝିଅଟିକୁ ଦଶ ବର୍ଷ ବେଳକୁ ସେ ପେରିୟାରଙ୍କ ପାଖକୁ ଆସି କାନ୍ଦିକରି ତା'ର ଦୁଃଖ କହିଲା ।

"ମାମୁଁ, ମୁଁ କ'ଣ ମୋତେ ବିବାହ କରାଇବାକୁ କହିଥିଲି । ତୁମେମାନେ ମୋ ମୁଣ୍ଡ ଉପରେ କାହିଁକି ପଥରଟିଏ ଲଦି ଦେଲ" ! କାନ୍ଦି କାନ୍ଦି ଝିଅଟି ପେରିୟାରଙ୍କ ପାଦତଳେ ପଡିଗଲା । ଭାଣିଜୀ ଆମାୟୀକୁ ତଳୁ ଉଠାଇ ପେରିୟାର ବି କାନ୍ଦି ପକାଇଲେ । ସେ ଏହି ନିଷ୍ଠୁର ପ୍ରଥାକୁ ବଦଳାଇବାକୁ ସଂକଳ୍ପ କଲେ । ଅନେକ ବାଲ୍ୟ ବିଧବା ଝିଅ କିପରି ଦୁଃଖ ଯନ୍ତ୍ରଣା ପାଉଛନ୍ତି ତାହା ଥିଲା ତାଙ୍କର ବାସ୍ତବ ଅନୁଭୂତି ।

ପେରିୟାର ଏହିପରି କେତେ ଝିଅ ରହିଛନ୍ତି ତାହାର ତଥ୍ୟ ସଂଗ୍ରହ କଲେ । ସେହି ପରିସଂଖ୍ୟାନରୁ ବୟସ୍କ ଲୋକମାନେ ପରଂପରା, ଶାସ୍ତ୍ର ନାମରେ କେତେ ଅମାନବିକ ନିଷ୍ଠୁର ପ୍ରଥା ପାଳନ କରୁଛନ୍ତି ତାହାର ଚିତ୍ର ମିଳିଥାଏ । ଏହି ପରିସଂଖ୍ୟାନ ୧୯୨୧ର ଜନଗଣନାରୁ ଜଣାଯାଏ ।

ଏକ ବର୍ଷରୁ କମ୍ ବିଧବା ଝିଅମାନଙ୍କର ସଂଖ୍ୟା ....................୫୯୭

ଏକ ବର୍ଷରୁ ଦୁଇ ବର୍ଷ ମଧ୍ୟରେ ବିଧବା ଝିଅଙ୍କ ସଂଖ୍ୟା .............୪୯୪

| | |
|---|---|
| ଦୁଇରୁ ତିନି ବର୍ଷ ମଧ୍ୟରେ ବିଧବା ଝିଅଙ୍କ ସଂଖ୍ୟା | ୧,୨୫୭ |
| ତିନିରୁ ଚାରି ବର୍ଷ ମଧ୍ୟରେ ବିଧବା ଝିଅଙ୍କ ସଂଖ୍ୟା | ୨,୮୩୭ |
| ଚାରିରୁ ପାଞ୍ଚ ବର୍ଷ ମଧ୍ୟରେ ବିଧବା ଝିଅଙ୍କ ସଂଖ୍ୟା | ୬,୭୦୭ |
| ପାଞ୍ଚରୁ ଦଶ ବର୍ଷ ଭିତରେ ବିଧବା ଝିଅଙ୍କ ସଂଖ୍ୟା | ୮୫,୦୩୭ |
| ଦଶରୁ ପନ୍ଦର ବର୍ଷ ଭିତରେ ବିଧବା ଝିଅଙ୍କ ସଂଖ୍ୟା | ୨,୩୨,୧୪୭ |
| | ୩,୨୯,୦୭୬ |

ପରଂପରାବାଦୀ ଶଙ୍କରାଚାର୍ଯ୍ୟଙ୍କ ପରି ବ୍ୟକ୍ତିମାନଙ୍କ ଯୋଗୁ ଏହା ଥିଲା ଦେଶର ସ୍ଥିତି । ଯେଉଁ ଧର୍ମରେ ଏହିପରି ନିଷ୍ଠୁର ପ୍ରଥାମାନ ରହିଛି ତାହାକୁ ଆମେ କିପରି ଧର୍ମ କହିବା ? ପେରିୟାର ଏହି ଭାବନା ପ୍ରସାର କଲେ ଯେ ପୁଅ ଝିଅ ନିର୍ବିଶେଷରେ ଶାରୀରିକ ଓ ମାନସିକ ସ୍ତରରେ ପରିପକ୍ୱ ହେଲାପରେ ସେମାନଙ୍କ ବିବାହ ବିଷୟରେ ସେମାନେ ନିଜେ ନିଷ୍ପତ୍ତି ନେବେ । ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ ଯୋଗୁ ସରକାର ବିବାହ ବର୍ଷ ସ୍ଥିର କଲେ, ଅଳ୍ପ ବୟସର ପିଲାଙ୍କୁ ବିବାହ କରାଇବା ଦଣ୍ଡନୀୟ ଅପରାଧ ହେଲା ।

ଏମ୍.କେ. ଆଚାର୍ଯ୍ୟଙ୍କ ପରି ବ୍ୟକ୍ତିମାନେ ବର୍ଣ୍ଣାଶ୍ରମ ପ୍ରଥାର ସମର୍ଥକ ଥିଲେ । ସେମାନଙ୍କର ଯୁକ୍ତି ଥିଲା ଯେ ଯଦି ବାଲ୍ୟ ବିବାହ ପ୍ରଥାକୁ ବନ୍ଦ କରାଯାଏ, ତେବେ ସମାଜରୁ ଝିଅମାନଙ୍କର ପବିତ୍ରତା ନଷ୍ଟ ହୋଇଯିବ । ତେଣୁ ସମାଜରେ ବାଲ୍ୟ ବିବାହ ପ୍ରଥା ରହିବା ଯଥାର୍ଥ ।

ପେରିୟାରଙ୍କର ଯୁକ୍ତି ଭିନ୍ନ ପ୍ରକାର ଥିଲା । "ଯଦି ବାଲ୍ୟ ଅବସ୍ଥାରେ ଝିଅମାନଙ୍କର ବିବାହ ନହୁଏ ସେମାନଙ୍କର ପବିତ୍ରତା ନଷ୍ଟ ହୋଇଯିବ ଏକ ଛଳନାତ୍ମକ ବିଶ୍ୱାସ । ଏହି ବ୍ୟକ୍ତିମାନେ ମହିଳା ମାନଙ୍କୁ ଜୀବନସାରା ଦାସତ୍ୱ ଭିତରେ ରଖିବାକୁ ଚାହାନ୍ତି । ବାଲ୍ୟ ବିବାହ ପ୍ରଥା ଝିଅମାନଙ୍କ ପ୍ରତି ଏକ ଅତ୍ୟାଚାର । ଧାର୍ମିକ ରକ୍ଷଣଶୀଳ ଲୋକମାନଙ୍କର ଏହା ଏକ କୌଶଳ । ବିବାହ କ'ଣ ଜାଣିବା

ପୂର୍ବରୁ ଝିଅମାନଙ୍କୁ ପିଲା ବୟସରେ ବିବାହ କରାଇବା ଏକ ଅମାନବିକ ପ୍ରଥା ଓ ଝିଅମାନଙ୍କ ପ୍ରତି ପ୍ରତାରଣା । ଏଥିରେ ଝିଅମାନଙ୍କର କ'ଣ ସୁବିଧା ହୁଏ ? ବରଂ ଏହା ଝିଅମାନଙ୍କ ପ୍ରତି ଏକ ସୀମାହୀନ ପ୍ରବଞ୍ଚନା । ସାଧାରଣ ବିବେକ ଥିବା କୌଣସି ବ୍ୟକ୍ତି ଏହି ନିଷ୍ଠୁର ପ୍ରଥାକୁ ଗ୍ରହଣ କରିବ ନାହିଁ, ପେରିୟାର ଏହି ଭଳି ବିଚ୍ଛର ପ୍ରଚ୍ଛର କରିବାକୁ ଲାଗିଲେ ।

ସରକାର ଏକ ନିୟମ କଲେ ଯେ ଝିଅକୁ ଚଉଦ ବର୍ଷ ଓ ପୁଅକୁ ଅଠର ବର୍ଷ ହୋଇନଥିଲେ ବିବାହ କରାଯାଇପାରିବ ନାହିଁ । ଏହାକୁ ଶାରଦା ଆଇନ୍ କୁହାଯାଏ । ପରେ ସରକାର ଏହି ବୟସ ସୀମାକୁ ବୃଦ୍ଧି କରିଛନ୍ତି । ଏବେ ଝିଅମାନଙ୍କର ବିବାହ ବୟସକୁ ଏକୋଇଶ କରାଯାଇଛି । ଝିଅମାନଙ୍କର ବିବାହ ବୟସ ବୃଦ୍ଧିରେ ପେରିୟାର ପଥପ୍ରଦର୍ଶକ କୁହାଯାଇପାରେ ।

## ବିଧବା ବିବାହ :

ଜଣେ ପୁରୁଷର ଯେପରି ଯୌନ ଆବେଗ ରହେ, ଜଣେ ମହିଳାଙ୍କର ମଧ୍ୟ ସେପରି ଆବେଗ ରହିବା ସ୍ୱାଭାବିକ । ଜଣେ ମହିଳାଙ୍କ ସ୍ୱାମୀଙ୍କର ଦେହାନ୍ତ ପରେ ସେ କାହିଁକି ଜୀବନ ସାରା ବିବାହ ନକରି ବୈଧବ୍ୟ ଭିତରେ ରହିବେ ? ଯଦି ଜଣେ ୬୦ ବା ୭୦ ବର୍ଷ ବିପତ୍ନୀକ ପୁରୁଷ ପୁନଶ୍ଚ ବିବାହ କରିପାରୁଛି, ଜଣେ ବିଧବା ମହିଳା ବା ଝିଅ କାହିଁକି ବିବାହ କରିପାରିବ ନାହିଁ ? ଏକ ମାନବିକ ଦୃଷ୍ଟି ନେଇ ପେରିୟାର ଏହି ପ୍ରଶ୍ନ ଉଠାଇଥିଲେ । ସେ ଏହି ସିଦ୍ଧାନ୍ତରେ ପହଞ୍ଚିଥିଲେଯେ ପୁରୁଷଙ୍କ ପରି ମହିଳାଙ୍କର ମଧ୍ୟ ସେହି ଅଧିକାର ରହିବା ଆବଶ୍ୟକ ।

ସେ ଏହି କଥାକୁ ନିଜ ପାରିବାରିକ ସଂପର୍କ ଭିତରେ ପ୍ରଥମେ ପ୍ରୟୋଗ କଲେ । ତାଙ୍କ ସାନ ଭଉଣୀ ଝିଅ ଆମାୟୀ ଯିଏ ମାତ୍ର ଦଶ ବର୍ଷ ବୟସରେ ବିଧବା ହୋଇଥିଲା ତାହାର ବିବାହ କରାଇବାକୁ ସେ ଚେଷ୍ଟା କଲେ ।

ପେରିୟାର 'କନ୍ନଦ ବଲିଜା'ଜାତିର ବ୍ୟକ୍ତି ଥିଲେ । ତାଙ୍କ ଜାତିରେ ପରଂପରା ଥିଲା ଯେ ଜଣେ ବିଧବା ସର୍ବଦା ନିଜର ଶାଢ଼ୀରେ ନିଜ ମୁଣ୍ଡକୁ ଘୋଡାଇକରି

ରଖିବ । ପେରିୟାର ପ୍ରଥମେ ନିଜ ପରିବାରରୁ ଏହି ଭାବଧାରାକୁ ଦୂର କରିବାକୁ ଚାହିଁଲେ । ଆମାୟୀ ବିଧବା ହେବାର କିଛି ବର୍ଷ ପରେ ଯୌବନାବସ୍ଥା ପ୍ରାପ୍ତ ହେଲେ । ପେରିୟାରଙ୍କ ବାପା ମା ବି ବହୁତ ରକ୍ଷଣଶୀଳ ଥିଲେ । ସମସ୍ତ ପ୍ରତିବଂଧକକୁ ସାମ୍ନାକରି ପେରିୟାର ନିଜ ଭାଣିଜୀର ବିବାହ କରାଇଲେ । ସେ ସମୟରେ ବିଧବା ବିବାହ ଅଚିନ୍ତନୀୟ ବ୍ୟାପାର ଥିଲା, ପୁଣି ଏକ ରକ୍ଷଣଶୀଳ ପରିବାରରେ ଏହା କରିବା ସମ୍ଭବ ନ ଥିଲା । ଏସବୁ ସତ୍ତ୍ୱେ ପେରିୟାର ନିଜେ ଦାୟିତ୍ୱ ନେଇ ଭାଣିଜୀଙ୍କୁ ବିବାହ ଦେଲେ ।

ଜଣେ ବୟସ୍କ ବ୍ୟକ୍ତି ଅନେକ ସାଂସାରିକ ସୁଖ, ଆନନ୍ଦ ଉପଭୋଗ କରିବା ପରେ ବିପତ୍ନୀକ ହେଲେ ପୁଣି ବିବାହ କରିପାରୁଛି । ଏପରିକି ନିଜଠାରୁ ବୟସରେ ବହୁତ ସାନ ଓ ସୁନ୍ଦରୀ ଝିଅ ବି ବିବାହ କରିବାରେ ସାମାଜିକ ସ୍ୱୀକୃତି ପାଇପାରୁଛି । କିନ୍ତୁ ଜଣେ ଝିଅ ତାର ବିନା ଦୋଷରେ ବିଧବା ହେଲେ ମଧ ଯୁବତୀ ଅବସ୍ଥାରେ ବିବାହ କରିପାରୁ ନାହିଁ ଓ ଜୀବନସାରା ସାମାଜିକ କଟକଣା ଭିତରେ ଦୟନୀୟ ଜୀବନ ବଞ୍ଚିବାକୁ ବାଧ୍ୟ ହେଉଛି । ଭାରତୀୟ ସମାଜରେ ଚଳିଆସୁଥିବା ମହିଳାମାନଙ୍କ ପ୍ରତି ଏହି ଅନ୍ୟାୟ ବିରୁଦ୍ଧରେ ପେରିୟାର ଦୃଢ଼ ପ୍ରତିବାଦର ସ୍ୱର ଉଠାଇଲେ ଓ ବିଧବା ବିବାହ ସପକ୍ଷରେ ସାମାଜିକ ସଚେତନତା ସୃଷ୍ଟି କଲେ ।

ଯଦି ପୁରୁଷମାନେ ପରିଣତ ବୟସରେ ବିପତ୍ନୀକ ହୋଇ ବିବାହ କରିବାରେ ପ୍ରତିବନ୍ଧକ ନାହିଁ, ତେବେ କିଶୋରୀ ଯୁବତୀ ଝିଅମାନେ କାହିଁକି ବିଧବା ହୋଇଥିବା ଯୋଗୁ ବିବାହ କରିପାରିବେ ନାହିଁ ? ପେରିୟାର ଏହି ପ୍ରଶ୍ନ ସମସ୍ତଙ୍କୁ ଓ ବିଶେଷକରି ରକ୍ଷଣଶୀଳ ଲୋକମାନଙ୍କୁ ପଚାରିଲେ । ଯେହେତୁ ଅତୀତରେ ଯୁବତୀ ଝିଅମାନଙ୍କୁ ପୁନଃ ବିବାହ କରିବାକୁ ସମାଜ ସ୍ୱୀକୃତି ଦେଉନଥିଲା, କେତେକ ମହିଳା ନିଜର ଜୈବିକ କାମନା ପୂରଣ କରିବାକୁ ଅନ୍ୟ ଯୁବକ ମାନଙ୍କ ସହ ସଂପର୍କ ରଖୁଥିଲେ । ଯଦି ଏହାଦ୍ୱାରା ସେ ଗର୍ଭବତୀ ହୋଇ ସନ୍ତାନ ପ୍ରସବ କରୁଥିଲେ ତେବେ ସେହି ଶିଶୁକୁ ମାରି ଦିଆଯାଉଥିଲା କିମ୍ବା ମହିଳା ଜଣକ କାହା ସାଥିରେ ହେଲେ ଚାଲିଯାଉଥିଲେ । ଜଣେ ବିଧବା ମହିଳା ଯିଏ ବୈବାହିକ ଜୀବନ ଯାପନ କରିବାକୁ

ଆଗ୍ରହୀ ତାଙ୍କୁ କିପରି ସମାଜ ବାରଣ କରିପାରିବ ? ଏହି ମହିଳାମାନଙ୍କୁ ବାରଣ କରିବା ଅର୍ଥ ସେମାନଙ୍କ ପ୍ରତି ଅନ୍ୟାୟ ଆଚରଣ କରିବା ।

ଶାସ୍ତ୍ରକୁ କାହିଁକି ଏତେ ଗୁରୁତ୍ୱ ଦିଆଯିବ ? ଗୋଟିଏ ପ୍ରାଚୀନ ପନ୍ଥା ଓ ଅନ୍ଧବିଶ୍ୱାସକୁ ପରଂପରା କହି ପାଳନ କରିବା ଅଜ୍ଞତା ନୁହେଁ କି ? ଏକ ପରଂପରାକୁ ଅନ୍ଧାନୁଭାବେ ଜାବୁଡ଼ି ଧରିବା କେତେ ଦୂର ନ୍ୟାୟ ସଂଗତ । ଜଣେ ବିଧବାଙ୍କର ବିବାହ କରିବାକୁ ଆଗ୍ରହ ଅଛି କି ନାହିଁ ପ୍ରଥମେ ବୁଝିବା ଆବଶ୍ୟକ । ସେ ବିବାହକରି ପାରିବାରିକ ଜୀବନ ଅତିବାହିତ କରିବାକୁ ଚାହୁଁଥିଲେ ଆମେ ତାଙ୍କୁ ସେଥିରୁ ନିବୃତ୍ତ କରିବା ତାଙ୍କ ପାଇଁ ଘୋର ଅନ୍ୟାୟ । ଏ ବିଷୟରେ ଆମେ ଚିନ୍ତା କରିବା ଆବଶ୍ୟକ ବୋଲି ସେ କହୁଥିଲେ ।

ଜଣେ ମହିଳା ବିଧବା ହେଲେ ସେ ଜୀବନର ଶେଷ ପର୍ଯ୍ୟନ୍ତ ଅସମ୍ମାନିତ ହୋଇ କଟକଣା ଭିତରେ କାହିଁକି ବଞ୍ଚିବେ ? ଏହାର ଉତ୍ତର ଆପଣ କ'ଣ ଦେବେ ? କୌଣସି ଧର୍ମ ବା ଜାତି ଏହାର ଉତ୍ତର ଦେଇଛି କି ? କୌଣସିଥିରେ ଏହାର ବ୍ୟାଖ୍ୟା ରହିଛି କି ? କୌଣସି ଯୁକ୍ତି ବା କାରଣ ନଥାଇ ମହିଳା ବିଧବା ମାନଙ୍କୁ ଏପରି ଅମାନବିକ ବ୍ୟବହାର ଆମେ କାହିଁକି ଦେଖାଇବା ଓ କେତେ ସାମାଜିକ କଟକଣା ସେମାନଙ୍କ ଉପରେ ଲଦିବା ?

ପେରିୟାର ଏ ପ୍ରଶ୍ନ ମଧ୍ୟ ଉଠାଇଥିଲେ – ଜଣଙ୍କର ସନ୍ତାନ ହେଲେ ନାହିଁ ବୋଲି କିମ୍ବା ପୁଅ ହେଲା ନାହିଁ ବୋଲି ଜଣେ ବୟସ୍କ ବ୍ୟକ୍ତି ପୁଣି ବିବାହ କରିବାକୁ ଚାହୁଁଛନ୍ତି । ଅଥଚ ଜଣେ ତରୁଣୀ ନିଜ ସ୍ୱାମୀଙ୍କ ମୃତ୍ୟୁପରେ ପୁନଶ୍ଚ ବିବାହ କରିବାକୁ ବଞ୍ଚିତ ହେଉଛି । ଏହା ଅନ୍ୟାୟ ।

ଇଂରାଜୀ ଭାଷାରେ ସ୍ୱାମୀଙ୍କୁ ହରାଇଥିବା ମହିଳାଙ୍କୁ ୱିଡୋ କୁହାଯାଏ ଓ ପତ୍ନୀଙ୍କୁ ହରାଇଥିବା ପୁରୁଷଙ୍କୁ ୱିଡୋର କୁହାଯାଏ । ଭାରତର ବିଭିନ୍ନ ଭାଷାରେ ସ୍ୱାମୀ ହରାଇଥିବା ମହିଳାଙ୍କୁ ବିଧବା କୁହାଯାଏ, ପତ୍ନୀ ହରାଇଥିବା ପୁରୁଷଙ୍କ ପାଇଁ ଶବ୍ଦ ନାହିଁ । ଏଥିରୁ ଆମର ଲୋକମାନେ କେତେ ସ୍ୱାର୍ଥପର ଓ ଆତ୍ମକୈନ୍ଦ୍ରିକ ତାହା ଜଣାପଡେ ବୋଲି ପେରିୟାର ମନ୍ତବ୍ୟ ରଖିଛନ୍ତି ।

ପେରିୟାର ଏହି ସବୁ ପ୍ରଶ୍ନ ୧୯୧୯-୩୦ ଭିତ୍ତରେ ଉଠାଇଥିଲେ । ସେ ଥିଲେ ଏକ ସଂସ୍କାରିତ ଚେତନାର ବ୍ୟକ୍ତି । ସେ ସମାଜର ଅନେକ ଅମାନବିକ ପ୍ରଥା, ପରମ୍ପରା ଓ କୁସଂସ୍କାର ବିରୁଦ୍ଧରେ ସ୍ୱର ଉଠାଇଥିଲେ ।

## କୁମାରୀତ୍ୱ (Virginity) :

ଅକ୍ସଫୋର୍ଡ ଅଭିଧାନ ଅନୁଯାୟୀ ଯାହାଙ୍କର ଯୌନ ଅଭିଜ୍ଞତା ନାହିଁ ତାଙ୍କୁ ଭର୍ଜିନ କୁହାଯାଏ । କେବଳ ଝିଅମାନେ କାହିଁକି ଭର୍ଜିନ ହୋଇ ରହିବେ, ପୁଅମାନେ ରହିବେ ନାହଁ ? କେବଳ ଝିଅମାନଙ୍କଠାରୁ ଏହା କାହିଁକି ଆଶା କରାଯିବ ! ଭାରତୀୟ ଭାଷାରେ ଭର୍ଜିନର ଅର୍ଥ ହେଉଛି ପତିବ୍ରତା ନାରୀ । ପତିବ୍ରତାର ଅର୍ଥ ହେଉଛି ଜଣେ ନିଜ ସ୍ୱାମୀଙ୍କର ଦାସୀ । ସେ କେବଳ ନିଜ ସ୍ୱାମୀଙ୍କ ବିଷୟରେ ଚିନ୍ତା କରିବେ । ପତିର ଅର୍ଥ ମାଲିକ ବା ସ୍ୱାମୀ । ଯଦି ମହିଳାମାନଙ୍କର ସ୍ୱାଧୀନତାର ପ୍ରଶ୍ନ ଉଠିବ, ତେବେ ମହିଳାମାନଙ୍କ ପାଇଁ ଏକ ନିୟମ ଓ ପୁରୁଷ ମାନଙ୍କ ପାଇଁ ଏକ ଭିନ୍ନ ନିୟମ ରହିବା ଆଦୌ ଯଥାର୍ଥ ନୁହେଁ । ସମସ୍ତଙ୍କ ପାଇଁ ଏକ ପ୍ରକାରର ବିଧି ରହିବା ଦରକର। । ପତିବ୍ରତା ନାଁରେ ଜଣେ ମହିଳା ସ୍ୱାମୀଙ୍କର ସମସ୍ତ ପାଶବିକ ଅତ୍ୟାଚାର ସହିବା ଆଦୌ ସ୍ପୃହଣୀୟ ନୁହେଁ । ଏହି ସବୁର ଅବସାନ ହେବା ଦରକାର ।

ପତିବ୍ରତା ନାଁରେ ହୃଦୟରେ ପ୍ରେମକୁ ଚାପିକରି ରଖିବା ଯଥାର୍ଥ ନୁହେଁ । ଜଣେ ବ୍ୟକ୍ତିଙ୍କ ମନରେ ଯଦି ଜଣେ ମହିଳାଙ୍କ ପ୍ରତି ଦରଦ ଓ ପ୍ରେମ ନ ରହେ ତେବେ ପତିବ୍ରତାର ଦ୍ୱାହି ଦେଇ ସେ ଜବରଦସ୍ତ ନିଜ ସ୍ୱାମୀଙ୍କ ସହ ବଞ୍ଚିବା ମାନବିକ ନୁହେଁ । ସାମାଜିକ ଅତ୍ୟାଚାରର ଅନ୍ତ ହେବା ଆବଶ୍ୟକ ।

ଯେତେବେଳେ ଅନ୍ୟ ଉପରେ ଆଧିପତ୍ୟର ଭାବନା ଦୂରୀଭୂତ ହେବ ଓ କେହି କାହା ଉପରେ ଅତ୍ୟାଚାର କରିବେ ନାହିଁ ସେତେବେଳେ ହିଁ ଯଥାର୍ଥ ପବିତ୍ରତା ସ୍ୱାମୀ -ସ୍ତ୍ରୀ ଭିତରେ ରହିପାରିବ । ପରସ୍ପର ପ୍ରତି ସ୍ୱାଧୀନତାର ମନୋଭାବ ଦ୍ୱାରା ବାସ୍ତବ ପବିତ୍ରତା ରହିବା ସମ୍ଭବ ହେବ, ଯାହାକୁ ପ୍ରାକୃତିକ କୁହାଯାଇପାରିବ ।

ପେରିୟାରଙ୍କ ଭାଷାରେ ଏହା natural varginity. ଏହା ଏକ ବାଧ୍ୟ ବାଧକତାର ସମ୍ବନ୍ଧ ନୁହେଁ, ଏହା ଏକ ସ୍ୱତଃପ୍ରବୃତ୍ତ ମାନବିକ ସମ୍ବନ୍ଧ । ଶକ୍ତିଶାଳୀ ଲୋକମାନେ ଦୁର୍ବଳ ଲୋକମାନଙ୍କୁ ବାଧ କରିବା ଯଥାର୍ଥ ନୁହେଁ । ସୁତରାଂ କୁମାରୀତ୍ୱ କେବଳ ଏକପକ୍ଷୀୟ ହେବା ଉଚିତ ନୁହେଁ, କିମ୍ବା ମହିଳାମାନଙ୍କ ଉପରେ ଲଦି ଦେବା ଯଥାର୍ଥ ନୁହେଁ । ସେମାନଙ୍କ ଉପରେ ଏହା ଲଦି ଦେବା ହେଉଛି ସାମାଜିକ ଅତ୍ୟାଚାର । ବରଂ ଏକ ସହଭାଗିତାର ସମ୍ବନ୍ଧ ଭିତରେ ଯଥାର୍ଥ ପ୍ରେମ ପ୍ରକାଶିତ ହୋଇଥାଏ । ତାହାଦ୍ୱାରା ପରସ୍ପର ପ୍ରତି ପ୍ରେମ ଓ ଶ୍ରଦ୍ଧା ପ୍ରକାଶ ପାଇଥାଏ । ସମାଜ, ଈଶ୍ୱର, ନରକ, ଅତ୍ୟାଚାର, ଅର୍ଥକୁ ଭୟକରି ଜଣେ ଅନ୍ୟପ୍ରତି ସମ୍ମାନ ରଖିବା ହେଉଛି ଛଳନା । ଏହି ପ୍ରକାର ପ୍ରେମ ବା ପ୍ରତିବ୍ରତା କେବଳ ପ୍ରତାରଣା । ପେରିୟାରଙ୍କ ଦୃଷ୍ଟିରେ ଭର୍ଜିନିଟି ହେଉଛି ଆନ୍ତରିକତାପୂର୍ଣ୍ଣ ପରସ୍ପର ପ୍ରତି ପ୍ରୀତି ମନୋଭାବ । ଏଥିରେ ଛଳନା, କପଟତା ବା ଭୟ ନଥାଏ ।

## ପ୍ରେମ

ପ୍ରେମ ଏକ ଅନୁଭବ ଯାହା ଜଣେ ବ୍ୟକ୍ତିଠାରେ ତତ୍କ୍ଷଣାତ ସୃଷ୍ଟି ହୁଏ । କୌଣସି ବ୍ୟକ୍ତି ବା ବସ୍ତୁକୁ ଦେଖିବାଦ୍ୱାରା, କୌଣସି ଶବ୍ଦ ଶୁଣିବା ଦ୍ୱାରା ଯଦି ମନରେ ଆନନ୍ଦର ପୁଲକ ସୃଷ୍ଟି ହୁଏ ଓ ସେହି ଅନୁଭବ ଚାଲିନଯାଉ ବୋଲି ଭାବନା ଉଦ୍ରେକ ହୁଏ ତାହାକୁ ଆମେ ପ୍ରେମ କହିପାରିବା । ଏହା ଅନୁଭବରେ ସୃଷ୍ଟି ହୁଏ । ପେରିୟାର ଏହିପରି ଭାବରେ ପ୍ରେମକୁ ବ୍ୟାଖ୍ୟା କରିଛନ୍ତି । ଧନଲୀପ୍ସା, ଯୌନକାମନା ଓ ବନ୍ଧୁତ୍ୱ ଊର୍ଦ୍ଧ୍ୱରେ ପ୍ରେମ ନୁହେଁ ।

ପତି-ପତ୍ନୀ କେବେହେଲେ ପରସ୍ପରଠାରୁ ବିଚ୍ଛିନ୍ନ ହେବେ ନାହିଁ ବୋଲି ଆମେ କାହିଁକି ଭାବିବା ? ବୈବାହିକ ଜୀବନଦ୍ୱାରା ପତି-ପତ୍ନୀ ସୁଖ ଓ ମାନସିକ ଆନନ୍ଦ ଲାଭକରିବା ଆବଶ୍ୟକ । ଯଦି ଏକତ୍ର ରହିବା ଦ୍ୱାରା ସେମାନେ କୌଣସି ସୁଖ ଅନୁଭବ କରୁନାହାନ୍ତି ସେକ୍ଷେତ୍ରରେ ଏକତ୍ର ରହିବାର କିଛି ଅର୍ଥ ନଥାଏ । ଅର୍ଥାତ୍ ଏକତ୍ର ରହିବାଦ୍ୱାରା ଯଦି ସେମାନଙ୍କ ମଧ୍ୟରେ ଆନନ୍ଦ ରହିବା ପରିବର୍ତ୍ତେ

ଅଶାନ୍ତି ଓ ବିଦ୍ୱେଷ ବୃଦ୍ଧି ପାଉଛି ସେକ୍ଷେତ୍ରରେ ସେମାନେ କାହିଁକି ଏକାଠି ରହିବେ ?

ଭାରତରେ ପତି-ପତ୍ନୀ କେବେହେଲେ ପୃଥକ୍ ହୋଇପାରିବେ ନାହିଁ ଏହି ଭାବନା ଅନେକଙ୍କର ସୁଖକୁ ନଷ୍ଟ କରିଛି । ଆପଣ ଯଦି ଏ କ୍ଷେତ୍ରରେ ମୋର ମତାମତ ନେବାକୁ ଚାହିଁବେ ତେବେ ମୁଁ କହିବି ପ୍ରେମ ଏକ ଅର୍ଥହୀନ ବା ଅସ୍ପଷ୍ଟ ଶବ୍ଦ । ଏହାର ଅର୍ଥ କେବଳ ଇଚ୍ଛା ଓ ଆବଶ୍ୟକତାରେ ସୀମିତ । ଏଥିରେ ପରସ୍ପରର ଲାଭର ପ୍ରଶ୍ନ ଥାଏ , କୌଣସି ପବିତ୍ରତାର ପ୍ରଶ୍ନ ନଥାଏ । ଯେଉଁଠି କିଛି ସ୍ୱାର୍ଥ, କାମନା ବା ଆବଶ୍ୟକତା ଥାଏ ସେଠାରେ ପ୍ରେମ ଥାଏ । କେତେକ ବାପା-ମା ସେମାନଙ୍କର ପୁଅ ମରିଗଲେ ବହୁତ ଦୁଃଖ ଅନୁଭବ କରନ୍ତି । ତେବେ ସେମାନଙ୍କର ଝିଅ ମରିଗଲେ ସେତିକି ଦୁଃଖ ଅନୁଭବ କରନ୍ତି ନାହିଁ । ଜଣେ ରୋଜଗାରକ୍ଷମ ଯୁବକଙ୍କର ଦେହାନ୍ତ ହେଲେ ତାଙ୍କର ପିଲାମାନେ ଅନେକ କଷ୍ଟ ପାଇଥାନ୍ତି । ତେବେ ବାପାଙ୍କର ବୃଦ୍ଧ ଅବସ୍ଥାରେ ଦେହାନ୍ତ ହେଲେ ସେମାନେ ସେତିକି କଷ୍ଟ ପାଇନଥାନ୍ତି । ଜଣେ ମହିଳା ନିଜର ଭୌତିକ ଆବଶ୍ୟକତା ଓ ଆବେଗିକ ସୁଖ ପୂରଣ ପାଇଁ ଜଣେ ପୁରୁଷଙ୍କ ସହିତ ଏକତ୍ର ବାସକରନ୍ତି । ଯଦି ମହିଳାଜଣଙ୍କ ସେପରି କିଛି ପାଇବାର ନଥାଏ ବା ପୁରୁଷଜଣଙ୍କ ତାଙ୍କୁ ଆବେଗିକ ସୁଖ ଦେଇପାରନ୍ତି ନାହିଁ ସେ ସେହି ପୁରୁଷଙ୍କୁ ଭଲ ପାଇପାରିବେ ନାହିଁ । ପେରିୟାରଙ୍କ ମତରେ ପ୍ରେମ କ୍ଷେତ୍ରରେ କିଛି ପ୍ରତ୍ୟାଶା ଥାଏ । ନିୟମ ଦୃଷ୍ଟିରୁ, ସାମର୍ଥ୍ୟ ଯୋଗୁ ବା ଉତ୍ତମ ସ୍ୱଭାବ କାରଣରୁ ଅନ୍ୟକୁ ଭଲପାଇବା କ୍ଷେତ୍ରରେ ପ୍ରୟୋଜନୀୟତା ଥାଏ । ପ୍ରୟୋଜନୀୟତାର ପୂରଣ ଦ୍ୱାରା ପ୍ରେମ ହ୍ରାସ ହୋଇଥାଏ । ସୁତରାଂ ପ୍ରେମ ଆବଶ୍ୟକତା କାରଣରୁ ସୃଷ୍ଟି ହେବା ମନେହୁଏ । ପେରିୟାର ଏହିପରି ପ୍ରେମର ବ୍ୟାଖ୍ୟା କରିଛନ୍ତି ।

## ଛାଡପତ୍ର

ଜଣେ ମହିଳା ତାଙ୍କ ସ୍ୱାମୀଙ୍କୁ ଛାଡପତ୍ର ଦେବାର ଅଧିକାର ପାଇବା ଆବଶ୍ୟକ । କେତେକ ମନେକରନ୍ତି ଯେ ଯଦି ଛାଡପତ୍ରର ଅଧିକାରକୁ ନିୟମ

କରାଯାଏ, ତେବେ ଅଧିକାଂଶ ମହିଳା ସେମାନଙ୍କ ସ୍ୱାମୀଙ୍କ ପାଖରୁ ବିଚ୍ଛିନ୍ନ ହୋଇଯିବେ ଓ ସାମାଜିକ ଜୀବନ ଗଭୀର ବାଧାପ୍ରାପ୍ତ ହେବ । କିନ୍ତୁ ଏପରି ଆଶଙ୍କା ଯଥାର୍ଥ ନୁହେଁ । କାରଣ ଆବଶ୍ୟକତାରୁ ଓ ନିରପତ୍ତା ଦୃଷ୍ଟିରୁ ଯଦିବି ଆଇନ ହୁଏ ଏହା ବ୍ୟର୍ଥ ହେବ ନାହିଁ । ଛାଡପତ୍ରଦ୍ୱାରା ବିଚ୍ଛିନ୍ନ ହେଲେ ତାହାର ପରିଣତି ନେଇ ସେମାନେ ସଚେତନ ହେବେ । ତେଣୁ ଛାଡପତ୍ରଦ୍ୱାରା ସମାଜ ନଷ୍ଟ ହୋଇଯିବ ଏପରି ଭାବିବା ଯଥାର୍ଥ ମନେହୁଏ ନାହିଁ ।

ବରଂ ଛାଡପତ୍ର ବ୍ୟବସ୍ଥା ମହିଳାମାନଙ୍କର ନିରାପତ୍ତାକୁ ସୁଦୃଢ଼ କରିବ । ପତିପତ୍ନୀ ଭିତରେ ସମାନ ଅଧିକାର ରହିବା ଦ୍ୱାରା ସେମାନଙ୍କ ମଧ୍ୟରେ ପ୍ରେମ ଓ ଶ୍ରଦ୍ଧା ରହିପାରିବ ।

ପେରିୟାରଙ୍କ ମତରେ ବହୁ ଦିଗରୁ ବୈବାହିକ ଜୀବନ ଭାରତରେ ମହିଳମାନଙ୍କ ପାଇଁ ଏକ ପ୍ରତିବନ୍ଧକ । ମହିଳାମାନଙ୍କୁ ଉତ୍ପୀଡନରୁ ସୁରକ୍ଷା ଦେବା ପାଇଁ ଛାଡପତ୍ର ଅଧିକାର ସେମାନଙ୍କର ରହିବା ଆବଶ୍ୟକ ।

ବିବାହଦ୍ୱାରା ଜଣେ ମହିଳା ଜଣଙ୍କର ପତ୍ନୀ ହୁଅନ୍ତି । ବେଳେବେଳେ ସେମାନଙ୍କ ମଧ୍ୟରେ ମାନସିକ ମେଳ ନଥାଏ । ସେହିପରି ଜଣେ ବ୍ୟକ୍ତି ଯଦି ତାଙ୍କ ପତ୍ନୀଙ୍କୁ ଦାଂପତ୍ୟ ସୁଖ ଦେଇପାରନ୍ତି ନାହିଁ ବା ସ୍ୱାମୀ ହେବାରେ ସାମର୍ଥ୍ୟ ନଥାଏ ସେକ୍ଷେତ୍ରରେ ଛାଡପତ୍ର ଓ ପୁନଃ ବିବାହ କରିବା ମହିଳାଙ୍କ ପାଇଁ ଉନ୍ମୁକ୍ତ ରହିବା ଆବଶ୍ୟକ । ପେରିୟାର ଏହି ସବୁ ପ୍ରଶ୍ନର ଅବତାରଣା କରିଥିଲେ ।

ଯେତେବେଳ ପର୍ଯ୍ୟନ୍ତ ଜଣେ ବ୍ୟକ୍ତି ଜୀବନଧାରଣ କରିଛି ସେ ଜୀବନକୁ ଉପଭୋଗ କରିବାରେ, ସୁଖ ପାଇବାରେ ଓ ଆନନ୍ଦରେ ରହିବାରେ ଇଚ୍ଛା କରିବା ଯଥାର୍ଥ ମନେହୁଏ । ଏଥିପାଇଁ ଜଣେ ପୁରୁଷ ମହିଳାଙ୍କର ବା ଜଣେ ମହିଳା ପୁରୁଷଙ୍କର ଆବଶ୍ୟକତା ଅନୁଭବ କରନ୍ତି । ଏ କ୍ଷେତ୍ରରେ ଯଦି ପ୍ରତିବଂଧକ ଆସୁଛି ତେବେ ତାହାର ପରିସମାପ୍ତି ହେବା ଦରକାର । ବିବାହ କରିଥିବା ଯୋଗୁ ଜଣେ ଏପରି ଭାବିବା ଯଥାର୍ଥ ନୁହେଁ ଯେ ତାଙ୍କୁ ସବୁଦିନ ପାଇଁ ଓ ସବୁ ପରିସ୍ଥିତିରେ

ଅନ୍ୟ ସହ ରହିବାକୁ ହେବ । ଯଦି ପାରିବାରିକ ଜୀବନରେ ନାନା ଅଶାନ୍ତି ଓ ଯନ୍ତ୍ରଣା ଆସୁଛି ତେବେ ସେକ୍ଷେତ୍ରରେ ପରସ୍ପର ଠାରୁ ପୃଥକ୍ ହେବା ଯଥାର୍ଥ । ଯେଉଁଠି ମାନବିକତା ରହିବ ନାହଁ ବା ଆତ୍ମମର୍ଯ୍ୟାଦା ରହିବ ନାହିଁ ସେଠାରେ ବୈବାହିକ ଜୀବନର କ'ଣ ମୂଲ୍ୟ ରହିଛି । ସୁତରାଂ ଛାଡପତ୍ର ବା ଡିଭୋର୍ସର ଅଧିକାର ମହିଳାମାନଙ୍କର ରହିବା ଆବଶ୍ୟକ ବୋଲି ପେରିୟାର ମତ ଦେଇଛନ୍ତି ।

## ସଂପତ୍ତି ଅଧିକାର

"ମହିଳାମାନଙ୍କର ପ୍ରକୃତି ଦୁର୍ବଳ । ସେମାନେ ପୁରୁଷଙ୍କର ନିରପତ୍ତା ଓ ଯତ୍ନ ଭିତରେ ଜୀବନ ନିର୍ବାହ କରିବେ ।" ଏହି ଭାବଧାରାର ସଂପୂର୍ଣ୍ଣ ପରିବର୍ତ୍ତନ ଆବଶ୍ୟକ ।

ଯଦି ମହିଳାମାନେ ସ୍ୱାଧୀନ ଓ ମୁକ୍ତ ରହିବେ, ତେବେ ସେମାନଙ୍କର ଦାସତ୍ୱ ମନୋଭାବ ଓ ଭୟ ଦୂର ହୋଇପାରିବ । ପୁରୁଷମାନଙ୍କ ପରି ମହିଳାମାନଙ୍କର ସଂପତ୍ତି ଉପରେ କର୍ତ୍ତୃତ୍ୱ ରହିବା ଦରକାର । ସେହି ଅଧିକାର ପାଇଁ ସେମାନଙ୍କୁ ଆନ୍ଦୋଳନ କରିବାକୁ ହେବ । ସେମାନେ ଏହି ଅଧିକାର ପାଇବାଦ୍ୱାରା ସେମାନେ ଏବେ ଯେଉଁ ସବୁ ପ୍ରତିବନ୍ଧକର ସମ୍ମୁଖୀନ ହେଉଛନ୍ତି ସେସବୁ ଦୂର ହୋଇପାରିବ । ବର୍ତ୍ତମାନ ସୁଦ୍ଧା ଏହାକୁ ଅସ୍ୱୀକାର କରିବା ପାଇଁ କେହି ଉପଯୁକ୍ତ କାରଣ ଦେଇପାରି ନାହାନ୍ତି ।

ମହିଳାମାନଙ୍କୁ ଦାସତ୍ୱର ବନ୍ଧନ ଭିତରେ ରଖିବା ପଛରେ ମୁଖ୍ୟ କାରଣ ହେଉଛି 'ସଂପତ୍ତି'ର ଅଧିକାରରୁ ସେମାନେ ବଞ୍ଚିତ ରହିବା । ସୁତରାଂ ଏହି ଅଧିକାର ପାଇଁ ସେମାନଙ୍କୁ ସଂଗ୍ରାମ କରିବାକୁ ହେବ । ଏହା ଏବେର ଆବଶ୍ୟକତା ।

ପିତାମାତା ସେମାନଙ୍କ ସଂପତ୍ତିର ଭାଗ ଯେପରି ପୁଅକୁ ଦେଉଛନ୍ତି, ସେହିପରି ସଂପତ୍ତିର କିଛି ଅଂଶ ଝିଅକୁ ଦେବା ଦରକାର । ଏହା ହେଲେ ମହିଳାମାନେ ଆତ୍ମ-ସମ୍ମାନର ସହ ବଞ୍ଚି ପାରିବେ ।

## ମହିଳାଙ୍କର ଶିକ୍ଷା :

ଗୀତ ଗାଇଲା ବେଳେ ଝିଅମାନଙ୍କୁ ଛୋଟ ବାଡିଧରି ନାଚିବା ପରିବର୍ତ୍ତେ ସେମାନଙ୍କୁ ଖେଳ, କୁଦ, ବକ୍ସିଂ, ରେସଲିଂ ଇତ୍ୟାଦି ଶିଖିବା ପାଇଁ ପ୍ରେରଣାଦେବା ଆବଶ୍ୟକ । ଫଳରେ ଝିଅମାନଙ୍କ ଭିତରେ ସାହସ ଆସିବ ଓ ସେମାନେ ପୁଅ ପିଲାଙ୍କ ସହ ସମାନ ହୋଇପାରିବେ ।

ଝିଅମାନେ ପୁଅମାନଙ୍କ ସହ ଏକାଠି ପାଠପଢ଼ିବା, ସବୁ ବିଷୟରେ ଭାଗ ନେବାଦ୍ୱାରା ସେମାନଙ୍କ ଭିତରୁ ହିନମନ୍ୟତାର ଭାବ ଦୂର ହୋଇପାରିବ । ଫଳରେ ସେମାନେ କେବଳ ସନ୍ତାନ ପ୍ରସବ କରିବେ ଓ ସେମାନଙ୍କର ଲାଳନ ପାଳନ କରିବେ ଏହି ମାନସିକତାରୁ ମୁକ୍ତ ହୋଇପାରିବେ । ଏପରି ନୁହେଁ ଯେ ପୁଅମାନଙ୍କ କାର୍ଯ୍ୟ ଝିଅମାନେ କରିବେ ନାହିଁ, ବା ଝିଅମାନଙ୍କ କାର୍ଯ୍ୟ ପୁଅମାନେ କରିବେ ନାହିଁ । ପୁଅମାନଙ୍କ ପାଇଁ କେତେକ କାର୍ଯ୍ୟ ଉଦ୍ଦିଷ୍ଟ ଓ ଝିଅମାନଙ୍କ ପାଇଁ ଅନ୍ୟ କାର୍ଯ୍ୟ ଉଦ୍ଦିଷ୍ଟ – ଏହା ଯଥାର୍ଥ ଭାବନା ନୁହେଁ । ଏହି ଭାବନାରୁ ଆମେ ମୁକ୍ତ ହେବା ଦରକାର ।

ପୁଅମାନେ ପଢନ୍ତୁ ବା ନ ପଢ଼ନ୍ତୁ, ଝିଅମାନେ ପଢ଼ିବା ଆବଶ୍ୟକ । ଯଦି ଝିଅମାନେ ପଢ଼ିବେ, ମନୁଷ୍ୟମାନଙ୍କ ଭିତରେ ଶୃଂଖଳା ପ୍ରତିଷ୍ଠିତ ହୋଇପାରିବ । ଯେହେତୁ ଝିଅମାନଙ୍କୁ ପାଠପଢ଼ିବାର ସୁଯୋଗ ମିଳି ନାହିଁ ବା ଜ୍ଞାନ ନାହିଁ ସେଥିପାଇଁ ଲୋକମାନଙ୍କ ଭିତରେ ଶୃଂଖଳା ନାହିଁ ବା ସେମାନେ ସେମାନଙ୍କ ଆଚରଣରେ ଶୃଂଖଳିତ ନୁହନ୍ତି । ଏହିପରି ପେରିୟାର ଝିଅମାନଙ୍କର ଶିକ୍ଷାର ଆବଶ୍ୟକତା ବିଷୟ ବ୍ୟାଖ୍ୟା କରିଛନ୍ତି ।

ଝିଅମାନେ ପାଠପଢ଼ି ଶିକ୍ଷିତ ହେଲେ ଅଧିକାଂଶ ସରକାରୀ କର୍ମସଂସ୍ଥାନ କ୍ଷେତ୍ରରେ ସେମାନେ ଚାକିରି କରିପାରିବେ । ମହିଳାମାନେ କର୍ମ କରିବାକୁ ପ୍ରସ୍ତୁତ ହେବା ଆବଶ୍ୟକ । ଏହା ସହ ପୁଅମାନେ ଯେହେତୁ ଶିକ୍ଷିତ ଝିଅ ବିବାହ କରିବାକୁ ଆଗ୍ରହୀ ତେଣୁ ଝିଅମାନେ ପାଠପଢ଼ିବା ଉଚିତ ।

## କର୍ମସଂସ୍ଥାନର ସୁଯୋଗ

ରୁଷରେ ପୋଲିସ ବିଭାଗରେ ଅଧିକାଂଶ ମହିଳା ଚାକିରି କରନ୍ତି । ରୁଷରେ ମହିଳାମାନେ ମଧ୍ୟ ପାଇଲଟ ହେଉଛନ୍ତି ଓ ସେମାନେ ପାରାଚୁଟରେ ତଳକୁ ଆସିବାକୁ ଶିକ୍ଷା କରୁଛନ୍ତି ।

ଭାରତୀୟ ମହିଳାମାନେ ରୁଷମହିଳାମାନଙ୍କୁ ଅନୁକରଣ କରିବା ଦରକାର । ଆମ ଦେଶର ମହିଳାମାନେ ପାଠ ପଢ଼ିବାର ଓ ସଂପତ୍ତି ଅଧିକାରର ସୁଯୋଗ ପାଇଲେ ମଧ୍ୟ ସେମାନେ ଅଳଙ୍କାର ଓ ଶାଢ଼ୀ ପ୍ରତି ବହୁତ ଆକର୍ଷଣ ରଖନ୍ତି । ବରଂ ଆମେ ଆମର ମହିଳାମାନଙ୍କୁ ବୈପ୍ଳବାତ୍ମକ ଚିନ୍ତା ପୋଷଣ କରିବାକୁ ଶିକ୍ଷାଦେବା ଆବଶ୍ୟକ । ନହେଲେ ସେମାନେ ଦ୍ରୋପଦୀ ଓ ସୀତାଙ୍କ ପରି ବଞ୍ଚିବାକୁ ଚାହିଁବେ, ଯେଉଁମାନେ କେବଳ ଆଜ୍ଞାପାଳନକାରୀ ହୋଇଛନ୍ତି । ବରଂ ଝିଅମାନଙ୍କ ଭିତରେ ସ୍ୱାଭିମାନ, ଆତ୍ମମର୍ଯ୍ୟାଦାର ମନୋଭାବ ସୃଷ୍ଟି ହେବା ଆବଶ୍ୟକ ।

ମହିଳାମାନେ ଆତ୍ମସମ୍ମାନର ସହ ଜୀବନ ଧାରଣ କରିବାକୁ ହେଲେ ସେମାନେ ତିନିଟି କଥାରୁ ମୁକ୍ତ ହେବା ଦରକାର । ସେମାନେ କେବଳ ରୋଷେଇ କରିବେ, ଏହି ଭାବନାରୁ ସେମାନେ ମୁକ୍ତ ହେବା ଆବଶ୍ୟକ । ସେମାନେ ସୁନାଗହଣା ପ୍ରତି ସେପରି ଆକର୍ଷଣ ରଖିବେ ନାହିଁ ଓ ସେମାନେ ନିଜର ବିବାହ କ୍ଷେତ୍ରରେ ସ୍ୱାଧୀନ ମତ ରଖିବା ଯଥାର୍ଥ । ସେମାନେ ନିଜର ବିବାହ ପାଇଁ ନିଜେ ନିଷ୍ପତ୍ତି ନେବା ଆବଶ୍ୟକ ।

ଅତୀତର ଅନେକ ଧାରଣାରୁ ସେମାନେ ମୁକ୍ତ ହେବା ଉଚିତ । ମହିଳାମାନେ ଅନେକ କାର୍ଯ୍ୟ ପାଇଁ ଉପଯୁକ୍ତ ନୁହନ୍ତି ସେହି ଭାବନା ଦୂରହେବା ଦରକାର । ସୁଯୋଗ ପାଇଲେ ସେମାନେ ଯେକୌଣସି କାର୍ଯ୍ୟ କରିପାରିବେ । ଏହାର ବହୁ ଉଦାହରଣ ଆମେ ସମ୍ମୁଖରେ ଦେଖିପାରିବା ।

କୌଣସି ବିବାହ ବା ଉତ୍ସବ ବେଳେ ଯଦି ହଜାରେ ଲୋକଙ୍କ ପାଇଁ ରୋଷାଇ କରିବାକୁ ହେଉଛି ଏହା ପୁରୁଷମାନେ କରୁଛନ୍ତି । ଆମ ଘରମାନଙ୍କରେ

କେବଳ ମହିଳାମାନେ କାହିଁକି ଖାଲି ରୋଷାଇ କରିବେ, ପୁରୁଷମାନେ କରିବେ ନାହିଁ ।

ପ୍ରତ୍ୟେକ ମହିଳା କିଛି ଉପାର୍ଜନ କରିବାକୁ କିଛି ଶିକ୍ଷା କରିବା ଦରକାର । ଯଦି ଜଣେ ମହିଳାଙ୍କର କିଛି ରୋଜଗାର କରିବାର ସାମର୍ଥ୍ୟ ରହେ, ତେବେ ପରିବାରରେ ସେ ଏକ ଦାସୀ ଭଳି ତାଙ୍କ ସ୍ୱାମୀଙ୍କ ଦ୍ୱାରା ଗଣ୍ୟ ହେବେ ନାହିଁ । ୧୯୩୦-୧୯୪୦ବେଳକୁ ମହିଳାମାନଙ୍କୁ ସ୍ୱାବଲମ୍ବୀ କରିବାକୁ ପେରିୟାର ଚିନ୍ତା ପ୍ରକଟ କରିଥିଲେ । ସେ ମହିଳାମାନଙ୍କର ସ୍ୱାଧୀନତା ଓ ବିକାଶ ସଂପର୍କରେ ଗମ୍ଭୀର ଭାବେ ଚିନ୍ତା କରିଥିଲେ ।

## ସନ୍ତାନ ପ୍ରସବ :

କେବଳ ସନ୍ତାନ ଜନ୍ମ କରିବା ଭିତରେ ମହିଳାମାନେ ଦାସୀ (Slave) ହୋଇଯା'ନ୍ତି । ସେ ସନ୍ତାନ ଜନ୍ମ କରିବାର ଦାୟିତ୍ୱରୁ ମୁକ୍ତ ହେବାକୁ ମହିଳାମାନଙ୍କୁ ପରାମର୍ଶ ଦେଉଥିଲେ । ସନ୍ତାନ ଜନ୍ମ କରିବାର ଦାୟିତ୍ୱ ସେମାନଙ୍କର ରହିଥିବା କାରଣରୁ ମହିଳାମାନେ ପୁରୁଷମାନଙ୍କ ବ୍ୟତୀତ ବଞ୍ଚିପାରିବେ ନାହିଁ ବୋଲି ସେମାନେ ଭାବିଥାନ୍ତି । ପୁରୁଷମାନଙ୍କର ଏହି ଦାୟିତ୍ୱ ନଥିବାରୁ ସେମାନେ ମୁକ୍ତ ଭାବରେ ବଞ୍ଚିପାରନ୍ତି । ସନ୍ତାନ ପ୍ରସବ କରିବାର ଦାୟିତ୍ୱ ଯୋଗୁ ମହିଳାମାନେ ପୁରୁଷମାନଙ୍କ ଉପରେ ନିର୍ଭର ହୋଇ ବଞ୍ଚିବାକୁ ବାଧ୍ୟ ହୋଇଥାନ୍ତି । ଏହି ଦୃଷ୍ଟିରୁ ପୁରୁଷ ପ୍ରାଧାନ୍ୟ ବ୍ୟବସ୍ଥା ସମାଜରେ ରହିଛି । ସୁତରାଂ ନିଜର ସ୍ୱାଧୀନତା ପାଇଁ ମହିଳାମାନେ ସନ୍ତାନ ଜନ୍ମ କରିବାର ମନୋଭାବ ଦୂରକରିବା ଆବଶ୍ୟକ ।

ଯେହେତୁ ପୂର୍ବରୁ ଏପରି କେହି କହିନାହାନ୍ତି ଓ ମୁଁ ଏପରି କହୁଛି ଲୋକମାନେ ଏହାକୁ ମୋର ଅଜ୍ଞତା ବୋଲି କହିପାରନ୍ତି । ତେବେ ଏହା ହେଉଛି ବାସ୍ତବ ସ୍ୱାଧୀନତା ଉପଭୋଗ କରିବାର ବାଟ । ଏଥିରେ ତାଙ୍କର ବିଶ୍ୱାସ ଦୃଢ଼ ବୋଲି ପେରିୟାର କହିଛନ୍ତି ।

କେତେକ କହିପାରନ୍ତି ଯେ ଏହାଦ୍ୱାରା ମାନବଜାତିର ବିକାଶ ବାଧାପ୍ରାପ୍ତ ହେବ । ଏହାଫଳରେ ମନୁଷ୍ୟ ସମାଜର ବୃଦ୍ଧି ହେବ ନାହିଁ । ଯଦି ମନୁଷ୍ୟ ସମାଜର ବୃଦ୍ଧି ହେବନାହିଁ, ତେବେ ଏଥିରେ ମହିଳାମାନେ କ'ଣ ହରାଇବାକୁ ଯାଉଛନ୍ତି ? କିମ୍ବା ଯେଉଁମାନେ ଏପରି କହୁଛନ୍ତି ସେମାନଙ୍କର କ'ଣ ଅସୁବିଧା ହେଉଛି ! ଏକଥା ପେରିୟାର ପଚାରିଥାନ୍ତି ।

ଯଦି ମହିଳାମାନେ ସନ୍ତାନ ପ୍ରସବ କରିବାକୁ ଅପରିହାର୍ଯ୍ୟ ମନେକରନ୍ତି, ତେବେ ସେମାନେ ଗୋଟିଏ ଦୁଇଟି ପିଲା ଭିତରେ ସୀମିତ ରହିବା ଆବଶ୍ୟକ । ତେବେ ବିବାହର ପାଞ୍ଚ/ଛ ବର୍ଷପରେ ସେମାନେ ଏହା କରିପାରନ୍ତି । ସନ୍ତାନର ସମସ୍ତ ଦାୟିତ୍ୱ କେବଳ ମା'ନେବା ଯଥାର୍ଥ ନୁହେଁ । ଯଦି ତାର ସାମର୍ଥ୍ୟ ଥାଏ ତେବେ ସେ ଏକ ଧାଇ ରଖି ପିଲାଟିର ଯତ୍ନ ନେଇପାରେ । ପିଲାଟିକୁ ଛୁଆ ବେଳୁ ଶୃଙ୍ଖଳା, ଚରିତ୍ର, ବୈଜ୍ଞାନିକ ମନୋଭାବ ଓ ନୈତିକତା ଶିକ୍ଷା ଦେବା ଆବଶ୍ୟକ ।

## ବେଶ୍ୟାବୃତ୍ତି ।

ଯଦି ଆମ ଦେଶରେ ଚରିତ୍ର ନିର୍ମାଣକୁ ପ୍ରାଧାନ୍ୟ ଦିଆଯିବ ଓ ବେଶ୍ୟାବୃତ୍ତିର ମୂଳୋତ୍ପାଟନ ପାଇଁ ପ୍ରୟାସ ହେବ, ତେବେ କେତେକ ପ୍ରଥାର ବିଲୋପ ଆବଶ୍ୟକ । ବିଧବାତ୍ୱ ଭାବନାକୁ ଓ ଦୃଷ୍ଟିଭଙ୍ଗୀକୁ ଦୂର କରିବାକୁ ହେବ । ଆମେ ଯଦି ବେଶ୍ୟାବୃତ୍ତି ଭାବନାଟିକୁ ଦେଖିବା ଏଥିରୁ ଏହି ଚିତ୍ର ଆସେ ଯେ ମହିଳାମାନେ ହେଉଛନ୍ତି ଦାସୀ (Slaves) । ବେଶ୍ୟାବୃତ୍ତି କେବଳ ମହିଳାମାନେ କରନ୍ତି । ପୁରୁଷମାନେ ବେଶ୍ୟା ହୁଅନ୍ତି ନାହିଁ । ଯେତେବେଳେ କୌଣସି ବ୍ୟକ୍ତିଙ୍କୁ ଜଣେ ବେଶ୍ୟାର ସନ୍ତାନ ବୋଲି କୁହାଯାଏ, ସେଥିରେ ସେ ଆଘାତପ୍ରାପ୍ତ ହୁଅନ୍ତି । କିନ୍ତୁ ଯଦି ତାଙ୍କୁ ପୁରୁଷ ବେଶ୍ୟା (Male Prostitute)ର ସନ୍ତାନ କୁହାଯାଏ ତେବେ ସେ କଷ୍ଟ ଅନୁଭବ କରନ୍ତି ନାହିଁ । ଯଦି ଜଣେ ଜାଣନ୍ତି ଯେ ତାଙ୍କ ମାଆ ବହୁ ପୁରୁଷଙ୍କ ସହିତ ଶାରୀରିକ ସଂପର୍କ ରଖିଛନ୍ତି ତେବେ ସେ ସେଥିରେ କ୍ରୋଧାନ୍ୱିତ ହୁଅନ୍ତି । କିନ୍ତୁ ଯଦି ଜାଣନ୍ତି ଯେ ତାଙ୍କ ବାପା ବହୁ ମହିଳାଙ୍କ ସହ ଶାରୀରିକ ସଂପର୍କ ରଖିଛନ୍ତି ତେବେ ସେ ଏତେ ଆଘାତ ପା'ନ୍ତ ନାହିଁ । ଏହି ବ୍ୟକ୍ତିମାନେ ବରଂ ତାଙ୍କ ବାପାଙ୍କ କାର୍ଯ୍ୟ

ପାଇଁ ଉଦାସୀନ ରହନ୍ତି । ଏହି ବାସ୍ତବ ଅନୁଭୂତିରୁ ଓ ନାରୀ ପୁରୁଷ ଭିତରେ ସାମାଜିକ ଭେଦଭାବରୁ ବେଶ୍ୟାବୃତ୍ତିକୁ ମହିଳା-ବେଶ୍ୟାବୃତ୍ତି ବୋଲି ଆମ ସମାଜରେ ନିଆଯାଏ ବୋଲି ପେରିୟାର ଭାବିଛନ୍ତି ।

ଭାରତରେ ବେଶ୍ୟାବୃତ୍ତିର ବିକାଶ କ୍ଷେତ୍ରରେ ପୁରୁଷମାନଙ୍କର ଔଦ୍ଧତ୍ୟ ରହିଛି । ମହିଳାମାନେ କେବଳ ପତିବ୍ରତା (Chastity) ରକ୍ଷାକରିବା ସମାଜ ଚାହେଁ । ପୁରୁଷମାନେ ମଧ୍ୟ ଶୁଦ୍ଧତା ରକ୍ଷାକରିବା ଦରକାର ଏହାକୁ ସମାଜ ଗୁରୁତ୍ୱ ଦିଏ ନାହିଁ । ଏହି କାରଣରୁ ମହିଳାମାନେ ବେଶ୍ୟାବୃତ୍ତିକୁ ପରିସ୍ଥିତିରେ ପଡି ବୃତ୍ତି ଭାବରେ ଗ୍ରହଣ କରିଛନ୍ତି । ମହିଳାମାନଙ୍କଠାରୁ ଯାହା ଆଶା କରାଯାଏ, ତାହା ପୁରୁଷମାନଙ୍କ ଠାରୁ ଆଶା କରାଯାଉ ନଥିବା କାରଣରୁ ସମାଜରେ ବେଶ୍ୟାବୃତ୍ତି ମହିଳାମାନଙ୍କ ପାଖରେ ରହିଥିବା ଦେଖାଯାଏ । ବେଶ୍ୟାବୃତ୍ତି ପଶ୍ଚାତରେ ଅନ୍ୟାନ୍ୟ କାରଣ ମଧ୍ୟ ରହିଛି । ଆମ ସମାଜରେ ପୁଅ ଝିଅଙ୍କ ଭିତରେ କୌଣସି ପୂର୍ବରୁ ଶ୍ରଦ୍ଧା ବା ସମ୍ବନ୍ଧ ସୃଷ୍ଟି ନହୋଇ ବିବାହ ହୁଏ । ମହିଳାମାନଙ୍କର ଛାଡପତ୍ର ଦେବାର କିଛି ଅଧିକାର ନଥାଏ । ସେହିପରି ମହିଳାମାନଙ୍କର ସଂପତ୍ତିଗତ ଅଧିକାର ମଧ୍ୟ ସମାଜରେ ନାହିଁ । ଏସବୁ କାରଣରୁ ସମାଜରେ ବେଶ୍ୟାବୃତ୍ତି ରହିବା ମନେହୁଏ ।

ଯେତେବେଳେ ପୁଅ-ଝିଅ କୌଣସି ବୁଝାମଣା ବା ପ୍ରେମ ନଥାଇ ବିବାହ କରନ୍ତି, ସେତେବେଳେ ହୁଏତ ସେମାନଙ୍କ ମଧ୍ୟରେ ଯୌନ ଆବେଗ ଯଥାର୍ଥ ଭାବରେ ନଥାଇପାରେ । ସେପରି ହେଲେ ମହିଳା ନିଜର ଯୌନ ଆବେଗକୁ ଚରିତାର୍ଥ କରିବାକୁ ବେଶ୍ୟାବୃତ୍ତିର ଆଶ୍ରୟ ନେଇପାରନ୍ତି । ସେହିପରି ଜଣେ ଯୁବତୀଙ୍କୁ ବିଧବା କହି ତାଙ୍କ ଆବେଗରୁ ତାଙ୍କୁ ବଞ୍ଚିତ କରିବାଦ୍ୱାରା ମଧ୍ୟ ବେଶ୍ୟାବୃତ୍ତି ସମାଜରେ ସୃଷ୍ଟି ହୁଏ । ନିଜର ସ୍ୱାମୀଙ୍କୁ ଛାଡ଼ପତ୍ର ନଦେଇପାରି ଜଣେ ମହିଳା ବି ବେଶ୍ୟାବୃତ୍ତିର ଆଶ୍ରୟ ନେଇପାରନ୍ତି । ଯଦି ଜଣେ ମହିଳାଙ୍କର ତାଙ୍କ ବାପାଙ୍କ ପାଖରୁ କିମ୍ବା ତାଙ୍କ ସ୍ୱାମୀଙ୍କ ପାଖରୁ କିଛି ସଂପତ୍ତି ପାଇବାର ଆଇନଗତ ଅଧିକାର ନରହେ, ତେବେ ନିଜର ବଞ୍ଚିବା ପାଇଁ ସେ ବେଶ୍ୟାବୃତ୍ତିର ଆଶ୍ରୟ ନେଇପାରନ୍ତି ।

ଆମେ ଯଦି ସମାଜରୁ ବେଶ୍ୟାବୃତ୍ତିର ମୂଳୋତ୍ପାଟନ କରିବାକୁ ଚାହିଁବା ତେବେ ଉପରୋକ୍ତ ସମସ୍ୟାମାନଙ୍କର ସମାଧାନ ପାଇଁ ଆମକୁ ଗୁରୁତ୍ୱ ଦେବାକୁ ହେବ । କେବଳ ଆଇନଦ୍ୱାରା ସାମାଜିକ ସମସ୍ୟା ଦୂରୀକରଣ ସମ୍ଭବ ନୁହେଁ ।

## ଦେବଦାସୀ ପ୍ରଥାର ବିଲୋପନ

ଭାରତୀୟ ସମାଜରେ ଦେବଦାସୀ ପ୍ରଥା ବୋଲି ଏକ ପ୍ରଥା ରହିଛି । ମନ୍ଦିରମାନଙ୍କରେ କେତେକ ମହିଳାଙ୍କୁ ମଙ୍ଗଳ ସୂତ୍ର ଦେଇ ସେମାନଙ୍କୁ ଦେବଦାସୀ କରାଯାଏ । ସେମାନେ ସର୍ବସାଧାରଣଙ୍କ ସଂପତ୍ତି ହୋଇଯାନ୍ତି । ସେମାନେ ବେଶ୍ୟାବୃତ୍ତିରେ ସଂପୃକ୍ତ ହୁଅନ୍ତି । ଏହି ଜଘନ୍ୟ ପ୍ରଥାଟି ବହୁଦିନରୁ ପ୍ରଚଳିତ ରହିଛି । ନିର୍ଦ୍ଦିଷ୍ଟ ଜାତି ବା ଗୋଷ୍ଠୀର ଝିଅମାନଙ୍କୁ ଦେବଦାସୀ କରାଯାଏ । ଏ ବିଷୟରେ କୌଣସି ରାଜା ବା ବିଶିଷ୍ଟ ନାଗରିକ ଏହି ପ୍ରଥା ବିରୁଦ୍ଧରେ ମୁଣ୍ଡ ପୂରାଇ ନାହାନ୍ତି ।

ଯେଉଁ ଜାତିର ଝିଅମାନେ ଦେବଦାସୀ ହୁଅନ୍ତି ସେମାନେ ଏହାକୁ ସ୍ୱାଗତ କରିବା ଯଥାର୍ଥ ନୁହେଁ । ସେମାନଙ୍କ ଉପରେ ଏହି ବ୍ୟବସ୍ଥାକୁ ଲଦି ଦିଆଯାଏ । ସେମାନେ ଏହା ବିରୁଦ୍ଧରେ ସ୍ୱର ଉଠାଇପାରନ୍ତି ନାହିଁ । ବ୍ୟବସ୍ଥାଟି ସେମାନଙ୍କ ଉପରେ ଲଦି ଦିଆଯାଏ, ଯେପରି ସତୀଦାହ ପ୍ରଥାକୁ ମହିଳାମାନଙ୍କ ଉପରେ ଲଦି ଦିଆଯାଇଥିଲା । ପ୍ରତିବାଦର ସ୍ୱର ଉଠାଇ ପାରୁନଥିବା ମହିଳାଙ୍କ ଉପରେ ଏସବୁ ଥିଲା ସାମାଜିକ ଅତ୍ୟାଚାର । ବ୍ରିଟିଶ ସରକାର ସମୟରେ ରାମମୋହନ ରାୟଙ୍କ ଉଦ୍ୟମ ଫଳରେ ସତୀଦାହ ପ୍ରଥାର ବିଲୋପ ହେଲା । ସରକାର ଏଥି ପାଇଁ ଆଇନ କଲେ । ସେହିପରି ଦେବଦାସୀ ପ୍ରଥାକୁ ଆଇନଦ୍ୱାରା ବନ୍ଦ କରିବା ଯଥାର୍ଥ ମନେହୁଏ । ଏ କ୍ଷେତ୍ରରେ ଡ.ମୁତୁଲକ୍ଷ୍ମୀ ରେଡିଙ୍କର ପ୍ରୟାସ ଯୋଗୁ ସରକାର ଦେବଦାସୀ ପ୍ରଥା ବିରୁଦ୍ଧରେ ଆଇନକଲେ ଓ ଏହି ପ୍ରଥା ବନ୍ଦ ହେଲା ।

## ମହିଳାଙ୍କ ସ୍ୱସୌନ୍ଦର୍ଯ୍ୟକୁ ଗୁରୁତ୍ୱ

ମହିଳାମାନେ ସାଧାରଣତଃ ଭାବନ୍ତି ଯେ ସେମାନଙ୍କ ସ୍ୱାମୀ ବା ଅନ୍ୟମାନଙ୍କ ଦୃଷ୍ଟିରେ ସେମାନେ ସୁନ୍ଦର ଦେଖାଯିବା ଉଚିତ । ଅନ୍ୟମାନଙ୍କ ଦୃଷ୍ଟିରେ ସେମାନେ

ସୁନ୍ଦର ଦେଖାଯିବାକୁ ସେମାନେ ଦାମିକା ଶାଢ଼ୀ ଓ ଗହଣା ପିନ୍ଧିବାକୁ ଭଲ ପାଆନ୍ତି । ବରଂ ସେମାନଙ୍କର ଜ୍ଞାନ ଓ ଦକ୍ଷତା ସମାଜ ପାଇଁ ଉପଯୋଗୀ ହୋଇପାରିବ । ଏହା ଉପରେ ବରଂ ସେମାନେ ପ୍ରାଧାନ୍ୟ ଦେବା ଆବଶ୍ୟକ । ଏହା ଭୁଲିଯିବା ସେମାନଙ୍କ ପାଇଁ ଦୁଃଖଦାୟକ । ମହିଳାମାନେ କେବଳ ନିଜର ସୌନ୍ଦର୍ଯ୍ୟକୁ ପ୍ରାଧାନ୍ୟ ଦେବା କାରଣରୁ ସେମାନେ ନିଜର ଆତ୍ମସମ୍ମାନ ହରାଇଛନ୍ତି ଓ ଅନ୍ୟ ଦୃଷ୍ଟିରେ କେବଳ ଶାରୀରିକ ଆକର୍ଷଣର ବସ୍ତୁ ହୋଇଛନ୍ତି । ଜଣେ ମହିଳାଙ୍କର କୃତ୍ରିମ ସୌନ୍ଦର୍ଯ୍ୟକୁ ଦେଖିବା ପରିବର୍ତ୍ତେ ଅନ୍ୟମାନେ ତାଙ୍କର ଚରିତ୍ରକୁ ସମ୍ମାନ କରିଥାନ୍ତି । ଜଣେ ମିହଳାଙ୍କର କୃତ୍ରିମ ସୌନ୍ଦର୍ଯ୍ୟ ଦେଖିଲେ ଅନ୍ୟମାନେ ତାଙ୍କ ବିଷୟରେ ମନ୍ଦ ଧାରଣା ପୋଷଣ କରିବେ । ମହିଳାମାନେ ପରିଷ୍କାର ପରିଚ୍ଛନ୍ନ ରହିବା ଦରକାର । ପ୍ରାକୃତିକତାକୁ ପରିହାର କରି ଜଣେ ସୁନ୍ଦର ଦିଶିବା ପାଇଁ କାହିଁକି ଅର୍ଥ ଓ ସମୟ ବ୍ୟୟ କରିବେ ?

କାନ, ନାକ ଫୋଡି ସେଥିରେ ବିଳକରି କିଛି ଲଗାଇବା ଦ୍ୱାରା ମହିଳା ନିଜର ଆତ୍ମସମ୍ମାନ ବୃଦ୍ଧି କରନ୍ତି ନାହିଁ ।

ସମାଜ ଦୃଷ୍ଟିରେ ସମ୍ମାନର ଅଧିକାରୀ ହେବାକୁ ହେଲେ ସ୍ୱ ସୌନ୍ଦର୍ଯ୍ୟବୋଧ ପ୍ରତି କାମନା ଦୂର ହେବା ଆବଶ୍ୟକ । ନିଜର ସୌନ୍ଦର୍ଯ୍ୟକୁ ବଢ଼ାଇବାକୁ ଯେଉଁ ସମୟ ଓ ଅର୍ଥ ଖର୍ଚ୍ଚ ହୁଏ ତାହାକୁ ଯଦି ନିଜର ସାଂସାରିକ ଜ୍ଞାନ ଓ କିଛି ସାମର୍ଥ୍ୟ ବିକାଶରେ ଖର୍ଚ୍ଚ କରାଯିବ ତେବେ ତାହା ଅନ୍ୟ ଦୃଷ୍ଟିରେ ମହିଳାଙ୍କର ସମ୍ମାନ ବୃଦ୍ଧିକରିବ । ଅନ୍ୟମାନଙ୍କ ଦୃଷ୍ଟିରେ ମୁଁ କିପରି ସୁନ୍ଦର ଦେଖାଯିବି, ଏକ ଭ୍ରମାତ୍ମକ ଭାବନା ଓ ଏହାଦ୍ୱାରା ମହିଳା ଜଣଙ୍କ କିଛି ଉପକୃତ ହୁଅନ୍ତି ନାହିଁ ।

ନିଜର ଗହଣା ଓ ଶାଢ଼ୀ କ୍ରୟ କରିବାରେ ଜଣେ ଯେଉଁ ଅତ୍ୟଧିକ ଅର୍ଥ ବ୍ୟୟ କରନ୍ତି ତାହାକୁ ଏକ ବ୍ୟାଂକରେ ରଖିବା ଦ୍ୱାରା ସେଥିରୁ ଯେଉଁ ଅର୍ଥ ସୁଧ ଆକାରରେ ମିଳିବ ତାହାକୁ ଅନ୍ୟ କାମରେ ବିନିଯୋଗ କରାଯାଇପାରିବ । ନିଜ ପିଲାଙ୍କର ଯତ୍ନ ପାଇଁ କିମ୍ବା ଘରେ ଜଣେ ରୋଷେୟା ନିଯୁକ୍ତ କରି ଜଣେ ମହିଳା କିଛି ମହତ୍ତର କାର୍ଯ୍ୟରେ ନିଜକୁ ନିୟୋଜିତ କରିପାରିବେ ।

ମହିଳାମାନେ ସମାଜରେ ବା ଦେଶରେ ନ୍ୟୂନ ହେବାର କାରଣ ହେଉଛି ସିନେମାର ପ୍ରଭାବ । ମହିଳାମାନେ ସିନେମାରେ ଅଭିନେତ୍ରୀମାନେ ଯେଉଁ ପ୍ରକାରର ପୋଷାକ ଓ ଗହଣା ପିନ୍ଧୁଚନ୍ତି ତାକୁ ଅନୁକରଣ କରିବାକୁ ଚେଷ୍ଟା କରୁଛନ୍ତି । ସିନେମାରେ ଦେଖୁଥିବା ଷ୍ଟାଇଲମାନଙ୍କୁ ଅନ୍ଧାନୁଭାବେ ଆମର ମହିଳାମାନେ ଅନୁକରଣ କରିବାକୁ ଆଗ୍ରହ ଦେଖାଉଛନ୍ତି । ବହୁ ଦିନରୁ ଅଳଙ୍କାର ପିନ୍ଧିବାଦ୍ୱାରା ମହିଳାମାନେ ସୁନ୍ଦର ଦିଶନ୍ତି ବୋଲି ସମାଜରେ ଧାରଣା ରହିଛି । ଏକ ସମୟରେ ଅଳଙ୍କାର କିଣିବାକୁ ଏକ ପ୍ରକାରର ସଂଚୟ ବୋଲି ଗ୍ରହଣ କରାଯାଉଥିଲା ।

ଅଳଙ୍କାରମାନ  ହାତର ବେଡି ସଦୃଶ । ମହିଳାମାନେ ଅଳଙ୍କାର ଓ ଦାମି ପୋଷାକରେ ଯାହା ବ୍ୟୟ କରନ୍ତି ସେମାନଙ୍କ ପାଇଁ କିମ୍ୱା ସେମାନଙ୍କର ପରିବାର ପାଇଁ ଉପଯୋଗୀ ନୁହେଁ । ଏହା କେବଳ ଦୋକାନୀମାନଙ୍କର ଲାଭର ବିଷୟ ଯେଉଁମାନେ ସେସବୁ ବିକ୍ରି କରନ୍ତି ।

ଅଳଙ୍କାରରେ ବ୍ୟୟ କରିବା ଭାରତୀୟ ଓ ବିଶେଷକରି ଦକ୍ଷିଣ ଭାରତୀୟ ମାନଙ୍କର ଏକ ଅଭ୍ୟାସ । ଧନୀ ଓ ମଧ୍ୟବିତ୍ତ ପରିବାରର ମହିଳାମାନଙ୍କ କ୍ଷେତ୍ରରେ ଏହା ସାଧାରଣତଃ ଦେଖାଯାଏ ।

ଗୁଡାଏ ଗହଣା ପିନ୍ଧି ବାହାରକୁ ଯିବାରେ ବିପଦ ମଧ୍ୟ ରହିଥାଏ । ଘରେ ଗୁଡାଏ ଗହଣା ଥିଲେ ଭୟରେ ରାତିରେ ନିଦ ହୁଏ ନାହିଁ, ବାହାରକୁ ଗଲେ ମନ ଭିତରେ ଭୟ ରହିଥାଏ । ତେବେ ଗହଣା କିଣିବା ବେଳେ ମହିଳାମାନେ ସେ ବିଷୟରେ ଭାବିବା ଜରୁରୀ ମନେହୁଏ ।

## ଧର୍ମର ପରଦା ପ୍ରଥା :

କେତେକ ଧର୍ମରେ ଏକ ପ୍ରଥା ରହିଛି ଯେ ମହିଳାମାନେ ସର୍ବସାଧାରଣ ସ୍ଥାନରେ ତାଙ୍କର ମୁହଁ ଦେଖାଇପାରିବେ ନାହିଁ । ଏଣୁ ସେମାନ ଏକ କଳା ବା ରଙ୍ଗୀନ ପରଦାଦ୍ୱାରା ମୁହଁ ଓ ପୋଷାକକୁ ଘୋଡାଇ ରଖନ୍ତି ।

ପ୍ରତ୍ୟେକ ଧର୍ମର ପ୍ରଥାମାନଙ୍କୁ ପୁରୁଷମାନେ ସ୍ଥିର କରିଛନ୍ତି । କୌଣସି ପ୍ରଥା ବା ରୀତିକୁ ଅନ୍ଧ ଭାବେ ଅନୁସରଣ କରିବା ହେଉଛି ଏକ ଦାସତ୍ୱ । ଏକ ସମୟରେ ଭାରତର ଲୋକମାନେ ସେମାନଙ୍କ ମୁଣ୍ଡରେ ପର ପିନ୍ଧୁଥିଲେ । ମୁଣ୍ଡର ଚୁଟି କାଟି ଲଣ୍ଡା ହେବା, ଦାଢ଼ି ରଖିବାର ରୀତି ବିଭିନ୍ନ ଧର୍ମରେ ରହିଛି । ସେହି ରୀତିରେ ଏବେ ପରିବର୍ତ୍ତନ ହୋଇଗଲାଣି । ଲୋକମାନେ ଏବେ ସେଲୁନରେ ଯାଇ ଚୁଟି କାଟି ସୁନ୍ଦର କରୁଛନ୍ତି । ଠିକ୍ ସେହିପରି ଆବଶ୍ୟକତା, ସୁବିଧା ଅନୁଯାୟୀ ମହିଳାମାନେ ସେସବୁ ରୀତିରେ ପରିବର୍ତ୍ତନ କରିବା ଦରକାର ।

ମୁସଲମାନ ମହିଳାମାନେ ଅନୁକରଣ କରୁଥିବା 'ଗୋଶା' ପ୍ରଥା ଏକ ପ୍ରାଚୀନ ବିଶ୍ୱାସ । ଶିକ୍ଷିତ ମୁସଲମାନ ମହିଳାମାନେ ଏହି ପ୍ରଥାରେ ପରିବର୍ତ୍ତନ ଆଣିବାରେ ଦ୍ୱିଧା ଅନୁଭବ କରନ୍ତି ନାହିଁ । ଡାକ୍ତରମାନଙ୍କ ମତରେ ଗୋଶା ପ୍ରଥା ମହିଳାମାନଙ୍କ ଶ୍ୱାସକ୍ରିୟାରେ ବାଧା ସୃଷ୍ଟି କରିବାରେ ସମ୍ଭାବନା ରହିଛି । ମୁସଲମାନ ମହିଳାମାନେ ପ୍ରାକୃତିକ ପବନ ଓ ଆଲୋକ ପାଇବାର  ସ୍ୱାଧୀନତାରୁ ବଞ୍ଚିତ ହେବା ସେମାନଙ୍କ ପ୍ରତି ଅନ୍ୟାୟ । କେତେକ ଉତ୍ତର ଭାରତୀୟ ଲୋକଙ୍କ ପାଖରେ ଏହି ପ୍ରଥା ଏବେ ବି ରହିଛି । ଏହି ପ୍ରଥାର ବିଲୋପନ ଆବଶ୍ୟକ ।

## ପୁରୁଷ ନାରୀ ସବୁ କ୍ଷେତ୍ରରେ ସମାନ –

ପୁରୁଷ  ଓ ନାରୀ ସମସ୍ତେ ମଣିଷ । ପୁରୁଷ ଓ ନାରୀ ଭିତରେ କୌଣସି ଭେଦଭାବ ରହିବା ଯଥାର୍ଥ ନୁହେଁ । ସମସ୍ତଙ୍କୁ ସମାନ ପ୍ରଶିକ୍ଷଣ ଦିଆଯିବା ଦ୍ୱାରା ସେମାନେ ଏକା ପ୍ରକାର ଜ୍ଞାନ ଓ ସାମର୍ଥ୍ୟର ଅଧିକାରୀ ହୋଇପାରିବେ । ଯେଉଁ ମହିଳାମାନେ ବିଭିନ୍ନ ବୃତ୍ତି ଓ ପେଷା ଅବଲମ୍ବନ କରୁଛନ୍ତି  ସେମାନେ ପୁରୁଷମାନଙ୍କ ପରି ସେମାନଙ୍କର ସାମର୍ଥ୍ୟ ପ୍ରଦର୍ଶନ କରିପାରୁଛନ୍ତି । ସେମାନଙ୍କର ଦକ୍ଷତା କେବେ କମ୍ ନୁହେଁ । ସେମାନେ ପିଲା ବେଳୁ ଯେଉଁ ପ୍ରଶିକ୍ଷଣ ପାଇଥାନ୍ତି ସେହି ଅନୁଯାୟୀ ନିଜର ସାମର୍ଥ୍ୟ ଦେଖାଇଥାନ୍ତି ।

ଯେଉଁମାନେ ଜେଲରେ ବନ୍ଦୀ ଜୀବନ ବିତାଉଛନ୍ତି, ପୁରୁଷ ଓ ନାରୀ ନିର୍ବିଶେଷରେ ଜେଲରଙ୍କ ନିର୍ଦ୍ଦେଶ ପାଳନ କରିଥାନ୍ତି । ପୁରୁଷ ଓ ମହିଳା ଯେଉଁ ପ୍ରକାରର ଶିକ୍ଷା, ପ୍ରଶିକ୍ଷଣ ଲାଭ କରିଥାନ୍ତି ସେହି ଭଳି ଆଚରଣ ଦେଖାଇଥାନ୍ତି, ସେଠାରେ ପୁରୁଷମାନେ ସେମାନଙ୍କର ଶାରୀରିକ ସାମର୍ଥ୍ୟ ଦେଖାଇ ନଥାନ୍ତି । ନାରୀ ପୁରୁଷ ନିର୍ବିଶେଷରେ ଯେଉଁପରି ପ୍ରଶିକ୍ଷଣ ସେମାନେ ପାଇଥାନ୍ତି, ସେହିପରି ନିଜ ସାମର୍ଥ୍ୟର ପରିଚୟ ଦେଇଥାନ୍ତି । ପୃଥିବୀରେ ନାରୀ ପୁରୁଷଙ୍କର ସଂଖ୍ୟାରେ ପ୍ରାୟ ସମାନତା ପରିଲକ୍ଷିତ ହୁଏ । ଶାରୀରିକ ଗଠନ କ୍ଷେତ୍ରରେ ନାରୀ ପୁରୁଷ ଭିତରେ କିଛି ପାର୍ଥକ୍ୟ ରହିଛି, କିନ୍ତୁ ଏହା ବ୍ୟତୀତ ସମାଜରେ ସେମାନଙ୍କ ମଧ୍ୟରେ ଅନ୍ୟ କିଛି ପାର୍ଥକ୍ୟ ନାହିଁ । ପିତା ମାତା ପୁଅ ଝିଅ ସମସ୍ତଙ୍କୁ ସମାନ ଭାବରେ ପୋଷାକ ପରିଚ୍ଛେଦ ଦେବା ଆବଶ୍ୟକ । ସେହିପରି ଝିଅମାନେ ପୁଅଙ୍କ ପରି ଚୁଟି କାଟିବା ଦରକାର । ଅଳ୍ପ ଚୁଟି ରଖିଲେ ତାହାର ଯତ୍ନ ନେବା ସହଜ । ପୂର୍ବରୁ ଯେତେବେଳେ ମହିଳାମାନେ କେବଳ ରୋଷାଇଶାଳ ଭିତରେ ସୀମିତ ରହୁଥିଲେ ସେତେବେଳେ ଲମ୍ବା କେଶ ରଖୁଥିଲେ ଓ ତାର ଯତ୍ନ ନେବାରେ ବହୁ ସମୟ ବ୍ୟୟ କରୁଥିଲେ । ଏବେ ଲମ୍ବା କେଶ ରଖି ତାର ଯତ୍ନ ନେବାରେ ଏତେ ସମୟ ବ୍ୟୟ କରିବା ଯଥାର୍ଥ ମନେହୁଏ ନାହଁ ।

## ମଙ୍ଗଳସୂତ୍ର ପିନ୍ଧିବା

ବିବାହ ସମୟରେ କନ୍ୟାର ବେକରେ ଏକ ମଙ୍ଗଳସୂତ୍ର ପିନ୍ଧାଇବା ଦାସତ୍ୱର ଏକ ଚିହ୍ନ । ଏହି ପ୍ରଥା ବନ୍ଦ ହେବା ଦରକାର । ଜଣେ ବିବାହିତା ମହିଳା ନିଜର ପତିବ୍ରତା ଏହା ପିନ୍ଧି ରକ୍ଷାକରିବାର କିଛି ଗୁରୁତ୍ୱ ନାହିଁ । ଏସବୁ ପୁରାତନ ପ୍ରଥା । ଏହି ପ୍ରଥା ଉତ୍ତର ଭାରତରେ ମଧ୍ୟ ନାହିଁ । ଏହି ପ୍ରଥା ଦକ୍ଷିଣ ଭାରତୀୟ ରାଜ୍ୟମାନଙ୍କରେ ରଖିବାର କିଛି ଆବଶ୍ୟକତା ନାହିଁ । ମହିଳାମାନେ କାହିଁକି ଏହା ପିନ୍ଧିବେ ? ମଙ୍ଗଳସୂତ୍ର ପିନ୍ଧିବାଦ୍ୱାରା ଜଣେ ମହିଳା ବିବାହିତ ବୋଲି ଜାଣିହୁଏ ବୋଲି କୁହାଯାଏ । ତେବେ ପୁରୁଷମାନେ ମଧ୍ୟ ଏହା ପିନ୍ଧି ସେମାନେ ବିବାହିତ ବୋଲି କାହିଁକି ନିଜର ପରିଚୟ ଦେବେ ନାହିଁ । ମହିଳାମାନଙ୍କ ପାଇଁ ଗୋଟିଏ

ବ୍ୟବସ୍ଥା ଓ ପୁରୁଷମାନଙ୍କ ପାଇଁ ଆଉ ଗୋଟିଏ ବ୍ୟବସ୍ଥା କାହିଁକି ରହିବ ? ସୁତରାଂ ଏହିପରି ଏକ ପ୍ରଥା ଯଥା ପୁରୁଷ ପତ୍ନୀ ବେକରେ ମଙ୍ଗଳସୂତ୍ର ପିନ୍ଧାଇବ ବନ୍ଦ ହେବା ଯଥାର୍ଥ ମନେହୁଏ ।

## ଅଳଙ୍କାର ପିନ୍ଧିବା

ମହିଳାମାନେ ଗହଣା ବା ଅଳଙ୍କାର ପିନ୍ଧିବା ମଧ୍ୟ ଏକ ଅନାବଶ୍ୟକ ବିଧି । ଅତୀତରେ ଲୋକମାନେ ଗହଣା ପିନ୍ଧୁଥିଲେ । ଏପରିକି ସାଂପ୍ରତିକ ସମୟରେ ସିନେମାମାନଙ୍କରେ ଏହା ଦେଖାଯାଏ । ରାଜା ମହାରାଜା ଓ ଧନୀ ଲୋକମାନେ ଗୁଡିଏ ଅଳଙ୍କାର ପିନ୍ଧୁଥିଲେ । ପୁରୁଷମାନେ ନିଜର କାର୍ଯ୍ୟ ଯୋଗୁ ଅଳଙ୍କାର ପିନ୍ଧିବା ବନ୍ଦ କରିଦେଲେ । କେଉଁଠିକୁ ଯାତ୍ରା କଲାବେଳେ ଅଳଙ୍କାର / ଗହଣା ପିନ୍ଧିକରି ଯିବା ସୁବିଧାଜନକ ନୁହେଁ, ନିରପଦ ମଧ୍ୟ ନୁହେଁ । ପୁରୁଷମାନେ ଯେହେତୁ ଦୂର ଜାଗାମାନଙ୍କୁ ଯାଉଥିଲେ ସେମାନେ ଏହା ପିନ୍ଧିବା ବନ୍ଦ କଲେ । ସଂପ୍ରତି ଏହା ମହିଳାମାନଙ୍କ ପ୍ରତି ପ୍ରଯୁଜ୍ୟ । ଏବେ ମହିଳାମାନେ ମଧ୍ୟ କର୍ମ ପାଇଁ ଦୂର ସ୍ଥାନମାନଙ୍କୁ ଯାତ୍ରା କରି ଯାଉଛନ୍ତି । ଏଣୁ ସେମାନେ ଅଳଙ୍କାର ପିନ୍ଧିବା ବନ୍ଦକରିବା ଉଚିତ, ଏହାଦ୍ୱାରା ସେମାନଙ୍କର ଯାତ୍ରା ନିରାପଦ ରହିବ ।

## ମହିଳାମାନେ ଯୌନ ସମ୍ଭୋଗର ବସ୍ତୁ ନୁହନ୍ତି

ନିଜର ଜୀବନକାଳ ମଧ୍ୟରେ ମହିଳାମାନେ ଅନେକ କିଛି କରିପାରିବେ ଓ ଅନେକ କିଛି ହାସଲ କରିପାରିବେ । ସ୍ୱାମୀମାନଙ୍କୁ ଯୌନସୁଖ ଦେବା, ପରିବାର ପାଇଁ ଖାଦ୍ୟ ପ୍ରସ୍ତୁତ କରିବା, ଛୁଆ ଜନ୍ମ କରିବା ଓ ସେମାନଙ୍କର ଲାଳନ ପାଳନ କରିବା ସେମାନଙ୍କର ଏକମାତ୍ର କର୍ତ୍ତବ୍ୟ ନୁହେଁ । ସମାଜ ପାଇଁ ସେମାନେ ଅନେକ କିଛି ଅବଦାନ ଦେଇପାରିବେ । ମହିଳାମାନେ ବହୁ କ୍ଷେତ୍ରରେ ସେମାନଙ୍କର ଶକ୍ତି ଓ ଉତ୍କର୍ଷ ଦେଖାଉଛନ୍ତି । ବ୍ୟବସାୟ ପରିଚ୍ଳଳନା ଓ ଅନ୍ୟାନ୍ୟ କର୍ମକ୍ଷେତ୍ରରେ ସେମାନେ ନିଜ ସାମର୍ଥ୍ୟର ପରିଚୟ ଦେଉଛନ୍ତି ।

# ମହିଳାଙ୍କ ସ୍ୱାଧୀନତା

ବିନା ପ୍ରୟାସରେ ମହିଳାମାନେ ପୁରୁଷମାନଙ୍କଠାରୁ ସ୍ୱାଧୀନତା ପାଇପାରିବେ ନାହିଁ । ମହିଳାମାନେ ନିଜ ସ୍ୱାଧାନତା ପାଇଁ ନିଜେ ପ୍ରତିବନ୍ଧକ । ମହିଳାମାନେ ନିଜର ସ୍ୱାଧୀନତା ଉପଭୋଗ କରିବାକୁ ହେଲେ ପ୍ରଥମେ ସେମାନେ କେତେକ ବିଶ୍ୱାସରୁ ମୁକ୍ତ ହେବା ଆବଶ୍ୟକ । ମୁଖ୍ୟତଃ ଈଶ୍ୱର ବିଶ୍ୱାସରୁ ସେମାନେ ମୁକ୍ତ ହେବା ଦରକାର, ଯାହା ଏକ କୁସଂସ୍କାର । ମହିଳାମାନେ ମହିଳାମାନଙ୍କ ସ୍ୱାଧୀନତାର ପରିପନ୍ଥୀ । କେତେକ ବିଶ୍ୱାସ କରନ୍ତି ଯେ ସେମାନେ ପୂର୍ଣ୍ଣ ସ୍ୱାଧୀନତା ଋହାନ୍ତି ନାହିଁ । ସେମାନେ ବିଶ୍ୱାସ କରନ୍ତି ଯେ ଈଶ୍ୱର ପୁରୁଷମାନଙ୍କର ଦାସୀ ହେବାକୁ ସେମାନଙ୍କୁ ସୃଷ୍ଟି କରିଛନ୍ତି । ପୁରୁଷମାନଙ୍କ ବ୍ୟତୀତ ସେମାନେ ଜୀବନଧାରଣ କରିପାରିବେ ନାହିଁ । ଏହା କେବଳ ମହିଳା ବିଶ୍ୱାସ କରନ୍ତି ।

ଜଣେ ଯଦି ହିନ୍ଦୁ ଓ ସେ ମହିଳାମାନେ ସ୍ୱାଧୀନତା ଋହାନ୍ତି ବୋଲି କହନ୍ତି, ଏହା ଗ୍ରହଣଯୋଗ୍ୟ ନୁହେଁ । କାରଣ ହିନ୍ଦୁ ଶାସ୍ତ୍ରମାନଙ୍କରେ ମହିଳାମାନଙ୍କର ସ୍ୱାଧୀନତାକୁ ବାରଣ କରାଯାଇଛି । ହିନ୍ଦୁଧର୍ମ ଅନୁଯାୟୀ ମହିଳାମାନେ ଜନ୍ମରୁ ନିମ୍ନ ଶ୍ରେଣୀର ବ୍ୟକ୍ତି । ମହିଳାମାନଙ୍କର ସ୍ୱାଧାନତା ପାଇଁ ଯଦି ଜଣେ ପ୍ରକୃତରେ ଆଗ୍ରହୀ ତେବେ ଏଥିପାଇଁ ତାଙ୍କ ବିରୁଦ୍ଧରେ ଯେଉଁ ପ୍ରତିବାଦ ହେବ ତାକୁ ଉପଯୁକ୍ତ ଭାବେ ସାମ୍ନା କରିବା ଉଚିତ । ନହେଲେ ସେମାନେ ମହିଳାମାନଙ୍କୁ କେବଳ ବିଭ୍ରାନ୍ତ କରୁଛନ୍ତି ।

ଆମେ ଯେତେବେଳେ ଝିଅମାନଙ୍କୁ ବିକଶିତ ହେବାରେ ସାହାଯ୍ୟ କରୁଛୁ ସେତେବେଳେ ତାଙ୍କୁ କେତେକ ଭଲ କଥା ଶିଖାଇବା ଆବଶ୍ୟକ । ସେମାନେ କେବେହେଲେ ପୁରୁଷମାନଙ୍କ ପାଇଁ ଭୟଭୀତ ହେବେ ନାହିଁ କିମ୍ବା ଅନାସକ୍ତ ହୋଇ ରହିବେ ନାହିଁ । ନିଜର ବିବାହ ବିଷୟରେ ସେମାନେ ନିଷ୍ପତ୍ତି ନେବା ଯଥାର୍ଥ । ଆମେ ଯଦି ଝିଅ ମାନଙ୍କୁ ଉପଯୁକ୍ତ ଭାବେ ବିକଶିତ କରିବାକୁ ଋହୁଁ ତେବେ ସେମାନ ପୂର୍ଣ୍ଣ ସ୍ୱାଧୀନତା ପାଇ ବିକଶିତ ହେବା ଦରକାର ।

# ୧୫. ହିନ୍ଦୀ ଭାଷାକୁ ଲଦିବାର ପରିଣାମ

ତାମିଲନାଡୁ ରାଜ୍ୟ ରାଜନୀତିରେ ହିନ୍ଦୀ ଭାଷାକୁ ଲଦିବା ବିରୁଦ୍ଧରେ ପ୍ରତିବାଦ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ତ୍ରିଚିଠାରୁ ଶହେ ଜଣ ବ୍ୟକ୍ତି ପଦଯାତ୍ରାରେ ଆସି ଚେନାଇରେ ପହଞ୍ଚିଲେ । ସମୁଦ୍ର କୂଳରେ ଏକ ବଡ ଜନ ସମାବେଶ ହୋଇଥିଲା । ପେରିୟାର ସେହି ସଭାରେ ଘୋଷଣା କଲେ– "ତାମିଲ ନାଡୁ କେବଳ ତାମିଲମାନଙ୍କ ପାଇଁ ।" ସେ ପ୍ରଥମେ ଏହିପରି ଏକ ନାରା ଉଠାଇଲେ । ସେହିଠାରୁ ସେ ଯାହା କହିଲେ ତାହା ତାମିଲମାନଙ୍କର ନୀତି ହେଲା । ଜଷ୍ଟିସ ପାର୍ଟିକୁ ବି ସେ ପ୍ରସାର କଲେ ।

"ଦକ୍ଷିଣ ଭାରତୀୟ ବିକାଶ ସଂଘ" ମୁଖ୍ୟତଃ ତାମିଲନାଡୁ ଓ ତାମିଲମାନଙ୍କର ଏକ ପ୍ରସଙ୍ଗ ହେଲା । ହିନ୍ଦୀକୁ ଆନ୍ଧ୍ର, କର୍ଣ୍ଣାଟକ ଓ କେରଳରେ ମଧ୍ୟ ବିରୋଧ ହେଲା । ପ୍ରଥମେ ହିନ୍ଦୀ – ବିରୋଧୀ ଭାବଧାରା ତାମିଲନାଡୁରେ ସୃଷ୍ଟି ହେଲା ଓ ଏଥିରେ ପେରିୟାରଙ୍କର ମୁଖ୍ୟ ଭୂମିକା ରହିଥିଲା ।

୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଇଉରୋପରେ ଆରମ୍ଭ ହେଲା । ଲିନଲିଥୋ ଭାରତର ଭାଇସରାୟ ବା ବଡଲାଟ ହେଲେ । ସେ ଘୋଷଣା କଲେ ଯେ ଭାରତ ବିଶ୍ୱଯୁଦ୍ଧରେ ଇଂଲଣ୍ଡ ସପକ୍ଷରେ ରହିବ । ତାଙ୍କର ସେହି ଘୋଷଣାକୁ କଂଗ୍ରେସ ଦଳ ନିନ୍ଦା କଲା । ଏହି ସମୟରେ ଜିନ୍ନା ମୁସଲମାନମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ରାଷ୍ଟ୍ର ଦାବି କଲେ । ଉତ୍ତର –ପୂର୍ବ ଓ ଉତ୍ତର ପଶ୍ଚିମ ଭାଗରେ ରହୁଥିବା ଅନେକ ମୁସଲମାନ ମାନଙ୍କୁ ନେଇ ଏହା କରିବା ତାଙ୍କର ପରିକଳ୍ପନା ପ୍ରକାଶ ପାଇଲା । ତେବେ ଜଷ୍ଟିସ ପାର୍ଟି ବଡଲାଟଙ୍କ ନିଷ୍ପତ୍ତିକୁ ସମର୍ଥନ ଦେଲା ।

ଜିନ୍ନା ଯେପରି ପାକିସ୍ତାନ ଦାବିକଲେ ଏହା ପେରିୟାରଙ୍କୁ ପ୍ରେରଣା ଦେଲା ଓ ସେ 'ଦ୍ରାବିଡ ନାଡୁ' ପାଇଁ ପ୍ରଶ୍ନ ଉଠାଇଲେ । ତାମିଲ, ତେଲୁଗୁ, କନଡ ଓ ମାଲାୟଲମ କହୁଥିବା ଲୋକମାନଙ୍କୁ ନେଇ ସେ 'ଦ୍ରାବିଡ ନାଡୁ'ର ପରିକଳ୍ପନା କଲେ । ସେ ତାମିଲମାନଙ୍କ ପାଇଁ ତାମିଲନାଡୁ ପରିବର୍ତ୍ତେ ଦ୍ରାବିଡମାନଙ୍କ ପାଇଁ

ଦ୍ରାବିଡନାଡୁର ନାରା ଦେଲେ । ୧୯୩୯ ଡିସେମ୍ବର ୩ ଦିନ 'କୁଦି ଅରସୁ' ସମ୍ବାଦପତ୍ରରେ ଦ୍ରାବିଡନାଡୁର ଏକ ମାନଚିତ୍ର ପ୍ରକାଶ ପାଇଲା । ହାଇଦ୍ରାବାଦ, କୋଚି, ମହିଶୂର ଓ ତିରୁବିତାନଗୁର ମାନଙ୍କୁ ନେଇ 'ଦ୍ରାବିଡ ନାଡୁ'ର ଭାବନା ସୃଷ୍ଟି ହେଲା ।

୧୯୪୦ ଅଗଷ୍ଟ ୪ ତାରିଖ ଦିନ ଜଷ୍ଟିସ ପାର୍ଟିର ରାଜ୍ୟ ସମ୍ମିଳନୀ ପେରିୟାରଙ୍କ ସଭିପତିତ୍ୱରେ ତିରୁବରୁର ଠାରେ ଆରମ୍ଭ ହେଲା । ଏହି ସମ୍ମିଳନୀରେ ଏହି ପ୍ରସ୍ତାବମାନ ଗୃହୀତ ହୋଇଥିଲା । ଦ୍ରାବିଡମାନଙ୍କର କଳା, ସଂସ୍କୃତି, ଅର୍ଥନୀତିର ବିକାଶ ପାଇଁ ଦ୍ରାବିଡ ନାଡୁ ଏକ ସ୍ୱତନ୍ତ୍ର ରାଜ୍ୟ ହେବା ଆବଶ୍ୟକ । ଚେନାଇ ପ୍ରେସିଡେନ୍‌ସିକୁ ନେଇ ଏହି ରାଜ୍ୟ ହେଲେ ଏ ଅଞ୍ଚଳର ବିକାଶ ତ୍ୱରାନ୍ୱିତ ହୋଇପାରିବ ।

ସମଗ୍ର ଦେଶରେ ଭାରତ ଛାଡ ଆନ୍ଦୋଳନ ଆରମ୍ଭ ହେଲା । ମହାତ୍ମା ଗାନ୍ଧୀ ଗିରଫ ହୋଇ ଜେଲରେ ରହିଲେ । ପେରିୟାର ବମ୍ବେ ଯାଇ ଜିନ୍ନାଙ୍କ ସହ ସାକ୍ଷାତ କଲେ । ଜିନ୍ନା ପାକିସ୍ତାନ ଦାବି କରୁଥିଲେ, ପେରିୟାର ତାଙ୍କୁ ଦ୍ରାବିଡସ୍ଥାନ ବିଷୟରେ କହିଲେ । ଜିନ୍ନା ଦ୍ରାବିଡସ୍ଥାନ ପାଇଁ ସମ୍ମତ ହେଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ବିଟ୍ରେନକୁ ସମର୍ଥନ ନେଇ ଉଭୟଙ୍କ ମଧ୍ୟରେ ମତପାର୍ଥକ୍ୟ ସୃଷ୍ଟି ହେଲା । ପେରିୟାର ବିଶ୍ୱଯୁଦ୍ଧରେ ବ୍ରିଟେନକୁ ସମର୍ଥନ କରିବାକୁ ତାଙ୍କୁ କହିଲେ, ଜିନ୍ନା ଏଥିରେ ସମ୍ମତ ହେଲେ ନାହିଁ ।

ପେରିୟାରଙ୍କର ଭାବନାଥିଲା ଯେ ବ୍ରିଟିଶରମାନେ ଭାରତ ଛାଡିକରି ଗଲେ ବ୍ରାହ୍ମଣମାନେ ଏଠାରେ ଶାସନ କରିବେ । ବ୍ରିଟିଶ ଶାସନଠାରୁ ବ୍ରାହ୍ମଣ ମାନଙ୍କ ଶାସନ ଅଧିକ ମନ୍ଦ ହେବ । ଭାରତର ସ୍ୱାଧୀନତା ବ୍ରିଟିଶରମାନଙ୍କ ଉପରେ ନାହିଁ, ଏହା ବ୍ରାହ୍ମଣମାନଙ୍କ ହାତରେ ରହିଛି ।

# ୧୬. ଆନାଦୁରାଇଙ୍କର ଆବିର୍ଭାବ ଓ ଦ୍ରାବିଡ କାଜାଗମ ଦଳ

ଜଷ୍ଟିସ ପାର୍ଟି ଭାରତରେ ବ୍ରିଟିଶ ଶାସନ ଏବେ ଅବ୍ୟାହତ ରହୁ ବୋଲି ଚାହୁଁଥିଲା । ୧୯୩୯ରେ ଜଷ୍ଟିସ ପାର୍ଟି ଯଦିବା ବ୍ରିଟିଶ ଶାସନକୁ ସମର୍ଥନ କରୁଥିଲା, ବ୍ରିଟିଶରମାନେ ଜଷ୍ଟିସ ପାର୍ଟିକୁ କୌଣସି ଗୁରୁତ୍ୱ ଦେଉ ନଥିଲେ । ଏପରିକି ଜଷ୍ଟିସ ପାର୍ଟିକୁ କେତେକ ବ୍ରିଟିଶର ମାନଙ୍କର ଗୋଲାମ କହୁଥିଲେ । ଏହାକୁ ମଧ ଧନୀ ଲୋକଙ୍କ ଦଳ ବୋଲି କୁହାଯାଉଥିଲା । ସେହି ସମୟର ଅନୁଭବ ଥିଲା ଯେ ଯଦି ପାର୍ଟିରେ ନୂତନ ରକ୍ତ ପ୍ରବାହିତ ନହୁଏ, ତେବେ ପାର୍ଟିର ଭବିଷ୍ୟତ ନାହିଁ ।

ଏହି ଅବସରରେ ସି.ଏନ. ଆନାଦୁରାଇ (ତାଙ୍କୁ ସଂକ୍ଷେପରେ ଆନା କୁହାଯାଏ) ଏମ.ଏ. କଲାପରେ ଚେନ୍ନାଇର ଗୋବିନ୍ଦପା ନାଇକେନଠାରେ ଏକ ମାଇନର ସ୍କୁଲରେ ଶିକ୍ଷକ ରହିଥିଲେ । ସେ ଚାକିରିରୁ ଇସ୍ତଫା ଦେଇ ଶ୍ରମିକ ନେତା ବାସୁଦେବଙ୍କ ପାଖରେ ଅନୁବାଦକ ଭାବେ କାର୍ଯ୍ୟ କରୁଥିଲେ । ବାସୁଦେବଙ୍କ ସହ ସଂପର୍କରୁ ସେ ଜଷ୍ଟିସ ପାର୍ଟିର ନେତାମାନଙ୍କ ସହ ପରିଚିତ ଥିଲେ ।

ତିରୁପୁରଠାରେ ସେଙ୍ଗୁଧର ଜାତିର ଲୋକମାନଙ୍କର ଏକ ସମ୍ମିଳନୀ ୧୯୩୫ ରେ ଅନୁଷ୍ଠିତ ହୋଇଥିଲା । ସେଠାରେ ଆନାଙ୍କ ସହ ପେରିୟାରଙ୍କର ପ୍ରଥମ ସାକ୍ଷାତ ହେଲା । ଆନାଙ୍କର ଭାଷଣ ପେରିୟାରଙ୍କୁ ବହୁତ ଭଲ ଲାଗିଥିଲା । ପେରିୟାରଙ୍କ ବିଚାର ଓ ଆଦର୍ଶ ଆନାଙ୍କର ମଧ ଦୃଷ୍ଟି ଆକର୍ଷଣ କରିଥିଲା । ପେରିୟାର ଯେଉଁଠାରେ ପ୍ରଗତିଶୀଳ ଓ ପ୍ରତିଭାବାନ ଲୋକମାନଙ୍କୁ ଦେଖୁଥିଲେ ସେମାନଙ୍କୁ ଉତ୍ସାହିତ କରୁଥିଲେ । ଆନାଙ୍କୁ ତାଙ୍କ ସମ୍ବାଦପତ୍ର 'କୁଦି ଆରସୁ'ର ସହ ସଂପାଦକ ଭାବେ ନିଯୁକ୍ତ କଲେ । ଆନାଙ୍କର ଲେଖା ଓ ଭାଷଣ ଜଷ୍ଟିସ ପାର୍ଟିର ନେତାମାନଙ୍କୁ ମଧ ଆକର୍ଷିତ କଲା । ପରେ ଆନାଙ୍କୁ 'ଆରିଗର ଆନା' ବୋଲି କୁହାଗଲା । ପେରିୟାରଙ୍କ ସହାୟତାରେ ଆନା ୧୯୪୨ରେ "ଦ୍ରାବିଡ ନାଡୁ" ବୋଲି ଏକ ସମ୍ବାଦପତ୍ର ପ୍ରକାଶ କଲେ ।

୧୯୪୪ ଅଗଷ୍ଟ ୨୭ରେ ଜଷ୍ଟିସ ପାର୍ଟିର ଏକାଦଶ ଅଧିବେଶନ ସେଲମ ଟାଉନରେ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ ଆନା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଆଗାତ କରିଥିଲେ । ଏହାନୁଯାୟୀ ଜଷ୍ଟିସ ପାର୍ଟିର ନାମ ପରିବର୍ତ୍ତନ କରାଯାଇ ଏହାକୁ 'ଦ୍ରାବିଡ କାଜାଗମ' କରାଗଲା । ଅନ୍ୟ ପ୍ରସ୍ତାବରେ 'ମାଡ୍ରାସ ପ୍ରେସିଡେନ୍‌ସିକୁ ଦିଲ୍ଲୀର ସରକାର ଶାସନ କରିବା ପରିବର୍ତ୍ତେ ପ୍ରତ୍ୟକ୍ଷ ଭାବେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଶାସନ କରିବା ଆବଶ୍ୟକ ବୋଲି ପ୍ରସ୍ତାବ ଦେଲା ।'ଯଦି ଜଷ୍ଟିସ ପାର୍ଟିର ନାମ ପରିବର୍ତ୍ତନ ହେବ ତେବେ ତାହାର ନାମ ଦ୍ରାବିଡ କାଜାଗମ କରିବାକୁ ଆନାଙ୍କର ପ୍ରସ୍ତାବକୁ ଅନେକ ସମର୍ଥନ ଦେଲେ । ଫଳରେ ଜଷ୍ଟିସ ପାର୍ଟିର ନାମ ପରିବର୍ତ୍ତନ କରାଯିବ, ତେବେ ଏହାର ନୂଆ ନାମ "ଦ୍ରାବିଡ କାଜାଗମ" ରଖାଯିବା ସେଠାରେ ଗୃହୀତ ହେଲା ।

ଅନ୍ୟ ଏକ ନିଷ୍ପତ୍ତି ହେଲା ଯେ ବ୍ରିଟିଶ ଭାରତ ସରକାର ଯେଉଁ ସବୁ ଉପାଧିମାନ ଦେଇଛନ୍ତି ସେସବୁକୁ ସମସ୍ତେ ସରକାରଙ୍କୁ ଫେରାଇ ଦେବେ । ଏହା ଯଦି ଏକ ସପ୍ତାହରେ କରାନଯାଏ ତେବେ ଯେଉଁମାନେ ଏହା କରିବେ ନାହିଁ ସେମାନଙ୍କୁ ଦଳରୁ ବହିଷ୍କାର କରାଯିବ । ଏହି ପ୍ରସ୍ତାବ ବିଷୟରେ ଆନା କାରଣମାନ ସମବେତ ଲୋକମାନଙ୍କୁ ଜଣାଇଲେ । ଆନାଙ୍କ ଦ୍ୱାରା ଆଗତ ସମସ୍ତ ପ୍ରସ୍ତାବକୁ ସର୍ବସମ୍ମତ ଭାବେ ଗ୍ରହଣ କରାଗଲା । ତାମିଲ କବି କାଲିୟନ ପୁଙ୍ଗୁନ୍ଦ୍ରନଙ୍କର ଏକ କବିତାକୁ ଜଣେ ଉଦ୍ଧାରକରି ଏକ ମନ୍ତବ୍ୟ ରଖିଲେ । ତାହାନୁଯାୟୀ "ପ୍ରତ୍ୟେକ ସ୍ଥାନ ହେଉଛି ଆମ ନିଜର ।" ଏହା ଉପରେ ପେରିୟାର ତାଙ୍କର ବକ୍ତବ୍ୟ ରଖିଲେ । ପେରିୟାର କହିଲେ, "ଆମେ 'ଜିପ୍‌ସି' ଗୋଷ୍ଠୀର ଲୋକ ନୋହୁଁ ।" (ଏସିଆରୁ ଉଦ୍‌ଭବ ଆମେରିକାରେ ପରିଦୃଶ୍ୟ କଳାକେଶ ବିଶିଷ୍ଟ ଏକ ଯାଯାବର ଜାତିକୁ ଜିପ୍‌ସି କୁହାଯାଏ) । ଆମେ ଏହି ଦେଶରେ ଜନ୍ମ ହୋଇଛେ । ଏହି ଦେଶରେ ମର୍ଯ୍ୟାଦାର ସହ ସ୍ୱାଧୀନ ଜୀବନ ଅତିବାହିତ କରିବା ଆମର ଜନ୍ମଗତ ଅଧିକାର ।" ସେଲାମ ସମ୍ମିଳନୀ ପରେ ପେରିୟାର ବ୍ରିଟିଶ ଶାସନକୁ ସମାଲୋଚନା କଲେ । ସେ କହିଲେ, "ବ୍ରିଟିଶ ଶାସକମାନେ ଆଇନ ମାନୁଥିବା ବ୍ୟକ୍ତି । ସେମାନେ ଉତ୍ତମ ଶାସକ ଓ ବେଶ୍ ବୁଦ୍ଧିମାନ । କିନ୍ତୁ ସେମାନଙ୍କର ଏହି ସଦ୍‌ଗୁଣ

ସେମାନେ ଭାରତରେ ବିନିଯୋଗ କରନ୍ତି ନାହିଁ। ଏଠାରେ ସେମାନେ ଆର୍ଯ୍ୟମାନଙ୍କ ସହ ମିଳିତ ହୋଇ ଦ୍ରାବିଡ ବା ଅଣଆର୍ଯ୍ୟମାନଙ୍କୁ ଶୋଷଣ କରିଚାଲିଛନ୍ତି ।”

ଦ୍ରାବିଡ କାଜାଗମ ଦଳର ପତାକାକୁ ନିର୍ଦ୍ଧାରିତ କରାଗଲା। ପତାକାଟି ଏକ କଳା ଆୟତାକାରଯୁକ୍ତ କ୍ଷେତ୍ରରେ ଏକ ଲାଲ ରଙ୍ଗର ବୃତ୍ତ ରଖାଗଲା । ଏହାକୁ ୪.୪.୧୯୪୬ରେ ଗ୍ରହଣ କରାଗଲା। କଳା ହେଉଛି ଅଜ୍ଞତା ଓ ଦୁଃଖର ପ୍ରତୀକ ଓ ଲାଲ ହେଉଛି ବିପ୍ଳବର ସଙ୍କେତ। ବିପ୍ଳବଦ୍ୱାରା ସମାଜରୁ ଅଜ୍ଞତା ଓ ଦୁଃଖ ଦୂର କରିବା ଆମର ଲକ୍ଷ୍ୟ ବୋଲି ପେରିୟାର କହିଲେ। ବିପ୍ଳବ ଯେତେ ଆଗକୁ ଯିବ ଅଜ୍ଞତା ଓ ଦୁଃଖର ପରିସ୍ଥିତି ସେତେ ଦୂରହେବ। ଶେଷରେ ଲାଲ ରଙ୍ଗ କଳାରଙ୍ଗକୁ ଅଧିକାର କରିବ । ତାହାର ତାତ୍ପର୍ଯ୍ୟ ହେବ ଦେଶ ସବୁ ସ୍ତରରେ ସମତା ହାସଲ କରିବା ଏହା ହେଉଛି ପତାକାର ତାତ୍ପର୍ଯ୍ୟ। ୧୯୪୬ରେ କେନ୍ଦ୍ର ଓ ରାଜ୍ୟ ପାଇଁ ନିର୍ବାଚନ ଅନୁଷ୍ଠିତ ହେଲା । ଏହି ନିର୍ବାଚନରେ ଦ୍ରାବିଡ କାଜାଗମ ପ୍ରତିଦ୍ୱନ୍ଦ୍ୱିତା କଲା ନାହିଁ। କଂଗ୍ରେସ ନିର୍ବାଚନରେ ବିଜୟଲାଭ କଲା ଓ ଟି. ପ୍ରକାଶନ ବ୍ରିଟିଶ ଭାରତରେ ମାଡ୍ରାସ ପ୍ରେସିଡେନ୍‌ସିର ପ୍ରଧାନମନ୍ତ୍ରୀ ହେଲେ। ନିର୍ବାଚନ ପରେ କୁଦି ଅରସୁ ସମ୍ବାଦପତ୍ରରେ ପେରିୟାର ଲେଖିଲେ, “ଦେଶରେ ପ୍ରଥମ କାର୍ଯ୍ୟ ସମାଜରୁ ଜାତିପ୍ରଥାର ବିଲୋପନ ହେବା ଉଚିତ। ଉଚ୍ଚ ଜାତି ନୀଚ ଜାତି ଏହି ଭେଦଭାବ ରହିବା ଯଥାର୍ଥ ନୁହେଁ। ଦ୍ରାବିଡ କାଜାଗମ ଏହାକୁ ପ୍ରାଥମିକତା ପ୍ରଦାନ କରୁଛି । କଂଗ୍ରେସ ସହ ଦ୍ରାବିଡ କାଜାଗମର ସଂପର୍କ ଏହି ଆଦର୍ଶ ଉପରେ ନିର୍ଭର କରୁଛି । କଂଗ୍ରେସ ଏକ୍ଷେତ୍ରରେ କ’ଣ ପଦକ୍ଷେପ ନେଉଛି ଦେଖିବାକୁ ଅଛି ।

“କମ୍ୟୁନିଷ୍ଟ ମାନଙ୍କ ସହ ଆମର କୌଣସି ସଂଗ୍ରାମ ନାହିଁ । ସେମାନେ ଈଶ୍ୱର, ଧର୍ମ, ବ୍ରାହ୍ମଣ, ଶାସ୍ତ୍ର, ମନ୍ଦିର ଇତ୍ୟାଦି ବିଷୟ ଉଠାଇ ନଥାନ୍ତି । ତେବେ ସେମାନେ ବ୍ରାହ୍ମଣ ଓ କଂଗ୍ରେସ ସହ ସୁସଂପର୍କ ରଖିଛନ୍ତି ଓ ଆମକୁ ସମାଲୋଚନା କରିଥାନ୍ତି । ଯଦି ସେମାନଙ୍କ ଆଦର୍ଶ ପଛରେ ସେମାନଙ୍କର ନିଷ୍ଠା ରହିଥାଏ, ତେବେ ଆମେ ସେମାନଙ୍କ ପଛରେ ପତାକା ଧରି ଯିବୁ। ଆମର ସଂଗ୍ରାମ କ୍ଷେତ୍ରରେ ଆମେ କାହାକୁ ଆଖିବୁଜି ସମର୍ଥନ କରିବୁ ନାହିଁ। ଆମର ଆଦର୍ଶକୁ ନେଇ ଆମର ସଂଗ୍ରାମ ଜାରିରହିବ ।”

# ୧୭. ପେରିୟାର ଓ ଆନାଙ୍କ ମଧ୍ୟରେ ମତଭେଦ

୧୯୪୬-୧୯୪୭ ଭିତରେ ଭାରତର ସ୍ୱାଧୀନତା ବିଷୟରେ ଚର୍ଚ୍ଚା ଶୀର୍ଷରେ ପହଞ୍ଚିଥାଏ । କିନ୍ତୁ ପେରିୟାର ଏହି ସମ୍ବାଦକୁ ସ୍ୱାଗତ କରୁନଥାନ୍ତି । ପେରିୟାର ଭାବୁଥାନ୍ତି ଯେ ପାକିସ୍ତାନ ଏକ ସ୍ୱତନ୍ତ୍ର ଦେଶ ହେବ, ସେପରି ଦ୍ରାବିଡ ନାଡୁ ଏକ ସ୍ୱତନ୍ତ୍ର ଦେଶ ହେଉ । ବ୍ରିଟିଶରମାନେ ଏହା କରିବା ଆବଶ୍ୟକ । ଯେତେବେଳେ ଏହା ଘୋଷିତ ହେଲା ଯେ ପାକିସ୍ତାନ ଅଗଷ୍ଟ ୧୪ର ଓ ଭାରତ ଅଗଷ୍ଟ ୧୫ରେ ସ୍ୱାଧୀନ ହେବେ ପେରିୟାର ସେଥିରେ ଆଦୌ ଖୁସି ନଥିଲେ । ବରଂ ସେ ସ୍ୱାଧୀନତା ଦିବସକୁ ଏକ "ଦୁଖ ଦିବସ" ବୋଲି ଘୋଷଣା କଲେ । ସାମାଜିକ ସମତା ବ୍ୟତୀତ ରାଜନୈତିକ ସ୍ୱାଧୀନତାର ଯେ କିଛି ଅର୍ଥ ନାହିଁ ଓ ଏ ଦେଶର  ଅଗଣିତ ମଣିଷଙ୍କ ପାଇଁ ଏହା କିଛି ମହତ୍ତ୍ୱ ରଖେ ନାହିଁ ଏହା ସେ ଭାବୁଥିଲେ । ସାମାଜିକ ସ୍ୱାଧୀନତା ବ୍ରିଟିଶ ସରକାର ସମୟରେ ଆସିପାରିବ ବୋଲି ସେ କଳ୍ପନା କରିଥିଲେ । ସ୍ୱାଧୀନ ଭାରତର ସବୁ ସ୍ତରରେ ଯଦି ବ୍ରାହ୍ମଣମାନଙ୍କର ଆଧିପତ୍ୟ ରହେ ତେବେ ଏଥିରେ କିପରି ସାମାଜିକ ସ୍ୱାଧୀନତା ରହିବ ! ଏହା ସେ ସମୟରେ ତାଙ୍କ ପ୍ରଶ୍ନବାଚୀ ଥିଲା । ଆନା ଓ ଅନ୍ୟମାନେ ପେରିୟାରଙ୍କର ଏହି ମନ୍ତବ୍ୟ 'ସ୍ୱାଧୀନତା ଦିବସ ଏକ ଦୁଃଖର ଦିବସ'କୁ ଗ୍ରହଣ କରୁନଥିଲେ । ସେମାନେ ଏହି ଭାବନା ଯଥାର୍ଥ ନୁହେଁ ଓ ଏହା ପେରିୟାରଙ୍କର ଏକ ଭ୍ରମାତ୍ମକ ବିଚାର ବୋଲି କହୁଥିଲେ ।

୧୯୩୯ରେ ପେରିୟାର ତାଙ୍କ ସମ୍ବାଦ ପତ୍ର ବିଦୁତଲାଇକୁ ବ୍ରିଟିଶ ସରକାରକୁ ଲିଜ୍ ସୂତ୍ରରେ ଦେଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜନଗଣ ବ୍ରିଟିଶ ସରକାରକୁ ସମର୍ଥନ କରିବା ପାଇଁ ସମ୍ବାଦପତ୍ର ଟିକୁ ସରକାର ଲିଜ୍‌ଭାବେ ବ୍ୟବହାର କରୁଥିଲେ । ଆନା ଯେ ସେହି ସମ୍ବାଦପତ୍ରର ସହ ସଂପାଦକ ହୋଇଥିଲେ, ସେ ସେଥିରେ କାର୍ଯ୍ୟ କରିବାକୁ ମନାକଲେ । ଏହା ସହିତ ସେ

ବ୍ରିଟିଶ ସରକାରଙ୍କଠାରୁ ଦରମା ନେବାକୁ ମନା କଲେ ଓ ସମ୍ବାଦପତ୍ର ସରକାରଙ୍କୁ ସମର୍ଥନକରି ଲେଖିବାକୁ ଚାହିଁଲେ ନାହିଁ । ପେରିୟାର ଦ୍ରାବିଡନାଡୁ ଏକ ସ୍ୱତନ୍ତ୍ର ଦେଶ ହେବା ବିଷୟରେ ଜିନ୍ନାଙ୍କ ସହ ଆଲୋଚନା କରିବାକୁ ଆନା ମଧ୍ୟ ଚାହୁଁ ନଥିଲେ । ଏହି ସ୍ଥିତିରେ ଦ୍ରାବିଡ କାଜାଗମ ଭିତରେ ଯେତେବେଳେ ପେରିୟାର ଓ ଆନାଙ୍କ ମଧ୍ୟରେ ଏକ ଶୀତଳ ଯୁଦ୍ଧ ଲାଗି ରହିଥିଲା, ସେତେବେଳେ ପେରିୟାର ଓ ମାନିଆମାଇଙ୍କର ବିବାହ ବିଷୟ ଘୋଷିତ ହେଲା । ପରିଣାମତଃ ଦ୍ରାବିଡ କାଜାଗମ ଭିତରେ ଅନ୍ତର୍ବିବାଦ ଏକ ଚରମ ସୀମାରେ ଉପନୀତ ହେଲା ।

ମାନିଆମାଇ ଭେଲୋରର କନକସବାଇଙ୍କର ଝିଅ ଥିଲେ । କନକସବାଇ ଆତ୍ମମର୍ଯ୍ୟାଦା ଆନ୍ଦୋଳନର ବଡ ସମର୍ଥକ ଥିଲେ ଓ ତାଙ୍କ ପରିବାରର ସମସ୍ତେ ଆତ୍ମମର୍ଯ୍ୟାଦା ଆନ୍ଦୋଳନକୁ ପ୍ରସାର କରୁଥିଲେ । ୧୯୪୩ ଜୁନରେ କନକ ସବାଇଙ୍କର ଦେହାନ୍ତ ହେଲା । ବାପାଙ୍କ ମୃତ୍ୟୁପରେ ମାନିଆମାଇ ପେରିୟାରଙ୍କ ପାଖକୁ ଚାଲିଆସିଲେ । ତାଙ୍କୁ ତାମିଲ ଭାଷାରେ ପାରଦର୍ଶୀ କରିବାକୁ ପେରିୟାର ମାନିଆମାଇଙ୍କୁ କୁଳଶେଖରନ ପଟିନମଙ୍କ ପାଖକୁ ପଠାଇଲେ । କୁଳଶେଖରନଙ୍କ ପାଖରେ ପ୍ରଶିକ୍ଷିତ ହେଲାପରେ ମାନିଆମାଇ ପେରିୟାରଙ୍କର ନର୍ସ ଓ ବ୍ୟକ୍ତିଗତ ସହାୟିକା ହେଲେ । ୧୯୪୩ ଅକ୍ଟୋବର ୨୩ ଦିନ ମାନିଆମାଇ କୁଦି ଅରସୁ ସମ୍ବାଦପତ୍ରରେ ଏକ ବିବୃତ୍ତି ଦେଲେ । ସେ ଲେଖିଥିଲେ – "ପେରିୟାରଙ୍କ ସହ କୁତ୍ରାଲମ ଓ ଏରୋଡ ଠାରେ ମୁଁ ଗୋଟିଏ ମାସ କଟାଇଲି । ପେରିୟାରଙ୍କ ସ୍ୱାସ୍ଥ୍ୟ ଭଲ ରହୁନାହିଁ, ସେ ଅଧିକରୁ ଅଧିକ ଦୁର୍ବଳ ହେଉଛନ୍ତି । ସେ କିନ୍ତୁ ତାଙ୍କ ସ୍ୱାସ୍ଥ୍ୟ ସଂପର୍କରେ ଆଦୌ ବିବ୍ରତ ନୁହଁନ୍ତି । ଭବିଷ୍ୟତରେ ଦ୍ରାବିଡ କାଜାଗମର କିଏ ଦାୟିତ୍ୱ ନେବେ ସେ ବରଂ ଏ ବିଷୟରେ ଚିନ୍ତିତ । ତାଙ୍କର ସମସ୍ତ ଅର୍ଥ ସେ ପାର୍ଟିକୁ ଦେଇଦେବାକୁ ଚାହୁଁଛନ୍ତି । ତେବେ ଏ ସମସ୍ତ ସଂପତ୍ତିର ଦାୟିତ୍ୱ କିଏ ନେବେ, ଏହା ତାଙ୍କ ଚିନ୍ତାର ବିଷୟ ହୋଇଛି । ତାଙ୍କ ଦଳ ପାଇଁ ଅଧିକରୁ ଅଧିକ ମହିଳା କାର୍ଯ୍ୟ କରିବାକୁ ସେ ଚାହାନ୍ତି । ଏହି ମିହଳାମାନଙ୍କୁ ସେ ନିୟମିତ ଉପାର୍ଜନ ଦେବାକୁ ଆଗ୍ରହୀ । " ମୁଁ ଜଣେ ସାଧାରଣ ମହିଳା ଓ ଏକା । ମୁଁ ଏକା

ବିଶେଷ କିଛି କରିପାରିବି ନାହିଁ । ପେରିୟାରଙ୍କର ସ୍ୱପ୍ନକୁ ସ୍ୱାର୍ଥକ କରିବା ପାଇଁ ଅଧିକରୁ ଅଧିକ ମହିଳା ଆଗକୁ ଆସିବା ଦରକାର । ସେମାନେ ଲୋକମାନଙ୍କର ସମାଲୋଚନାକୁ ଶୁଣିବା ଆବଶ୍ୟକ ନାହିଁ, ଲୋକମାନେ ଯାହା କହିବେ ତାକୁ ଗୁରୁତ୍ୱ ଦେବା ଆବଶ୍ୟକ ନାହିଁ । ସେମାନେ ଏସବୁରେ ସ୍ପର୍ଶକାତର ହେବା ଉଚିତ ନୁହେଁ । ସେମାନଙ୍କର ପ୍ରଥମ କାର୍ଯ୍ୟ ହେଉଛି ପେରିୟାରଙ୍କର ଯତ୍ନ ନେବା । ସେମାନେ ପେରିୟାର ଯେଉଁ ଜାଗାକୁ ଯାଉଛନ୍ତି ତାଙ୍କ ସହ ସେଠାକୁ ଯିବା ଦରକାର ଓ ନିଜକୁ ଦଳର ଲୋକମାନଙ୍କ ସହ ପରିଚିତ କରିବା ଆବଶ୍ୟକ । ସେମାନେ ଦଳଦ୍ୱାରା ପ୍ରକାଶିତ ପୁସ୍ତକମାନ ପଢ଼ିବା ସହ ନିଜେ ଲେଖା ପଢ଼ା କରିବା ଠିକ୍ ହେବ । ସେମାନେ କିପରି ଭଲ ଭାଷଣ ଦେବେ ତାହା ଶିକ୍ଷାକରିବା ଦରକାର । ପେରିୟାର ଯେଉଁ ସବୁ ବହି ଲେଖିଛନ୍ତି ତାହାକୁ ପ୍ରତ୍ୟେକ ପରିବାରକୁ ନେବାକୁ ଚେଷ୍ଟା କରିବେ ଓ କୁଦି ଅରସୁ ସମ୍ବାଦପତ୍ରକୁ ଲୋକମାନଙ୍କ ମଧ୍ୟରେ ପ୍ରସାର କରିବା ଆବଶ୍ୟକ । ସଂପ୍ରତି ଏହା ହେଉଛି ଆତ୍ମସମ୍ମାନ ଆନ୍ଦୋଳନର ଆଭିମୁଖ୍ୟ । ମହିଳା ମାନେ ଏ ବିଷୟରେ ଚିନ୍ତା କରିବାକୁ ମୁଁ ନିବେଦନ କରୁଛି ।”

ପେରିୟାର ଅନୁଭବ କଲେ ଯେ ତାଙ୍କ ଦଳ ଭିତରେ ତାଙ୍କ ନୀତି ପ୍ରତି ବିରୋଧ ଭାବ ବଢ଼ିବାରେ ଲାଗିଛି । ସେ ଅନ୍ୟମାନଙ୍କ ଉପରେ ନିର୍ଭର କରିପାରୁ ନାହାନ୍ତି । ତେବେ ମାନିଆମାଇ ତାଙ୍କର ଅତି ବିଶ୍ୱସ୍ତ ପାଲଟିଛନ୍ତି । ସେ ଗୋଟିଏ ଟ୍ରଷ୍ଟ କରିବାକୁ ଚାହିଁଲେ ଓ ମାନିଆମାଇଙ୍କୁ ତାଙ୍କର ଉତ୍ତରଦାୟାଦ କରିବାକୁ ନିଷ୍ପତ୍ତି ନେଲେ । ସେ ମାନିଆମାଇଙ୍କୁ ଏହା ଜଣାଇଲେ, ମାନିଆମାଇ ମଧ୍ୟ ଏଥିରେ ସମ୍ମତ ହେଲେ । ମାନିଆମାଇ ପେରିୟାରଙ୍କ ପରେ ତାଙ୍କର ଆଇନଗତ ଉତ୍ତରାଧିକାରୀ ହେବାକୁ ହେଲେ ସେ ତାଙ୍କୁ ବିବାହ କରିବା ଦରକାର । ତେଣୁ ସେମାନେ ବିବାହ କରିବାକୁ ନିଷ୍ପତ୍ତି ନେଲେ ଓ ଏହାପରେ ପେରିୟାରଙ୍କ ସମସ୍ତ ସଂପତ୍ତିକୁ ନେଇ ଏକ ଟ୍ରଷ୍ଟ ପଂଜୀକୃତ କଲେ ।

ପେରିୟାର ଓ ମାନିଆମାଇଙ୍କର ବିବାହ ବିଷୟ ସାଧାରଣରେ ଜଣାପଡିବା ପରେ ଅନେକ ଲୋକ ଏହି ବିବାହ ନକରିବାକୁ ତାଙ୍କୁ ପତ୍ର ଲେଖିଲେ । କିନ୍ତୁ

ପେରିୟାର ତାଙ୍କ ନିଷ୍ପତ୍ତିରେ ପରିବର୍ତ୍ତନ କଲେ ନାହିଁ । ୧୯୪୯ ଜୁଲାଇ ୯ ତାରିଖରେ ସେମାନଙ୍କର ବିବାହ ପଂଜୀକୃତ ହୋଇଥିଲା । ସେ ସମୟକୁ ପେରିୟାରଙ୍କ ବୟସ ୭୦ ଓ ମାନିଆମାଇଙ୍କର ବୟସ ୩୧ ହୋଇଥିଲା । ବୟସ ଜନିତ କାରଣରୁ ଏହି ବିବାହ ସୁସଂଗତଯୁକ୍ତ ନଥିଲା, ଯାହା ଦ୍ରାବିଡ କାଜାଗମର ନୀତିବିରୁଦ୍ଧ ଥିଲା । ତେବେ କେଉଁ ପରିସ୍ଥିତିରେ ଓ କେଉଁ କାରଣରୁ ଏହି ବିବାହ ହୋଇଥିଲା ତାହା ଥିଲା ଏକ ଭିନ୍ନ କାହାଣୀ ।

ମହିଳାମାନଙ୍କର ଅଧିକାର ବିଷୟରେ ମୁଁ ଏହି ପୁସ୍ତକରେ ପେରିୟାରଙ୍କ ଭାବଧାରାକୁ ଆଲୋଚନା କରିଛି । ପେରିୟାରଙ୍କ ମତ ଥିଲା ଯେ ଜଣେ ମହିଳା ପୂର୍ଣ୍ଣ ସ୍ୱାଧୀନତା ଉପଭୋଗ କରିବା ପାଇଁ କୌଣସି ସନ୍ତାନ ଜନ୍ମ କରିବା ଠିକ୍ ନୁହେଁ । ପୁନଶ୍ଚ ପେରିୟାର ଓ ମାନିଆମାଇଙ୍କର ବିବାହ ଏକ ସାଧାରଣ ବିବାହ ନଥିଲା । ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ଏହା କରାଯାଇଥିଲା । ଏକ ଆଇନଗତ ସଂପର୍କ ପାଇଁ ଏହା ସଂପନ୍ନ ହୋଇଥିଲା । ମାନିଆମାଇ ପେରିୟାରଙ୍କ ସ୍ୱାସ୍ଥ୍ୟର ଯତ୍ନ ନେବା ପାଇଁ ତଥା ଏକ ଦାୟିତ୍ୱ ବହନ କରିବା ପାଇଁ ତାଙ୍କୁ ବିବାହ କରିଥିଲେ । ଏହା ପଶ୍ଚାତରେ ଦାୟିତ୍ୱ ଓ ଏକ ଅଧିକାର ପ୍ରାପ୍ତ ହେବାର ଲକ୍ଷ୍ୟ ରହିଥିଲା । ଏକ ଆଇନଗତ ଅଧିକାର ଏହାଦ୍ୱାରା ମାନିଆମାଇ ଲାଭ କରିଥିଲେ । ଦାଂପତ୍ୟ ସୁଖ ଉଦ୍ଦେଶ୍ୟରେ ଏହି ବିବାହ ନଥିଲା, ତେଣୁ ବିବାହକୁ ସମାଲୋଚନା କରିବା ଏହି ଦୃଷ୍ଟିରୁ ଅର୍ଥ ବହନ କରେ ନାହିଁ । ପେରିୟାରଙ୍କ ପ୍ରଥମ ପତ୍ନୀ ନାଗମଲଙ୍କ ଦେହାନ୍ତ ପରେ ଅନେକ ମହିଳା ଯୁବାବସ୍ଥାରେ ପେରିୟାରଙ୍କୁ ବିବାହ କରିବାକୁ ପ୍ରତିଯୋଗିତା କରିଥିଲେ । ତାଙ୍କର ସାମାଜିକ ପ୍ରଭାବ ଓ ସଂପତ୍ତି ଦୃଷ୍ଟିରୁ ଅନେକ ମହିଳାଙ୍କ ତରଫରୁ ବିବାହ ପାଇଁ ପ୍ରସ୍ତାବ ଆସିଥିଲା । ତେବେ ଏସବୁକୁ ସେ ପ୍ରତ୍ୟାଖ୍ୟାନ କରିଥିଲେ । ଯଦି ଦାଂପତ୍ୟ ସୁଖ ଉଦ୍ଦେଶ୍ୟ ସେ ରଖିଥାନ୍ତେ ସେ ସମୟରେ ବିବାହ କରିଥିଲେ କେହି ତାଙ୍କୁ ସମାଲୋଚନା କରିନଥାନ୍ତେ । ତେଣୁ ମାନିଆମାଇଙ୍କୁ ବିବାହ କରିବା ପଶ୍ଚାତରେ କୌଣସି ବ୍ୟକ୍ତିଗତ ସୁଖର କାମନା ନଥିଲା, ତେଣୁ ଏହି ସମାଲୋଚନା ଅର୍ଥହୀନ ମନେହୁଏ ।

ପେରିୟାର ଏ ବିଷୟରେ ନିଜେ ଉଲ୍ଲେଖ କରିଛନ୍ତି –

"ମୋ ବୟସର କେହି ବ୍ୟକ୍ତି ଯୌନ କାମନା ରଖି ବିବାହ କରିବେ ନାହିଁ ।" ଦ୍ରାବିଡ କାଜାଗମର ଯୁବକମାନେ ଏହି ତର୍କ କାହିଁକି ବୁଝିବେ ନାହିଁ ? ମାନିଆମାଇ ପିଲା ନୁହନ୍ତି । ସେ ୩୦ ବର୍ଷର ଜଣେ ଆତ୍ମମର୍ଯ୍ୟାଦାଯୁକ୍ତ ମହିଳା । ତାଙ୍କ ଇଚ୍ଛା ବିରୁଦ୍ଧରେ ତାଙ୍କୁ ବିବାହ କରିବାକୁ କିଏ ବାଧ କରିପାରିବେ ! ଜଣେ ଲାଂଚ ଦେଇ କ'ଣ ବିବାହ କରିପାରିବେ ? ଜଣେ ବୟସ୍କ ମହିଳାଙ୍କୁ ଏପରି କରିବା ପାଇଁ କିପରି ବାଧ କରାଯାଇପାରିବ ।"

ପରେ ଏହା ସ୍ପଷ୍ଟ ହୋଇଥିଲା ଯେ ସେମାନଙ୍କର ବିବାହ ତାଙ୍କ ଦଳର ସ୍ୱାର୍ଥପାଇଁ ଉଦ୍ଦିଷ୍ଟ ଥିଲା । ପେରିୟାର ବଞ୍ଚିଥିବା ପର୍ଯ୍ୟନ୍ତ ମାନିଆମାଇ ତାଙ୍କ ସହ ଛାଇ ପରି ରହିଥିଲେ, ତାଙ୍କର ଯତ୍ନ ନେଉଥିଲେ । ସେ ପେରିୟାରଙ୍କ ପାଇଁ ଯେକୌଣସି ତ୍ୟାଗ ସହିବାକୁ ପ୍ରସ୍ତୁତ ଥିଲେ । ପେରିୟାରଙ୍କ ପାଇଁ ଓ ଦଳ ପାଇଁ ସେ ସମସ୍ତ ତ୍ୟାଗ ସ୍ୱୀକାର କରିଛନ୍ତି । ପେରିୟାର ଯେଉଁ ସବୁ ସଂପତ୍ତି ମାନିଆମାଇଙ୍କ ନାମରେ କରିଦେଇଥିଲେ, ମାନିଆମାଇ ସେସବୁକୁ ପେରିୟାରଙ୍କ ଦେହାନ୍ତପରେ ତାଙ୍କ ଦଳକୁ ଦାନ କରିଦେଇଥିଲେ ।

ଆନାଦୁରାଇ ପେରିୟାରଙ୍କ ବିବାହ କାରଣକୁ ଉଲ୍ଲେଖକରି ଦଳ ଛାଡି ଦେଇଥିଲେ, ଯଦିବା ସେମାନଙ୍କ ଭିତରେ ବହୁ ପୂର୍ବରୁ ଅନେକ ମତଭେଦ ପ୍ରକାଶ ପାଇଥିଲା । ଯେଉଁମାନେ ପେରିୟାରଙ୍କଠାରୁ ଦୂରେଇ ଯାଇଥିଲେ ସେମାନେ ଦାବ୍ରିଡ ମୁନେତ୍ରା କାଜାଗମ ବା ଡିଏମକେ ନାମରେ ଏକ ନୂଆ ରାଜନୈତିକ ଦଳ ଗଠନ କଲେ । ଏହା ଏକ ରାଜନୈତିକ ଦଳଥିଲା ଓ ନିର୍ବାଚନରେ ଅଂଶଗ୍ରହଣ କରିବା ଏହାର ମୁଖ୍ୟ ଆଭିମୁଖ୍ୟ ଥିଲା । ତେବେ ଦ୍ରାବିଡ କାଜାଗମ ବା ଡିକେ କେବେ ନିର୍ବାଚନରେ ଅବତୀର୍ଣ୍ଣ ହୋଇ ନାହିଁ । ଆନା ଯେତେବେଳେ ଡିକେ ଦଳ ଛାଡିଥିଲେ ଏକ ବିବୃତ୍ତିରେ କହିଥିଲେ – "ଆମେ ଲୁହଭରା ଆଖିରେ ଡିକେ ଛାଡୁଛୁ ।" ପେରିୟାର କହିଲେ "ସାଥିମାନେ ଲୁହଭରା ଆଖିରେ ଦଳ ଛାଡନ୍ତୁ ।" ଏହି ସବୁ ନିଷ୍ପତ୍ତି ତାମିଲ ନାଡୁର ରାଜନୈତିକ ଇତିହାସରେ ଏକ ନୂଆ ଅଧ୍ୟାୟ ସୃଷ୍ଟି କରିଥିଲା ।"

# ୧୮. ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର

ଆନା ଡି.କେ. ଛାଡିଲା ପରେ ପେରିୟାର ଆତ୍ମବିଶ୍ୱାସର ସହ ଦଳକୁ ପରିଚାଳନା କଲେ । ସମାଜରେ କିଛି ବ୍ୟକ୍ତିଙ୍କର ଭେଦଭାବ ପାଇଁ କାରଣମାନଙ୍କୁ ସେ ବ୍ୟାଖ୍ୟା କଲେ ଓ ଲୋକମାନେ କାହିଁକି ଆତ୍ମମର୍ଯ୍ୟାଦାରୁ ବଞ୍ଚିତ ହୋଇଛନ୍ତି ତାହା ଲୋକମାନଙ୍କୁ ବୁଝାଇଲେ । ଈଶ୍ୱର, ପୁରାଣ, ଶାସ୍ତ୍ର, ଧର୍ମ ନାମରେ ଲୋକମାନଙ୍କୁ ନ୍ୟୁନକରି ରଖାଯାଇଛି । ସେ ଏହି ସବୁ ଭାବନା କେବଳ ଭାବପ୍ରବଣ ହୋଇ କହିନାହାନ୍ତି ବରଂ ବିଚାରଶୀଳତା ଓ ବୈଜ୍ଞାନିକ ମନୋଭାବରୁ ଦର୍ଶାଇଛନ୍ତି ।

ପେରିୟାର ଏକ ରକ୍ଷଣଶୀଳ ଈଶ୍ୱର-ବିଶ୍ୱାସୀ ପରିବାରରେ ଜନ୍ମ ହୋଇଥିଲେ ଓ ପିଲାବେଳେ ଅତ୍ୟନ୍ତ ଈଶ୍ୱରବିଶ୍ୱାସୀ ଥିଲେ । ପରେ ସେ ବେଶ୍ ଅନୁସନ୍ଧିତ୍ସୁ ହେଲେ ଓ ଅନେକ ବିଶ୍ୱାସକୁ ପ୍ରଶ୍ନ କଲେ । ଗଭୀର ଅଧ୍ୟୟନ ଓ ମନନ ପରେ ସେ ଭାବିଲେ ଯେ ଏହି ସଂସାରରେ 'ଈଶ୍ୱର' ବୋଲି କୌଣସି ସତ୍ତା ନାହିଁ । ସେ ନିଜର ବୁଦ୍ଧି ଓ ଯୁକ୍ତିଦ୍ୱାରା ଏହା ଲୋକମାନଙ୍କୁ ବୁଝାଇଲେ । ପେରିୟାରଙ୍କ ଦୃଷ୍ଟିରେ ଈଶ୍ୱର ବିଶ୍ୱାସ ଓ ଈଶ୍ୱର ଭାବନାର ଅସ୍ୱୀକାର ଚିନ୍ତାଧାରାର ବିକାଶ ପ୍ରକ୍ରିୟାରେ ସୃଷ୍ଟି ହୋଇଛି । ସେମାନେ ପରସ୍ପର ବିରୋଧୀ ନୁହନ୍ତି । ଅତ୍ୟନ୍ତ ସୂକ୍ଷ୍ମ ସ୍ତରରେ ସେ ଈଶ୍ୱର ଭାବନାକୁ ନେଇ ଗଭୀର ଅନୁଶୀଳନ କରିଛନ୍ତି ଓ ଏହିପରି ଏକ ବିଶ୍ୱାସ ପୋଷଣ କରିବାଦ୍ୱାରା କ'ଣ କ୍ଷତି ହେଉଛି ତାହା ଚିନ୍ତା କରିଛନ୍ତି । ତାଙ୍କର ସମସ୍ତ ଅନୁଶୀଳନ ଯୁକ୍ତିସଂଗତ ଓ ବିଜ୍ଞାନସମ୍ମତ । ସେ କୌଣସି ରୂଢ଼ିବାଦ ବା ଅପବିଶ୍ୱାସଦ୍ୱାରା ପରିଚାଳିତ ହୋଇନାହାନ୍ତି ।

ଅତ୍ୟନ୍ତ ନିଷ୍ଠାର ସହ ସେ ସତ୍ୟ କ'ଣ ଜାଣିବାକୁ ଚେଷ୍ଟା କରିଛନ୍ତି ଓ ତଥ୍ୟ ଭିତ୍ତିରେ କିଛିକୁ ଗ୍ରହଣ କରିଛନ୍ତି । ସେ ସର୍ବଦା ସାମାଜିକ ଦାୟିତ୍ୱବୋଧକୁ ପ୍ରାଧାନ୍ୟ ଦେଇଛନ୍ତି । ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ସେ ବିଭିନ୍ନ ବିଷୟରେ ଅନୁସନ୍ଧାନ କରିଛନ୍ତି । ସେ ତାଙ୍କ ଅନୁସନ୍ଧାନର ସିଦ୍ଧାନ୍ତମାନଙ୍କୁ ପ୍ରକାଶ କରିଛନ୍ତି ଓ ସେସବୁକୁ ଆଲୋଚନାରେ ଦର୍ଶାଇଛନ୍ତି ।

ଈଶ୍ୱରରେ ବିଶ୍ୱାସ ଏକ ବୋକାମୀ । ସାମାଜର ଯେତେ ଉଚ୍ଚ ସ୍ଥାନରେ ଥା'ନ୍ତୁ ନା କାହିଁକି ଯେଉଁମାନେ ଈଶ୍ୱରରେ ବିଶ୍ୱାସ କରନ୍ତି ସେମାନେ ତାଙ୍କ ଭାବନାରେ ଆଦୌ ସ୍ୱଷ୍ଟ ନୁହନ୍ତି । ସେ ଏପରିକି ମହାତ୍ମା ଗାନ୍ଧୀଙ୍କ ସହ ଏ ବିଷୟରେ ଆଲୋଚନା କରି ତାଙ୍କର ଆଧାରହୀନ ବିଶ୍ୱାସ ସଂପର୍କରେ ତାଙ୍କୁ ସୂଚାଇଛନ୍ତି । ଗାନ୍ଧିଜୀ ତାଙ୍କ ପତ୍ରିକା "ୟଙ୍ଗ ଇଣ୍ଡିଆ"ରେ ଲେଖିଥିଲେ- —
ଈଶ୍ୱରଙ୍କ ବ୍ୟତୀତ ସଂସାରରେ କିଛି ବାସ୍ତବ ନୁହେଁ ।

— ସତ୍ୟ ହିଁ ଈଶ୍ୱର ।

— କଷ୍ଟ ସହିବା ଓ ଧୈର୍ଯ୍ୟର ସହ ବଞ୍ଚିବା ଈଶ୍ୱରୀୟ ଗୁଣ ।

— ଈଶ୍ୱର ଏକ ଓ ପ୍ରତାରକମାନେ ନିଜ କର୍ମଦ୍ୱାରା ଦଣ୍ଡିତ ହେବାର ବ୍ୟବସ୍ଥା କରିଛନ୍ତି ।

ଏହି ପରିପ୍ରେକ୍ଷୀରେ ପେରିୟାର ଏହି ପ୍ରଶ୍ନ ଉଠାଇଛନ୍ତି –

୧. ଯଦି ଈଶ୍ୱର ଅଛନ୍ତି, ସଂସାରରେ ସତ୍ୟ କାହିଁକି ପ୍ରତିଷ୍ଠିତ ହେଉନାହିଁ ?

୨. ଈଶ୍ୱର ତାଙ୍କ ଶକ୍ତି ପ୍ରୟୋଗକରି ପୃଥିବୀରେ ଥିବା ମନ୍ଦକଥାକୁ କାହିଁକି ପ୍ରତିହତ କରୁନାହାନ୍ତି ?

୩. ଯଦି ପ୍ରତାରକମାନେ ଯାହା ଚାହୁଁଛନ୍ତି ତାହା କରିପାରୁଛନ୍ତି ତେବେ ଈଶ୍ୱର କେଉଁଠି ଅଛନ୍ତି ?

ଏହି ପ୍ରଶ୍ନମାନ ପେରିୟାର ଗାନ୍ଧୀଜୀଙ୍କୁ ପଚାରିଥିଲେ । ଗାନ୍ଧୀଜୀ ଏହାର ଉତ୍ତରରେ କହିଥିଲେ –

"ଏହି ପ୍ରଶ୍ନମାନ ସାଧାରଣତଃ ଲୋକମାନେ ଉଠାଇଥାନ୍ତି । ଏଗୁଡ଼ିକ ବହୁ ପୁରାତନ । ମୋ ପାଖରେ ସେସବୁର ଉତ୍ତର ନାହିଁ । ତଥାପି ମୁଁ ଈଶ୍ୱରଙ୍କୁ ବିଶ୍ୱାସ କରେ । ମୁଁ ଈଶ୍ୱରଙ୍କୁ ଦେଖି ନାହିଁ, ସେ ଦୃଷ୍ଟିର ଅନ୍ତରାଳରେ । ମୁଁ ଈଶ୍ୱରଙ୍କୁ ପ୍ରମାଣ କରିପାରିବି ନାହିଁ, କାରଣ ସେ ମୋର ଇନ୍ଦ୍ରିୟାତୀତ ।" "ଜଣେ ସାଧାରଣ ମଣିଷ ସମ୍ରାଟ କିଏ ଜାଣିପାରିବେ ନାହିଁ । କିନ୍ତୁ ସେ ଶାସନ କରୁଛନ୍ତି । କିନ୍ତୁ ସେ

ସଚେତନ ଯେ ଜଣେ ରାଜା ନିଶ୍ଚୟ ରହିଛନ୍ତି । ଆମପରି ଲୋକଙ୍କ ପାଇଁ ଈଶ୍ୱର ଏକ ବିରାଟ ଶକ୍ତି । ସେ ଦୃଶ୍ୟମାନ କିନ୍ତୁ ନୁହନ୍ତି । ତଥାପି ଆମେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରିପାରିବା ନାହିଁ ଯେ ସେ ଏ ବିଶ୍ୱର ସୃଷ୍ଟିକର୍ତ୍ତା ଓ ଏ ବିଶ୍ୱର ସମ୍ରାଟ । ମୁଁ ତାଙ୍କୁ ଅନୁଭବ କରେ । ମୋଟାମୋଟି ଭାବେ ଆମେ ଯଦି ଗ୍ରହଣ କରିବା ଯେ ଈଶ୍ୱର ଶାସନକର୍ତ୍ତା ଓ ଆମେ ତାଙ୍କ ଶାସନକୁ ମାନିବୁ, ଆମର ଜୀବନ ସୁଖମୟ ହୋଇପାରିବ । ଯେଉଁମାନେ ଈଶ୍ୱରଙ୍କୁ ଅନୁଭବ କରିବାକୁ ଚାହାନ୍ତି ସେମାନଙ୍କର ଈଶ୍ୱରଙ୍କ ଉପରେ ଗଭୀର ବିଶ୍ୱାସ ରହିବା ଆବଶ୍ୟକ । କିନ୍ତୁ ତାଙ୍କ ନିଜ ବାହାରେ ଯଦି ଜାଣିବାକୁ ଚାହିଁବେ ତେବେ ତାହା ସମ୍ଭବ ହେବ ନାହିଁ । ଶେଷରେ ମୁଁ ଏହା କହିବାକୁ ଚାହେଁ ଯେ ମୋ ପାଖରେ ଆପଣଙ୍କ ପ୍ରଶ୍ନମାନଙ୍କର ଉତ୍ତର ଦେବାରେ କୌଣସି ତଥ୍ୟ ନାହିଁ । ଈଶ୍ୱର ଗବେଷଣାର ଊର୍ଦ୍ଧ୍ୱରେ । ଏହି ବିଷୟରେ କିଛି ଗବେଷଣା କରିବା ଆବଶ୍ୟକ ନାହିଁ । ସଂସାରରେ ଥିବା ସକଳ ମନ୍ଦ ଓ ଅତ୍ୟାଚାରର କାରଣ ଆମେ ବିଜ୍ଞାନରେ ମଧ୍ୟ ପାଇବା ନାହିଁ । ମୁଁ ଏକମତ ଯେ ସଂସାରରେ ବହୁ ମନ୍ଦ ରହିଛ । ଯାହାର କାରଣ ବା ସେ ସବୁ କାହିଁକି ରହିଛି ଆମେ ବୁଝାଇ ପାରିବା ନାହିଁ ।

"ଈଶ୍ୱର ଧୈର୍ଯ୍ୟଶୀଳ, କାରଣ ଆମକୁ ଅନେକ ଅନ୍ୟାୟ ସହିବାକୁ ପଡୁଛି । ତେବେ ସଂସାରରେ ସବୁ ସ୍ଥିତିରେ ତାଙ୍କର କିଛି ଭୂମିକା ନାହିଁ ।'' ଏହା ଥିଲା ଗାନ୍ଧୀଙ୍କର ମତ ।

ମହାତ୍ମା ଗାନ୍ଧୀ ଯେଉଁ ବ୍ୟାଖ୍ୟା ଦେଲେ, ସେଥିରେ କିଛି ସ୍ୱଷ୍ଟତା ରହିଛି କି ? ଯିଏ ବି ଈଶ୍ୱରଙ୍କୁ ବିଶ୍ୱାସ କରୁଛି ସେ ଏଥିରେ ଭ୍ରମିତ ହେବ । ଏହି ଅସ୍ୱଷ୍ଟତା ଅନ୍ୟମାନଙ୍କୁ ମଧ୍ୟ ଭ୍ରମରେ ପକାଇବ । ବହୁ କଥାକୁ ସେମାନେ ଅନ୍ଧାନୁଭାବେ ବିଶ୍ୱାସ କରନ୍ତି ।

ଏହି ବିଷୟକୁ ପେରିୟାର ଅତି ସ୍ୱଷ୍ଟ ଭାବରେ ବ୍ୟକ୍ତ କରିଛନ୍ତି । ଏହା କେବଳ ଗାନ୍ଧୀଜୀଙ୍କୁ ତାଙ୍କର ଉତ୍ତର ନୁହେଁ, ବରଂ ଯେଉଁମାନେ ଈଶ୍ୱର ବିଶ୍ୱାସ କରୁଛନ୍ତି ସମସ୍ତଙ୍କୁ ଏକ ପ୍ରଶ୍ନ । ପେରିୟାର ଯେଉଁ ସବୁ ପ୍ରଶ୍ନ ଉଠାଇଲେ ସେ

ସବୁର କୌଣସି ଉତ୍ତର ଗାନ୍ଧୀଜୀଙ୍କ ବ୍ୟାଖ୍ୟାରେ ରହିଛି କି ? ଭାବନ୍ତୁ । ପେରିୟାରଙ୍କର ପ୍ରଶ୍ନମାନଙ୍କ ବିଷୟରେ ଗାନ୍ଧୀଜୀ କହିଲେ ଯେ ଏଗୁଡ଼ିକ ଭାରି ପୁରୁଣା ପ୍ରଶ୍ନ । ଗାନ୍ଧୀଜୀଙ୍କର ଉତ୍ତର ମଧ୍ୟ ଅତି ପୁରୁଣା- "ଈଶ୍ୱରଙ୍କୁ ଜାଣିବା କଷ୍ଟକର" ।

"ସେହି କଷ୍ଟକର ବ୍ୟାପାରରେ ମୁଣ୍ଡ ପୂରାଇବା ନାହଁ । ଆମେ ଈଶ୍ୱରଙ୍କୁ ବିଶ୍ୱାସ କରିବାଦ୍ୱାରା ହିଁ ବଞ୍ଚିପାରିବା । ଏପରିକି ଆମର ଦୃଢ଼ ବିଶ୍ୱାସ ରହିବା ଆବଶ୍ୟକ ।" ଏହା ଥିଲା ଗାନ୍ଧୀଜୀଙ୍କର ମତ ।

ଉପରୋକ୍ତ ଉତ୍ତର ମାନ ମଧ୍ୟ ପୁରୁଣା ଓ ସେଥିରେ କିଛି ନୂତନତ୍ୱ ନାହିଁ ।

ଗାନ୍ଧୀଜୀଙ୍କ ମତରେ ଅଜ୍ଞ ବ୍ୟକ୍ତିଟି ସମ୍ରାଟ କିଏ ଜାଣେ ନାହିଁ । ସେମିତି ଈଶ୍ୱର କିଏ ସିଏ ଜାଣେ ନାହିଁ । ଏହି ଉତ୍ତର ଅହେତୁକ । ଜଣେ ଯଦି ପ୍ରୟାସ କରେ ରାଜାଙ୍କୁ ଦେଖିପାରିବ । କିନ୍ତୁ ଜଣେ ଯେତେ ଉଦ୍ୟମ କଲେ ବି ଈଶ୍ୱରଙ୍କୁ ଦେଖିପାରିବ ନାହଁ ।

ଆମେ ଯଦି ଈଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସ କରିବା, ଜୀବନ କିପରି ସରଳ ହେବ । ଯେଉଁମାନେ ଈଶ୍ୱରଙ୍କୁ ଆରାଧନା କରୁଛନ୍ତି ସେମାନଙ୍କର ଜୀବନ ସରଳ କି ? ସେମାନେ ସମସ୍ୟାର ସମ୍ମୁଖୀନ ହୁଅନ୍ତି ନାହିଁ କି ? ଯଦି ଗାନ୍ଧୀଜୀଙ୍କର ମତ ଠିକ୍ ହୋଇଥାନ୍ତା, ୯୯% ଲୋକଙ୍କର ଜୀବନ ସମସ୍ୟାରହିତ ହୋଇଥାନ୍ତା । ଏହା କିନ୍ତୁ ବାସ୍ତବ ନୁହେଁ । ଈଶ୍ୱରଙ୍କୁ ବିଶ୍ୱାସ କରିବାଦ୍ୱାରା ସେମାନେ ଜୀବନର ସମସ୍ୟାକୁ ଦୂରେଇ ଦେଇପାରିବେ ନାହିଁ । ଯଦି ଈଶ୍ୱର ସମସ୍ତ ସମସ୍ୟା ଓ ଦୁଃଖକୁ ଅନୁମତି ଦେଇଛନ୍ତି ତଥାପି ଗାନ୍ଧୀଜୀ ସେହି ଈଶ୍ୱରଙ୍କୁ ଧୈର୍ଯ୍ୟଶୀଳ କହିବେ । ତେବେ ମଣିଷମାନଙ୍କର ଏତେ ଦୁଃଖ ଓ ଯନ୍ତ୍ରଣାକୁ ଅନୁମତି ଦେଇଥିବା ବ୍ୟକ୍ତିଙ୍କୁ ଆମେ ଈଶ୍ୱର କହିବା କି ? ଗାନ୍ଧୀଜୀଙ୍କ ମତରେ ଈଶ୍ୱରଙ୍କର କୌଣସି ମନ୍ଦ ଗୁଣ ନାହିଁ । କିନ୍ତୁ ସମସ୍ତ ମନ୍ଦ ପାଇଁ ସେ ଦାୟୀ । ଏହି କଥାର କିଛି ଅର୍ଥ ଅଛି କି ?

ସୁତରାଂ ପେରିୟାର ଯେଉଁ ସବୁ ପ୍ରଶ୍ନମାନ ଉଠାଇଛନ୍ତି ସେସବୁ ଯୁକ୍ତିଯୁକ୍ତ ମନେହୁଏ ।

ଗାନ୍ଧୀଜୀଙ୍କ ବିଚାରରେ ଜଣେ ହତ୍ୟାକାରୀଙ୍କର କୌଣସି ବ୍ୟକ୍ତିଙ୍କୁ ହତ୍ୟାକରିବା ଉଦ୍ଦେଶ୍ୟ ନୁହେଁ । କିନ୍ତୁ ସମସ୍ତଙ୍କର ହତ୍ୟା କ୍ଷେତ୍ରରେ ସେ ହିଁ ଦାୟୀ ।

ପରିଣାମତଃ, ଯଦି ଗାନ୍ଧୀଜୀଙ୍କ ପରି ଜଣେ ବିଶ୍ୱବିଖ୍ୟାତ ଓ ପ୍ରାଜ୍ଞ ବ୍ୟକ୍ତିଙ୍କ ଠାରୁ ଆମେ ଏହିପରି ଉତ୍ତର ପାଇବା, ତେବେ ଈଶ୍ୱରଙ୍କୁ ପ୍ରଶଂସା କରୁଥିବା ବ୍ୟକ୍ତିଙ୍କଠାରୁ କି ପ୍ରକାର ଉତ୍ତର ଆମେ ଆଶା କରିବା ?

ଯେଉଁମାନେ ବି ଈଶ୍ୱରଙ୍କ ବିଷୟରେ ଆଲୋଚନା କରନ୍ତି ସେମାନଙ୍କ ମତରେ ସେ ଈଶ୍ୱରଙ୍କର ନାମ, ରୂପ, ଗୁଣ ନାହିଁ । ସେ ଇନ୍ଦ୍ରିୟ ଦ୍ୱାରା, ବୁଦ୍ଧିଦ୍ୱାରା ଜ୍ଞେୟ ନୁହନ୍ତି । ତେଣୁ ଈଶ୍ୱରଙ୍କ ଉପରେ ଗବେଷଣା କରିବା, ସେ ଅଛନ୍ତି କି ନାହାନ୍ତି ଅନୁଶୀଳନ କରିବା ଏକ ନିରର୍ଥକ ପ୍ରଶ୍ନ ।

ଯଦି ଆମେ କଳ୍ପନା କରୁ ଯେ ଆକାଶରେ ଏକ ଭବନ ରହିଛି, ସେହି ଭବନର ଦ୍ୱାର ଓ ଝରକାମାନଙ୍କର ଦୈର୍ଘ୍ୟ, ପ୍ରସ୍ଥ ବିଷୟରେ ଆମେ ଯୁକ୍ତିକରିବା କି ନାହିଁ ? ତେବେ ଏହିପରି ଏକ ଭବନର ପରିକଳ୍ପନା ହିଁ ମୂର୍ଖାମିର ସୂଚନା ଦିଏ ।

ପେରିୟାର ଗାନ୍ଧୀଜୀଙ୍କର ବ୍ୟାଖ୍ୟାନର ତୁଳନା ଏହି କଳ୍ପନା ସହ କରିଛନ୍ତି ଓ ସମସ୍ତ ବିଷୟଟିକୁ ପ୍ରତ୍ୟାଖ୍ୟାନ କରିଛନ୍ତି ।

ଜଣେ ବ୍ୟକ୍ତି ଈଶ୍ୱରଙ୍କୁ ବିଶ୍ୱାସ କରିବା ଅର୍ଥ ତାଙ୍କର ବିଚାର ଓ ପ୍ରୟାସ କଳୁଷିତ ହୋଇଥାଏ । ସେ ସମୟ ଓ ଅର୍ଥ ନଷ୍ଟ କରନ୍ତି । ସେ ଦାସତ୍ୱ ମନୋଭାବ ତାଙ୍କ ଭିତରେ ବୃଦ୍ଧିକରନ୍ତି । ଏସବୁ ପାଇଁ ପେରିୟାର ଏଥିରେ ନିଜର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି ।

ମଣିଷ ଯେବେଠାରୁ ଚିନ୍ତା କରିଛି, ଈଶ୍ୱର ଭାବନା ତା ମନ ଭିତରକୁ ଆସିଛି । ଏହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଭୋକ ଓ ଯୌନ

ବାସନା ପରି ଈଶ୍ୱରରେ ବିଶ୍ୱାସ ବା ଈଶ୍ୱର ଚିନ୍ତା ସମାନ ନୁହେଁ । ଭାରତରେ ଧରିତ୍ରୀ, ପର୍ବତ, ପବନ, ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ବର୍ଷା, ଘଡ଼ଘଡି ବାଦଲ ଇତ୍ୟାଦିକୁ ଲୋକେ ଈଶ୍ୱର ବୋଲି ଭାବୁଥିଲେ । ଏହା ମଧ୍ୟ ବିଶ୍ୱାସ ଥିଲା ଯେ ଈଶ୍ୱର ଆମର ରୋଗ ଭଲକରିବେ । ଆର୍ଯ୍ୟମାନଙ୍କର ଏ ସବୁ ଥିଲା ପ୍ରାଚୀନ ବିଶ୍ୱାସ ।

ତାମିଲମାନେ ନିଜ ଜାତିର ପ୍ରଭାବଶାଳୀ ନେତା, ବୀର ଯୋଦ୍ଧା ଓ ମହିଳା ମାନଙ୍କର ମୂର୍ତ୍ତିମାନ ପଥରରେ କରି ଗାଁ ମାନଙ୍କରେ ତାହା ପୂଜା କରୁଥିଲେ । ଏହା ବ୍ୟତୀତ ତାମିଲମାନଙ୍କ ମନରେ କୌଣସି ଈଶ୍ୱରର କଳ୍ପନା ସ୍ଥାନ ପାଇନଥିଲା । ତାମିଲମାନେ ଆର୍ଯ୍ୟ ଓ ଅନ୍ୟମାନଙ୍କ ସହ ସଂପର୍କ ପରେ ସେମାନେ ସେମାନଙ୍କ ମୂର୍ତ୍ତି ବ୍ୟତୀତ ଈଶ୍ୱରଙ୍କୁ ପୂଜାକଲେ ।

ଈଶ୍ୱରଙ୍କ ପାଇଁ ତାମିଲ ଭାଷାରେ ସ୍ୱତନ୍ତ୍ର ଶବ୍ଦ ନାହିଁ । ସେମାନଙ୍କର ଈଶ୍ୱରଙ୍କ ଉପରେ ବିଶ୍ୱାସ ଯଦି ପ୍ରାଚୀନ ସମୟରୁ ରହିଥାନ୍ତା ତେବେ ସେଥିପାଇଁ ତାମିଲ ଶବ୍ଦ ଭାଷାରେ ରହିଥାନ୍ତା । ତେଣୁ ତାମିଲମାନେ ପ୍ରଥମରୁ କୌଣସି ଈଶ୍ୱରଙ୍କୁ ପୂଜା କରୁନଥିଲେ । ଲୋକମାନେ ବିଶ୍ୱାସ କରୁଥିଲେ ଯେ ଈଶ୍ୱର ଯେଉଁଠି ରହିବେ, ମଣିଷ ସେଠାକୁ ଯାଇପାରିବ ନାହିଁ । ଉଦାହରଣ ସ୍ୱରୂପ ସେମାନେ ଭାବୁଥିଲେ ଯେ ହିମାଳୟର ଶୀର୍ଷ ଦେଶରେ ଶିବ ବାସ କରୁଛନ୍ତି । ଯେଉଁ ବିଷୟର କାରଣ ବା ବ୍ୟାଖ୍ୟାନ ଲୋକମାନେ ଜାଣିପାରୁ ନଥିଲେ ସେମାନେ ଏହା ଈଶ୍ୱର କୃତ ବୋଲି ଭାବୁଥିଲେ । ଦିନକୁ ଦିନ ଯେତେବେଳେ ଲୋକମାନେ ଚିନ୍ତା କରିବା ଆରମ୍ଭ କଲେ , ଈଶ୍ୱର ଭାବନା ଧୀରେ ଧୀରେ ଅପସାରିତ ହେବା ଦେଖାଯାଉଛି । ଯାହାକୁ ଜଣେ ଈଶ୍ୱରଙ୍କର ଶକ୍ତି ବୋଲି ନେଉଛି, ଅନ୍ୟ ଜଣଙ୍କ ପାଇଁ ତାହା ଗ୍ରହଣଯୋଗ୍ୟ ହେଉ ନାହିଁ । ଜ୍ଞାନ ଓ ବୁଦ୍ଧିର ବିକାଶ ଯୋଗୁ ଏହା ସମ୍ଭବ ହେଉଛି ।

ଆମେ ବୁଦ୍ଧିର ପୂର୍ଣ୍ଣ ବିନିଯୋଗ ନ କରିବା ପର୍ଯ୍ୟନ୍ତ ବା ଏକ ଗବେଷଣା ଲବ୍ଧ ସତ୍ୟ ପ୍ରତିଷ୍ଠିତ ନ ହେବା ପର୍ଯ୍ୟନ୍ତ ଈଶ୍ୱରରେ ଭୟ ସମାଜରୁ ସଂପୂର୍ଣ୍ଣ ଦୂରୀଭୂତ ହେବ ନାହିଁ । କଠିନ ପରିଶ୍ରମ ସତ୍ତ୍ୱେ ଯେଉଁମାନେ ସୁଫଳ ପାଉନାହାନ୍ତି

ଓ ଯେଉଁମାନେ ବ୍ୟବସାୟରେ ବହୁ କ୍ଷତିର ସମ୍ମୁଖୀନ ହେଉଛନ୍ତି ଏହା ଈଶ୍ୱରଙ୍କ କାର୍ଯ୍ୟ କହି କିଛି ସାନ୍ତ୍ୱନା ପାଉଛନ୍ତି । ଲୋକମାନେ ଯେହେତୁ ବିଚାରହୀନ ଭାବେ ଏହାକୁ ବିଶ୍ୱାସ କରୁଛନ୍ତି ଏସବୁ ଘଟୁଛି । ସାଂପ୍ରତିକ ସମୟ ପର୍ଯ୍ୟନ୍ତ ଯେଉଁ ଘଟଣାମାନଙ୍କୁ ଲୋକମାନେ ଈଶ୍ୱରୀୟ କାର୍ଯ୍ୟ ବୋଲି ବିଶ୍ୱାସ କରୁଥିଲେ ବୈଜ୍ଞାନିକ ଜ୍ଞାନର ବିକାଶ ଯୋଗୁ ସେସବୁ ମାନବୀୟ କାର୍ଯ୍ୟ ବୋଲି ଲୋକମାନେ ଗ୍ରହଣ କଲେ । ଏକ ସମୟରେ ହଇଜା, ବସନ୍ତ ଓ ପ୍ଲେଗ ପରି ମହାମାରୀ ରୋଗମାନ ଈଶ୍ୱରଙ୍କ ପ୍ରକୋପରୁ ସୃଷ୍ଟି ହୁଏ ବୋଲି ସମାଜରେ ବିଶ୍ୱାସ ଥିଲା । ଏବେ ଏସବୁ ରୋଗମାନ ପରିଚ୍ଛନ୍ନତାର ଅଭାବ ଓ ଜୀବାଣୁ ଯୋଗୁ ହୁଏ ବୋଲି ଲୋକମାନେ ବିଶ୍ୱାସ କଲେଣି । ଲୋକମାନେ ଯେଉଁ ସବୁ ଘଟଣାର କାରଣ ଜାଣିନଥିଲେ ସେସବୁକୁ ଈଶ୍ୱରୀୟ କାର୍ଯ୍ୟ ବୋଲି ବିଶ୍ୱାସ କରୁଥିଲେ । ଅଜ୍ଞତାର କାରଣରୁ ଘଟଣାମାନଙ୍କୁ ଦୈବୀ ବିଶ୍ୱାସ ଆଧାରରେ ଲୋକମାନେ ବୁଝୁଥିଲେ । ଲୋକମାନଙ୍କର ଅଜ୍ଞତାର ସୁଯୋଗ ନେଇ କେତେକ ଲୋକ ଈଶ୍ୱରଙ୍କ ନାମରେ ଅନ୍ୟମାନଙ୍କୁ ଶୋଷଣ କରୁଥିଲେ । ତାହାର କାରଣ ହେଉଛି ଅଜ୍ଞତା ଯୋଗୁ ସମାଜରେ ଅନେକ ଆଧାରହୀନ ବିଶ୍ୱାସ ରହିଥିଲା । ଧର୍ମମାନେ ଈଶ୍ୱରଙ୍କର ଅସ୍ତିତ୍ୱକୁ ସ୍ୱୀକାର କରି ନେଉଥିଲେ । ତେବେ ପ୍ରଶ୍ନ ଉଠିଲା କେଉଁ ଆଧାରରେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଗ୍ରହଣ କରାଯାଉଛି ! କୁହାଗଲା ଈଶ୍ୱର ଗୋଟିଏ ଦିନ କେତେକ କଥା ସୃଷ୍ଟି କଲେ, ଦ୍ୱିତୀୟ ଦିନ ଅନ୍ୟ କେତେକ ଜିନିଷ ସୃଷ୍ଟି କଲେ । ଏହିପରି ଈଶ୍ୱର ସବୁ ବିଷୟ ସୃଷ୍ଟି କରିଛନ୍ତି ବୋଲି କେତେକ ଲୋକ ଗ୍ରହଣ କଲେ ।

ତେବେ ପ୍ରଶ୍ନ ହେଉଛି ଯଦି ଈଶ୍ୱର ସର୍ବଶକ୍ତିମାନ, ସେ କାହିଁକି ପୃଥିବୀରେ ମନ୍ଦ କଥା ସୃଷ୍ଟି କଲେ ? ସେ କାହିଁକି ବିଷାକ୍ତ ଜୀବାଣୁ, ମାରାତ୍ମକ ରୋଗ, ଦୁଃଖ, ନରହତ୍ୟା, ଚୋରି,ଡକାୟତୀ, ବେଶ୍ୟାବୃତ୍ତି, ଦାସତ୍ୱ, ଏକଛତ୍ରବାଦ ପରି ଘଟଣାମାନ ସୃଷ୍ଟି କଲେ ? ଜନଗଣଙ୍କର ପ୍ରଭୂତ କ୍ଷତି ସାଧନ କରୁଥିବା ଓ ଏପରିକି ନିରୀଶ୍ୱରବାଦୀ ମାନଙ୍କୁ କାହିଁକି ସୃଷ୍ଟି କଲେ ? ଏସବୁ କରିବା ପଛରେ ଈଶ୍ୱରଙ୍କର କ'ଣ ଲକ୍ଷ୍ୟ ରହିଥିଲା ? ଯେଉଁମାନେ ପରେ ମନ୍ଦ ବ୍ୟକ୍ତି ହେବେ ସେହି ପିଲାମାନଙ୍କୁ

ଈଶ୍ୱର କାହିଁକି ସର୍ଜନା କଲେ ? କେତେକ ଶ୍ରେଣୀ ନିଜର କୌଣସି ଦୋଷ ନ ଥାଇ କାହିଁକି ଯନ୍ତ୍ରଣା ପାଉଛନ୍ତି ? ଭୂମିକଂପ, ଆଗ୍ନେୟଗିରି, ବାତ୍ୟା, ବନ୍ୟା ପରି ପ୍ରାକୃତିକ ଦୁର୍ବିପାକମାନ ଈଶ୍ୱର କାହିଁକି ସୃଷ୍ଟି କରିଛନ୍ତି ? ଯଦି ମନ୍ଦ ଲୋକମାନେ ଶେଷରେ କଷ୍ଟ ପାଇବେ, ସେମାନଙ୍କୁ ସୃଷ୍ଟି କରିବା କ'ଣ ଆବଶ୍ୟକତା ରହିଥିଲା ?

ଯେଉଁମାନେ ଈଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସ କରନ୍ତି ସେମାନଙ୍କ ପାଇଁ ଏସବୁ ପ୍ରଶ୍ନର କ'ଣ ଉତ୍ତର ରହିଛି ? ପେରିୟାର ଗଭୀର ଭାବେ ଚିନ୍ତନରୁ ଏହି ପ୍ରସଙ୍ଗ ସବୁ ଉଠାଇଥିଲେ । ଯଦିବା ଈଶ୍ୱର ଭାବନା ସହସ୍ରାଧିକ ବର୍ଷତଳେ ସୃଷ୍ଟି ହୋଇଛି ଈଶ୍ୱର ପ୍ରକୃତରେ କ'ଣ ତାହା ଏ ପର୍ଯ୍ୟନ୍ତ କେହି ବ୍ୟାଖ୍ୟା କରିଛନ୍ତି କି ? ଈଶ୍ୱର ସର୍ବଶକ୍ତିମାନ ଓ ସର୍ବବିଦ୍ୟମାନ ବୋଲି କୁହାଯାଉଛି । ସେ କିନ୍ତୁ କାହା ଆଖିକୁ ଦେଖାଯାନ୍ତି ନାହିଁ । ତାଙ୍କର କିଛି ରୂପ ନାହିଁ, ତାଙ୍କୁ ବ୍ୟାଖ୍ୟା କରାଯାଇ ପାରୁନାହିଁ ବା ତାଙ୍କୁ କଳ୍ପନା କରାଯିବା ସମ୍ଭବ ହେଉ ନାହିଁ । କେତେକ ଲୋକଙ୍କର ଭାବନା ହେଉଛି ଆମେ ଯଦି ବି ଈଶ୍ୱରଙ୍କୁ ଦେଖି ପାରୁନାହୁଁ ବା ଅନୁଭବ କରିପାରୁ ନାହୁଁ ଏହି ବିଶ୍ୱର ସୃଷ୍ଟି ପାଇଁ କେହି ଜଣେ ସ୍ରଷ୍ଟା ରହିଥିବେ । ଯେ ସ୍ରଷ୍ଟା ସେ ହିଁ ଈଶ୍ୱର । ଅନ୍ୟ କେତେକ ମତ ପୋଷଣ କରନ୍ତି ଯେ ପ୍ରକୃତି ହେଉଛି ଈଶ୍ୱର, କେତେକଙ୍କ ମତରେ ସୁନ୍ଦରତା ହେଉଛି ଈଶ୍ୱର । ଅନ୍ୟ ମତରେ ପ୍ରେମ ହେଉଛି ଈଶ୍ୱର ।

ଆମ ଦେଶରେ ଈଶ୍ୱରଙ୍କୁ ମାନବିକ ରୂପ ଦିଆଯାଇଛି । ଈଶ୍ୱରଙ୍କର ପତ୍ନୀ ଓ ସନ୍ତାନ ରହିଛନ୍ତି । ଧନୀ ଲୋକଙ୍କର ଅଭ୍ୟାସ ଏହି ଈଶ୍ୱରଙ୍କ ପାଖରେ ଦେଖାଯାଏ । ପ୍ରତ୍ୟେକ ଈଶ୍ୱର ବା ଦେବତା ପାଇଁ ଏକ ମନ୍ଦିର ରହିଛି । ତାଙ୍କୁ ନେଇ ପୂଜା, ପର୍ବ, ବିବାହ ଓ ପ୍ରଥମ ରାତ୍ରୀ ଇତ୍ୟାଦି ପାଳିତ ହୁଏ । ପୂଜାରେ କୋଟି କୋଟି ଟଙ୍କା ବ୍ୟୟ ହୁଏ । ଈଶ୍ୱରଙ୍କୁ ଏସବୁ ସୁବିଧା ଦେବାକୁ ଲୋକମାନଙ୍କ ପାଖରୁ କୋଟି କୋଟି ଟଙ୍କା ଆଦାୟ ହୁଏ । ଗରିବ ଲୋକମାନଙ୍କୁ ଏସବୁ ଅର୍ଥହୀନ କଥା କହି ଠକାଯାଏ । ଯଦି ଈଶ୍ୱର ତାଙ୍କର ପୂଜା ପାଇଁ ମଣିଷମାନଙ୍କୁ ସୃଷ୍ଟି କରିଛନ୍ତି ତେବେ ଏହାଦ୍ୱାରା ଈଶ୍ୱରଙ୍କର ନ୍ୟୂନତା ପ୍ରକାଶ ପାଉନାହିଁ କି ?

ଯଦି ଜଣେ ଅନ୍ୟ ଜଣେ ତାଙ୍କୁ ପୂଜା କରନ୍ତୁ ବୋଲି ଭାବନ୍ତି ତେବେ ସେ ନୀଚ ମାନସିକତାର ଏହା ମନେହୁଏ । ତେବେ ଈଶ୍ୱର ନିଜର ପୂଜା ପାଇଁ କାହିଁକି କୋଟି କୋଟି ଲୋକଙ୍କୁ ସୃଷ୍ଟି କରିଛନ୍ତି ଓ ସେମାନଙ୍କ ପାଇଁ ଏତେ ଦୁଃଖର ପରିବେଶ ସୃଷ୍ଟି କରିଛନ୍ତି ? ସେହିପରି ଜଣେ ଈଶ୍ୱରଙ୍କୁ ଆମେ କାହିଁକି ଦୟାବାନ କହିବା ?

ଈଶ୍ୱର ବିଶ୍ୱାସୀମାନେ ଈଶ୍ୱରଙ୍କର ସଂଜ୍ଞା ଭିନ୍ନ ଭିନ୍ନ ଭାବେ ଦେଇଛନ୍ତି । ପ୍ରତ୍ୟେକ ଧର୍ମ ପୃଥକ୍ ଭାବେ ଈଶ୍ୱରଙ୍କର ସଂଜ୍ଞା ଦେଇଛନ୍ତି ବା ପରିକଳ୍ପନା କରିଛନ୍ତି ।

ହିନ୍ଦୁମାନେ ଈଶ୍ୱରମାନଙ୍କୁ ମନୁଷ୍ୟ ପରି ସୃଷ୍ଟି କଲେ ଓ ପ୍ରତି ଈଶ୍ୱରଙ୍କ ଯାତାୟତ ପାଇଁ ଏକ ପଶୁ ବା ପକ୍ଷୀକୁ ତାଙ୍କର ବାହାନ ବନାଇଲେ । ସେହିପରି ଈଶ୍ୱରଙ୍କ ପାଇଁ ଜଣେ ରକ୍ଷିତା / ମହିଳାଙ୍କୁ ଖଂଜି ଦେଲେ । ଖ୍ରୀଷ୍ଟିଆନମାନେ ଏକ ଧାରାରେ ଈଶ୍ୱରଙ୍କୁ ଆରାଧନା କରନ୍ତି । ମୁସଲମାନମାନେ ଆକାରବିହୀନ ଈଶ୍ୱରଙ୍କୁ ଆରାଧନା କରନ୍ତି । ଈଶ୍ୱରଙ୍କ ଇଚ୍ଛାନୁଯାୟୀ ଯେଉଁମାନେ କାର୍ଯ୍ୟ କରନ୍ତି ଈଶ୍ୱର ସେମାନଙ୍କର ମଙ୍ଗଳ କରନ୍ତି ଓ ଯେଉଁମାନେ ତାଙ୍କ ଇଚ୍ଛାବିରୋଧୀ କାର୍ଯ୍ୟକରନ୍ତି ଈଶ୍ୱର ସେମାନଙ୍କର ଅମଙ୍ଗଳ କରନ୍ତି । ଏଥିରୁ ଏହା ପ୍ରତୀତ ହୁଏ ଯେ ଈଶ୍ୱର ମଣିଷ ମନର କଳ୍ପନା ବା ମନୁଷ୍ୟର ସୃଷ୍ଟି । ସୁତରାଂ ଈଶ୍ୱର ଏକ କଳ୍ପନା ଓ ମିଥ୍ୟା, ମଣିଷ ମନର କଳ୍ପନା ଅନୁଯାୟୀ ଈଶ୍ୱର ଭାବନାର ଉତ୍ପତ୍ତି । ଏଣୁ ମୋର ବିଚାର ଓ ଆତ୍ମପ୍ରତ୍ୟୟରେ ଈଶ୍ୱର ଭାବନା ଓ ଈଶ୍ୱରବାଦର ବିଲୋପ ନ ହେଲେ ଆମର ବିକାଶ ସମ୍ଭବ ନୁହେଁ ।

ଈଶ୍ୱରବାଦୀଙ୍କ ପାଇଁ ସବୁ କିଛି ଈଶ୍ୱରସୃଷ୍ଟ ବା ଈଶ୍ୱର ନିୟନ୍ତ୍ରିତ । ତେବେ ସେହି ଯୁକ୍ତି ଆଧାରରେ ମନୁଷ୍ୟ ମାନଙ୍କ ଭିତରେ ରହିଥିବା ଉଚ୍ଚ ନୀଚ ଭେଦଭାବ, ଦାରିଦ୍ର୍ୟ, ରୋଗ ମହାମାରୀ ଇତ୍ୟାଦି ଈଶ୍ୱର ସୃଷ୍ଟି କରିଛନ୍ତି । ଏହିପରି ଈଶ୍ୱରଙ୍କର ମୂଳୋତ୍ପାଟନ ଦରକାର । ଆତ୍ମସମ୍ମାନ ରଖିଥିବା ମନୁଷ୍ୟ ମାନେ ଈଶ୍ୱର ଭାବନାରୁ

ମୁକ୍ତ ହେବା ଆବଶ୍ୟକ । ଲୋକମାନେ ଘୋଡା, ମଇଁଷି, ହନୁମାଙ୍କଡ, ମୂଷା, ଶାଗୁଣା, କୁଆ, ସାପ, ଗଛ, ପଥର, ମାଟି ଇତ୍ୟାଦିକୁ ଈଶ୍ୱର ମନେକରି ପୂଜା କରୁଛନ୍ତି । ପ୍ରତ୍ୟେକ ବର୍ଷ ଈଶ୍ୱରମାନଙ୍କର ବିବାହ ଉତ୍ସବ ପାଳନ କରିବାରେ ସମୟ ବ୍ୟୟ କରିଥାନ୍ତି । ପ୍ରତ୍ୟେକ ଦିନ ବିଭିନ୍ନ ପୂଜା ଆରାଧନାରେ ସମୟ ବ୍ୟୟ କରିବା ଦେଖାଯାଏ । କଳ୍ପିତ ଈଶ୍ୱରଙ୍କୁ କେତେ ପ୍ରକାର ଭୋଗ ଦେଇଥାନ୍ତି । ପ୍ରତ୍ୟେକ ପୂଜା ଓ ଆରଧନା ପାଇଁ କେତେ ପ୍ରକାରର ଖାଦ୍ୟ ପଦାର୍ଥ ନଷ୍ଟ କରିଥାନ୍ତି ।

ଈଶ୍ୱରଙ୍କ ପାଇଁ ରକ୍ଷିତାଙ୍କର ଆବଶ୍ୟକତା ରହିଛି କି ? ଏକ ଉତ୍ସବ ପାଳନ କରି ସେମାନେ ଈଶ୍ୱରଙ୍କ ସହ ଜଣେ ରକ୍ଷିତାଙ୍କୁ ମିଳନ କରିଥାନ୍ତି । ଏହାଠାରୁ ହାସ୍ୟାସ୍ପଦ ବିଷୟ କ'ଣ ଥାଇପାରେ । ଏହିପରି କଳ୍ପିତ ଈଶ୍ୱରମାନଙ୍କୁ କୌଣସି ନାମରେ ଅଭିହିତ କରି ଓ ତାଙ୍କ ଭକ୍ତିରେ ଗଦ୍ ଗଦ୍ ହେବାରେ କିଛି ଅର୍ଥ ରହିଛି କି ? କବାଡି ଉତ୍ତୋଳନ, ରାସ୍ତାରେ ଗଡିବା, ମୁଣ୍ଡ ଲଣ୍ଡା ହେବା, ଶରୀରସାରା ପାଉଁଶ ବା ବିଭୂତି ବୋଳିହେବା, ଜିଭରେ ବା ପିଠିରେ ଛୁଞ୍ଚ ଫୋଡିବା, ଦୂଷିତ ଜଳରେ ବୁଡ ପକାଇବା, ମୂର୍ତ୍ତି ଉପରେ କ୍ଷୀର, ଘିଅ, ମହୁ, ଦହି ଢ଼ାଳିବା, ମୂର୍ତ୍ତିକୁ ବିଭିନ୍ନ ଫଳ ପରିବେଷଣ କରିବା ସବୁ ନିରର୍ଥକ କାର୍ଯ୍ୟ ଓ ଏସୁବର କୌଣସି ମୂଲ୍ୟ ନାହିଁ । ଈଶ୍ୱରଙ୍କ ପାଇଁ କୋଟି କୋଟି ଟଙ୍କା ଗହଣା ପ୍ରସ୍ତୁତ କରିବାର କିଛି ଅର୍ଥ ରହିଛି କି ? ମୂର୍ତ୍ତିକୁ ମୂଲ୍ୟବାନ ବସ୍ତ୍ରରେ ଆବୃତ କରିବା କଣ ଆବଶ୍ୟକ ? ସୁନା ଓ ରୂପାରେ ଖଚିତ ବଡ ବଡ ରଥ କାହିଁକି କରାଯିବ ? ଆମର କେତେବେଳେ ବିବେକ ଉଦ୍ରେକ ହେବ ? ଆମେ ଏହି ପ୍ରଶ୍ନ ଉଠାଇଲେ ଲୋକମାନେ ଆମକୁ "ନିରୀଶ୍ୱରବାଦୀ" କହିବେ । ଏହି ସବୁଦ୍ୱାରା ଯେଉଁ ସ୍ୱାର୍ଥପର ଓ ଧୂର୍ତ୍ତଲୋକମାନେ ଉପକୃତ ହେଉଛନ୍ତି ସେମାନେ ଆମ କଥା ଶୁଣି ଧର୍ମ ନଷ୍ଟ ହୋଇଗଲା ଓ ଈଶ୍ୱର ଚାଲିଗଲେ ବୋଲି କହିଥାନ୍ତି ।

ମନ୍ଦିରମାନଙ୍କରେ ରହିଥିବା ବିପୁଳ ସଂପତ୍ତିକୁ ଆଣି ଆମେ ଯଦି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରନ୍ତେ, କଳକାରଖାନା ନିର୍ମାଣ କରନ୍ତେ ତେବେ ବହୁ

ଯୁବକମାନେ କର୍ମନିଯୁକ୍ତି ପାଇବା ସହ ସମାଜରୁ ବହୁ କୁସଂସ୍କାର ଦୂର ହୋଇପାରନ୍ତା । କିଛି ଲୋକ କୌଣସି କାର୍ଯ୍ୟ କରନ୍ତି ନାହିଁ । ସେମାନେ କର୍ମକୁଣ୍ଠ ହୋଇ ଅନ୍ୟର ଉପାର୍ଜନକୁ ଶୋଷଣ କରନ୍ତି । ଯେଉଁମାନେ ଅକ୍ଳାନ୍ତ ପରିଶ୍ରମକରି ଉପାର୍ଜନ କରନ୍ତି ସେମାନେ ନିଜର କଷ୍ଟ ଅର୍ଜିତ ଧନକୁ କଳ୍ପିତ ଦିଅଁ ଦେବତାଙ୍କୁ ଦାନ କରନ୍ତି ଯାହା ଧୂର୍ତ୍ତ ପୂଜକମାନେ ଉପଭୋଗ କରନ୍ତି । ସଂପ୍ରତି ପ୍ରତିଦିନ ବିଜ୍ଞାନ କ୍ଷେତ୍ରରେ ବିକାଶ ହେଉଥିବା ବେଳେ ଆମେ ଏହିପରି କୁସଂସ୍କାର କାଯ୍ୟରେ ଅର୍ଥ ବ୍ୟୟକରିବା ଯଥାର୍ଥ କି ? ପେରିୟାର ଏହି ସବୁ ପ୍ରଶ୍ନ ଲୋକମାନଙ୍କ ପାଖରେ ଉଠାଉଥିଲେ । ଚରିତ୍ରବାନ ହୋଇ ଶାନ୍ତିରେ ରହିବାକୁ ଆମ ଈଶ୍ୱରଙ୍କୁ ବିଶ୍ୱାସ କରିବା ଆବଶ୍ୟକ କହୁଥିବା ବ୍ୟକ୍ତିମାନଙ୍କ ପାଖରେ ପେରିୟାର ଏହି ସବୁ ପ୍ରସଙ୍ଗରେ ଅବତାରଣା କରିଥାନ୍ତି । ପ୍ରକୃତରେ ଈଶ୍ୱର ବିଶ୍ୱାସ ଦ୍ୱାରା ଲୋକଙ୍କ ଭିତରେ ସଂହତି ସୃଷ୍ଟି ହୋଇଥାଏ କି ? ଯଦି ଈଶ୍ୱର ବିଶ୍ୱାସଦ୍ୱାରା ଲୋକମାନଙ୍କ ମଧ୍ୟରେ ଶାନ୍ତି, ସଦ୍‌ଭାବନା ସୃଷ୍ଟି ହେଉଥାନ୍ତା, ତେବେ ଆମ ପୃଥିବୀରେ ଏତେ ଠକାମୀ ରହିନଥାନ୍ତା । ଆପଣ କୌଣସି ଜେଲକୁ ଯାନ୍ତୁ । ସେଠାରେ ଅଧିକାଂଶ ଅପରାଧୀ ହେଉଛନ୍ତି ଈଶ୍ୱରବିଶ୍ୱାସୀ । ଯଦି ଈଶ୍ୱର ବିଶ୍ୱାସଦ୍ୱାରା ଉତ୍ତମ ସ୍ୱଭାବ ସୃଷ୍ଟି ହେବ ବୋଲି କୁହାଯିବ, ତେବେ ଈଶ୍ୱର ବିଶ୍ୱାସୀ ଏତେ ଲୋକ କାହିଁକି ଜେଲରେ ରହିଛନ୍ତି ? ଦେଶରେ ଯେତେ ଅପରାଧ ସୃଷ୍ଟି ହେଉଛି ତାହାର ଶତକଡା ଅନେଶ୍ୱତ ଭାଗ ଈଶ୍ୱର ବିଶ୍ୱାସୀମାନେ କରୁଛନ୍ତି । ଏହି ଲୋକମାନେ ଯେଉଁ ଦେବତା ମାନଙ୍କୁ ସୃଷ୍ଟି କରିଛନ୍ତି ସେମାନଙ୍କର କୌଣସି ଶୃଂଖଳା ଜ୍ଞାନ ନାହିଁ । ଏହି ଦେବତାମାନେ ରକ୍ଷିତାମାନଙ୍କ ଗୃହକୁ ଯାଇଥାନ୍ତି । ଏପରି କେତେକ ଦେବତା ଅଛନ୍ତି ଯେଉଁମାନେ ଅନ୍ୟ ଦେବତାଙ୍କର ପତ୍ନୀଙ୍କ ସହ ପ୍ରେମରେ ଲିପ୍ତ ହୁଅନ୍ତି । ଅନେକ ଦେବତାଙ୍କର ସର୍ବନିମ୍ନ ସଂସ୍କୃତି ଓ ଶୃଂଖଳା ଥିବା ଦେଖାଯାଏ ନାହିଁ । ସେମାନେ କହନ୍ତି ଈଶ୍ୱର ପ୍ରେମମୟ । ତେବେ ଈଶ୍ୱର / ଦେବତାମାନେ କାହିଁକି ବର୍ଚ୍ଛା, ଧନୁ, ତୀର, ଖଣ୍ଡା ହାତରେ ଧରନ୍ତି ? ଯଦି ସେମାନେ କରୁଣାମୟ ସେମାନେ ତେବେ ଅନ୍ୟଧର୍ମ ବିଶ୍ୱାସୀମାନଙ୍କୁ କାହିଁକି ଏତେ ସଂଖ୍ୟାରେ

ହତ୍ୟାକରୁଛନ୍ତି ? ଯଦି ସମାଜରେ ଉଚ୍ଚ-ନୀଚ ଜାତି , ଧନୀ-ଦରିଦ୍ର, ପ୍ରଭୁ-ଭୃତ୍ୟ ପ୍ରଥାମାନ ଈଶ୍ୱର ସୃଷ୍ଟି କରିଛନ୍ତି, ତେବେ ଆମକୁ ସେହି ଈଶ୍ୱରମାନଙ୍କୁ ନଷ୍ଟ କରିବାକୁ ହେବ । ସେପରି ହେଲେ ଆମେ ସେମାନଙ୍କଠାରୁ ମୁକ୍ତ ହୋଇପାରିବା । ମୁହଁରେ ଦାଢ଼ି ଓ ମୁଣ୍ଡରେ ବାଳ ଯଦି ଈଶ୍ୱରଙ୍କ ଇଚ୍ଛାରେ ସୃଷ୍ଟି ହେଉଛି, ତେବେ ଦାଢ଼ି ଓ ବାଳ କାଟିବା ଈଶ୍ୱରଙ୍କ ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ । ଈଶ୍ୱର ଯଦି ଭିକାରି ମାନଙ୍କୁ ସୃଷ୍ଟି କରିଛନ୍ତି ତେବେ ଭିକାରିଙ୍କୁ ଖାଦ୍ୟ ପରିବେଷଣ କରିବା ଈଶ୍ୱରୀୟ ନିୟମ ବିରୁଦ୍ଧ । କାରଣ କେତେକ ଲୋକ ଭିକାରି ହୋଇ ଜୀବନ ନିର୍ବାହ କରନ୍ତୁ ଈଶ୍ୱରଙ୍କ ଇଚ୍ଛା । ଯଦି ଈଶ୍ୱର ଆମକୁ ରୋଗ ଦେଇଛନ୍ତି ତେବେ ରୋଗ ଭଲକରିବା ଏକ ଈଶ୍ୱରବିରୋଧୀ କାର୍ଯ୍ୟ । ପେରିୟାର ଏହିପରି ପ୍ରଶ୍ନମାନ ଲୋକମାନଙ୍କୁ ପଚ଼ରୁଥିଲେ ଓ ଈଶ୍ୱର ଭାବନା କେତେ ଅବାସ୍ତବ ତାହା ଦର୍ଶାଉଥିଲେ ।

ସତ କହିବାକୁ ଗଲେ ଶଙ୍କରାଚାର୍ଯ୍ୟ ବି ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି ନାହିଁ । ଆପଣ ଚ଼ହିଁଲେ ଏହି ପ୍ରଶ୍ନ ତାଙ୍କୁ ପଚ଼ରିପାରନ୍ତି । ସେ ମାୟାବାଦର ପ୍ରବକ୍ତା । ସେ ବିଭୂତି ପ୍ରୟୋଗ କରନ୍ତି । କିନ୍ତୁ ସେ ଜଣେ ଦେବୀଙ୍କୁ ପୂଜାକରନ୍ତି । ଏସବୁ ଯେ କେବଳ ପ୍ରତାରଣା ପେରିୟାର ଏହା ଦର୍ଶାଇଛନ୍ତି ।

ଯଦି ଈଶ୍ୱରମାନଙ୍କର ଜନ୍ମ-ମୃତ୍ୟୁ ନାହିଁ, ତେବେ ଈଶ୍ୱରଙ୍କର ଜନ୍ମଦିବସ କାହିଁକି ପାଳନ କରାଯାଉଛି ! ଈଶ୍ୱର ଯଦି ଶକ୍ତିମାନ, ତବେ ମନ୍ଦିରର ଦ୍ୱାରକୁ କାହିଁକି ଚ଼ାବି ପକାଯାଉଛି ? ମନ୍ଦିର ମାନଙ୍କରେ ବିଜୁଳି-ପ୍ରତିରୋଧକ ଯନ୍ତ୍ର ଲଗାଇବାର କିଛି ଅର୍ଥ ରହିଛି କି ?ଈଶ୍ୱର ବିଶ୍ୱାସ ଏକ ଆଧାରହୀନ ବିଶ୍ୱାସ । ଏହା ଲୋକମାନଙ୍କର ଅଜ୍ଞତାର ପରିଣାମ । ଗାନ୍ଧୀଜୀଙ୍କ ମତରେ ଈଶ୍ୱରଙ୍କ ବିଷୟରେ କେହି କିଛି ଗବେଷଣା କରିବା ଆବଶ୍ୟକ ନାହିଁ । ଲୋକମାନେ ଈଶ୍ୱରଙ୍କୁ କେବଳ ବିଶ୍ୱାସ କରିବା ଦରକାର । ତେବେ ଈଶ୍ୱର ପ୍ରକୃତରେ କ'ଣ ? ତାଙ୍କ ଶକ୍ତି କ'ଣ ? ତାଙ୍କର ଦାୟିତ୍ୱ କ'ଣ ? ଯେଉଁମାନେ ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି, ଏହି ପ୍ରଶ୍ନମାନଙ୍କୁ ସେମାନେ ଉଠାଇ ନଥାନ୍ତି । ମୁଁ ଏହି ପ୍ରଶ୍ନ ଲୋକମାନଙ୍କୁ ପଚ଼ରିଥାଏ ।

ଗତ ଷାଠିଏ ସତୁରୀ ବର୍ଷ ଧରି ଈଶ୍ୱର ଭାବନା ନେଇ ମୁଁ ଗମ୍ଭୀର ଭାବେ ଚିନ୍ତାକରିଛି । ମୋର ସେହି ଅନୁଶୀଳନରୁ ମୁଁ ଏହି ପ୍ରଶ୍ନମାନଙ୍କୁ ଉଠାଉଛି । ପ୍ରକୃତରେ ଲୋକମାନେ ସତ୍ୟ କ'ଣ ଜାଣିବାକୁ ଆଗ୍ରହୀ ନୁହନ୍ତି । ଯଦି କେହି ତାଙ୍କ ଈଶ୍ୱର ବିଶ୍ୱାସରୁ କହନ୍ତି ଯେ ସେ ସମାଜରୁ ଜାତି ଦୂରକରିଦେବେ, ତାହା ବାସ୍ତବ ନୁହେଁ । ଈଶ୍ୱରଙ୍କୁ ବାଦ୍ ଦେଇ ଜାତି କିପରି ସୃଷ୍ଟି ହେଲା ? ଯେ ଧର୍ମରେ ବିଶ୍ୱାସ ରଖନ୍ତି ସେ ଜାତିକୁ ଲୋପ କରିଦେବେ ଏହା କହିପାରିବେ ନାହିଁ । ଧର୍ମକୁ ଛାଡି ଜାତି କିପରି ସୃଷ୍ଟି ହୋଇଛି ? ଯେଉଁ ଲୋକ ଶାସ୍ତ୍ରରେ ବିଶ୍ୱାସ କରୁଛି, ସେ କିପରି ଜାତିକୁ ନଷ୍ଟ କରିପାରିବେ ? ଶାସ୍ତ୍ରକୁ ବାଦ୍ ଦେଇ ଜାତି କିପରି ଉଦ୍‌ଭବ ହୋଇଛି ? ପେରିୟାରଙ୍କ ମତରେ ଜାତିର ଭାବନାକୁ ବିଲୋପ କରିବାକୁ ହେଲେ, ଈଶ୍ୱର, ଧର୍ମ, ଶାସ୍ତ୍ରକୁ ବି ନଷ୍ଟ କରିବାକୁ ହେବ ।

## ଜନ୍ମ ମୃତ୍ୟୁକୁ ଈଶ୍ୱର କିପରି ନିୟନ୍ତ୍ରଣ କରିବେ ?

ଖ୍ରୀଷ୍ଟାବ୍ଦ ଆରମ୍ଭ ସମୟକୁ ପୃଥିବୀର ଲୋକସଂଖ୍ୟା ୨୦ କୋଟି ଥିଲା । ୫୦୦ ଖ୍ରୀଷ୍ଟାବ୍ଦ ବେଳକୁ ପୃଥିବୀର ଜନସଂଖ୍ୟା ୪୫ କୋଟି ହେଇଥିଲା । ଖ୍ରୀଷ୍ଟାବ୍ଦ ୮୦୦ ବେଳକୁ ଲୋକସଂଖ୍ୟା ବୃଦ୍ଧି ପାଇ ହୋଇଥିଲା ୭୦ କୋଟି । ୧୯୧୫ରେ ଲୋକସଂଖ୍ୟା ୧୬୫ କୋଟି ଓ ୧୯୫୪ ବେଳକୁ ଏହା ହୋଇଥିଲା ୩୨୬ କୋଟି । ୧୯୬୪ ବେଳକୁ ପୃଥିବୀର ଲୋକସଂଖ୍ୟା ୩୫୦ କୋଟିରେ ପହଞ୍ଚିଛି । ୧୯୫୪ ବେଳକୁ ଅନ୍ୟ ଦେଶମାନଙ୍କରେ ଲୋକମାନଙ୍କର ହାରାହାରି ଆୟୁଷ ୫୦ ରୁ ୬୦ ବର୍ଷ ଥିଲା । ସେହି ସମୟକୁ ଭାରତରେ ଲୋକମାନଙ୍କର ହାରାହାରି ବୟସ ୩୭ ବର୍ଷ ଥିଲା । ୧୯୬୪ ବେଳକୁ ଅନ୍ୟ ଦେଶମାନଙ୍କରେ ଲୋକଙ୍କର ହାରାହାରି ଆୟୁ ୬୬ ରୁ ୭୦ ବର୍ଷ ଥିବାବେଳେ ଭାରତରେ ଏହା ୫୦ ବର୍ଷକୁ ବୃଦ୍ଧି ପାଇଥିଲା । ସେହିପରି ଜନ୍ମ ଓ ମୃତ୍ୟୁର ହାରରେ ବହୁତ ହ୍ରାସ ଘଟିଥିଲା ।

ଏହି ସବୁ ଘଟଣାରେ ଈଶ୍ୱରଙ୍କର ଭୂମିକା କ'ଣ ? ପ୍ରକୃତରେ ଜ୍ଞାନ ବିଜ୍ଞାନରେ ପ୍ରଭୂତ ଉନ୍ନତି ସାଧନ ଯୋଗୁଁ ଏହି ସବୁ ପରିବର୍ତ୍ତନ ଘଟିଛି । ରୋଗ

ଜନିତ କାରଣରୁ ମୃତ୍ୟୁକୁ କିଛି ପ୍ରତିହତ କରାଯାଇଛି । ହଇଜା, ବସନ୍ତ ପରି ମହାମାରୀମାନଙ୍କୁ ସଂପୂର୍ଣ୍ଣ ରୂପେ ନିୟନ୍ତ୍ରଣ କରାଯାଇ ପାରିଛି । ଯଦି ରୋଗ, ମହାମାରୀ ଈଶ୍ୱରଙ୍କ ଇଚ୍ଛାରେ ଘଟେ, ତେବେ ମଣିଷ ସେସବୁକୁ କିପରି ନିୟନ୍ତ୍ରଣ କରିପାରୁଛି ।

ଅତୀତରେ ଅନେକ ମହିଳା ପ୍ରସବ ସମୟରେ ଶିଶୁ ସହ ମୃତ୍ୟୁବରଣ କରୁଥିଲେ । ସଂପ୍ରତି ଚିକିତ୍ସା ବିଜ୍ଞାନ ସାହାଯ୍ୟରେ ମହିଳାମାନେ ସୁବିଧାରେ ଶିଶୁମାନଙ୍କୁ ପ୍ରସବ କରିପାରୁଛନ୍ତି । ଅତୀତରେ ପ୍ରସବଜନିତ ଜ୍ଞାନର ଅଭାବରୁ ମା ମାନେ ପ୍ରସବ ସମୟରେ ବହୁ ଯନ୍ତ୍ରଣା ପାଉଥିଲେ ଓ ପ୍ରସବ ନହେଲେ ମୃତ୍ୟୁବରଣ କରୁଥିଲେ । ଏବେ ଚିକିତ୍ସା ବିଜ୍ଞାନରେ ଦ୍ରୁତ ଅଗ୍ରଗତି ଯୋଗୁ ଏହା ସହଜ ହୋଇପାରିଛି । କେଉଁ ଈଶ୍ୱରଙ୍କର ଏଥିରେ କୌଣସି ଭୂମିକା ନାହିଁ । ସୁତରାଂ ଜନ୍ମ ମୃତ୍ୟୁର ଘଟଣା କୌଣସି ଈଶ୍ୱରଙ୍କର ନିୟନ୍ତ୍ରଣ ଭିତରେ ନାହିଁ ।

## ଈଶ୍ୱର ଓ ଧର୍ମ ସମ୍ବନ୍ଧରେ ଲିଖିତ କାହାଣୀ

ଈଶ୍ୱର ଓ ଧର୍ମକୁ ଆଧାରକରି ରଚିତ ହୋଇଥିବା କାହାଣୀମାନ ଆମର ବିଚାରଶୀଳତାକୁ ନଷ୍ଟ କରିଦେଇଛି ଫଳରେ କିଛି ମହତ୍ତର ବିଷୟ ଆମେ ଚିନ୍ତା କରିପାରିବୁ ନାହିଁ । ଆମକୁ କୁହାଯାଇଛି ଯେ ଈଶ୍ୱରଙ୍କୁ ବିଶ୍ୱାସ କର । ସେ ବିଷୟରେ କିଛି ପ୍ରଶ୍ନ ଉଠାଅ ନାହିଁ । ଫଳରେ ଆମର ବୌଦ୍ଧିକ କୌତୂହଳତାକୁ ନଷ୍ଟ କରାଯାଇଛି । ଈଶ୍ୱରଙ୍କୁ ନେଇ ଆମର ପାଗଳାମୀ ଦୂର ନହେଲେ ଆମେ ଜ୍ଞାନ ବିଜ୍ଞାନ ବିଷୟରେ ଅଗ୍ରଗତି କରିପାରିବା ନାହିଁ । ଈଶ୍ୱର ବୋଲି କିଛି ସତ୍ତା ନାହିଁ । ସବୁକିଛି ପ୍ରକୃତି ଦ୍ୱାରା ଉଦ୍‌ଭବ ହୋଇଛି । ଏହାଠାରୁ ଅଧିକ କିଛି କୁହାଯାଇ ପାରିବ ନାହିଁ । ଯଦି ଈଶ୍ୱର ସର୍ବଶକ୍ତିମାନ, ତେବେ ଜଣେ ଚିନ୍ତାଶୀଳ ବ୍ୟକ୍ତି ଏହା କାହିଁକି ବୁଝିପାରିବ ନାହିଁ । ଯଦି ଈଶ୍ୱର ସର୍ବଶକ୍ତିମାନ, ତେବେ ସେ କାହିଁକି ଏପରି ବ୍ୟକ୍ତିମାନଙ୍କୁ ସୃଷ୍ଟି କରିଛନ୍ତି ଯେଉଁମାନେ ତାଙ୍କୁ ବିଶ୍ୱାସ କରିବାକୁ ଅସ୍ୱୀକାର କରିବେ ?

ଲୋକମାନଙ୍କ ପାଇଁ ଈଶ୍ୱର କିପରି ଦରକାରୀ ?ଏକ ସର୍ବଶକ୍ତିମାନ ଈଶ୍ୱରଙ୍କ ସୃଷ୍ଟିରେ ଜନ୍ମ, ମୃତ୍ୟୁ, ଭଲ ମନ୍ଦ, ସୁଖ-ଦୁଃଖ, କୋମଳତା ଓ ନିଷ୍ଠୁରତା କାହିଁକି ରହିଛି ? ସଂସାରରେ ଏତ ମନ୍ଦ, ଦୁଃଖ, ଅନ୍ୟାୟ ରହିବାର କାରଣ କ'ଣ ?

ତାମିଲ ଓ ଦ୍ରାବିଡ ଲୋକମାନଙ୍କ ପାଇଁ ପ୍ରଚଳିତ ଈଶ୍ୱରଙ୍କର କିଛି ଆବଶ୍ୟକତା ନାହିଁ । ଏବେ ତାମିଲମାନେ ଯେଉଁ ଈଶ୍ୱରଙ୍କୁ ଆରାଧନା କରୁଛନ୍ତି ସେସବୁ ଆର୍ଯ୍ୟମାନଙ୍କଦ୍ୱାରା ସୃଷ୍ଟି ହୋଇଥିଲା । ଆର୍ଯ୍ୟମାନେ ଉତ୍ତର - ପଶ୍ଚିମ ଭାଗରୁ ଭାରତବର୍ଷକୁ ଆସିଥିଲେ । ଯେଉଁମାନେ ଈଶ୍ୱରଙ୍କୁ ବିଶ୍ୱାସ କରୁଛନ୍ତି ସେମାନଙ୍କୁ ମୁଁ ଆହ୍ୱାନ ଦେଉଛି । ଯଦି ଈଶ୍ୱରଙ୍କ ଅସ୍ତିତ୍ୱକୁ କେହି ପ୍ରମାଣ କରିଦେବେ, ତେବେ ମୁଁ ତାଙ୍କୁ ୪୫୦୦୦ଟଙ୍କା ପ୍ରଦାନ କରିବି ।

"ସର୍ବ ଶକ୍ତିମାନ ଜଣେ ଈଶ୍ୱର ରହିଛନ୍ତି । ସଂସାରରେ ସବୁ ଶକ୍ତି, ସେହି ଈଶ୍ୱରଙ୍କ ପାଖରେ ରହିଛି । ମୁଁ ସେହି ଈଶ୍ୱରଙ୍କୁ ବିଶ୍ୱାସ କରୁଛି । ମୁଁ ତାଙ୍କର ନିର୍ଦ୍ଦେଶ ମତେ କାର୍ଯ୍ୟ କରିବି ।" ଜଣେ ବ୍ୟକ୍ତି ଅନ୍ତତଃ ଏହା ପ୍ରମାଣ କରନ୍ତୁ । ସେ ତାଙ୍କର କାର୍ଯ୍ୟଦ୍ୱାରା ଏହାର ପ୍ରମାଣ ଦିଅନ୍ତୁ । ଅନ୍ତତଃ କେହି ଜଣେ ସାଧୁ ବ୍ୟକ୍ତି ଆଗକୁ ଆସି ଏହା ପ୍ରମାଣସିଦ୍ଧ ଭାବେ ଦର୍ଶାନ୍ତୁ ।

ଈଶ୍ୱର/ଦେବତାମାନଙ୍କୁ ଆମେ ସୃଷ୍ଟି କରିଛେ । ସେହି ଦେବତାଙ୍କ ପାଇଁ ଆମେ ଦେଉଳ ମନ୍ଦିର ପ୍ରତିଷ୍ଠା କରିଛେ । ମନ୍ଦିରମାନଙ୍କରେ ଆମେ ଦେବତାମାନଙ୍କୁ ସ୍ଥାନ ଦେଇଛେ । କେତେକ କହନ୍ତି ଆମେ ନିମ୍ନ ଜାତିରେ ଜନ୍ମ ହୋଇଛେ । ସେମାନଙ୍କ କଥାରେ ଆମେ ନିଜକୁ ନ୍ୟୂନ ମନେକରିଛେ । ସେହି ଦେବତାମାନଙ୍କୁ ଆମେ ସ୍ପର୍ଶ କରିପାରିବା ନାହିଁ । ସେହି ଦେବତାମାନଙ୍କ ପାଖକୁ ଆମେ ଯାଇପାରିବା ନାହିଁ । ଏହା ଏକ ଅସମ୍ମାନଜନକ ବ୍ୟାପାର ନୁହେଁ କି ? ଏହା ଆମମାନଙ୍କ ପାଇଁ ଅସମ୍ମାନଜନକ ନୁହେଁ କି ?

ସମୟ ବଦଳି ଯାଇଛି । ଆମେ ବିଜ୍ଞାନ ଧାରାରେ ବିକଶିତ ହୋଇଛେ । ଏହି ସ୍ଥିତିରେ ଅତୀତରେ କୁହାଯାଇଥିବା କଥାକୁ ଆମେ କାହିଁକି ବିଶ୍ୱାସ କରିବା । ବହୁ ଅତୀତରେ ସେମାନେ ଈଶ୍ୱର, ଧର୍ମ ଓ ଶାସ୍ତ୍ର ସବୁ ସୃଷ୍ଟି କରିଥିଲେ । ହିନ୍ଦୁଧର୍ମ

ଦେବତାମାନେ ଯେତେ ମନ୍ଦ, ସେପରି ଦେବତା କେଉଁଠି ନାହାନ୍ତି । ଆମ ଧର୍ମ ଯେପରି ଆଦିମ, ସେପରି ଧର୍ମ ପ୍ରାୟ ନାହିଁ । ଯଦି ପ୍ରକୃତରେ ଏକ୍ ଈଶ୍ୱର ରହିଥାନ୍ତେ ସେ ବୁଦ୍ଧିମାନ, ଶ୍ରଦ୍ଧାଶୀଳ ଓ ସତ୍ୟବାଦୀ ଲୋକମାନଙ୍କ ପ୍ରତି ଦୟାଳୁ ହୋଇଥାନ୍ତେ, ଅନ୍ଧ ଭକ୍ତମାନଙ୍କ ପାଇଁ ନୁହେଁ ।

ବେଦାନ୍ତ ଅନୁସାରେ ପୃଥିବୀ, ମନୁଷ୍ୟ ଓ ମନୁଷ୍ୟର ଚିନ୍ତାସକଳ ସବୁ ମାୟା । ଏହା ଯଦି ସତ୍ୟ, ତେବେ ଈଶ୍ୱର ଅଛନ୍ତି ଭାବନାଟି ମଧ୍ୟ ମାୟା । ପେରିୟାର ସର୍ବଦା କହନ୍ତି – "ମୋତେ ଅନ୍ଧାନୁଭାବେ ବିଶ୍ୱାସ କରନାହିଁ । ମୁଁ ଯଦି ଠିକ୍ କହୁଛି ବୋଲି ବିଶ୍ୱାସ ଆସୁଛି, ତେବେ ମୋତେ ବିଶ୍ୱାସ କର ।"

ପେରିୟାର ନିମ୍ନ ବିବୃତ୍ତିମାନ ଦେଇଛନ୍ତି । ତାଙ୍କର ତିନିଟି ବିବୃତ୍ତି ହେଉଛି –

(୧) ଯିଏ ଈଶ୍ୱର ଭାବନା ସୃଷ୍ଟି କଲେ ସେ ଅଜ୍ଞ ।

(୨) ଯିଏ ଈଶ୍ୱର ଭାବନାକୁ ପ୍ରଚାର କରୁଛନ୍ତି, ସେ ଧୂର୍ତ୍ତ ।

(୩) ଯିଏ ଈଶ୍ୱରଙ୍କୁ ଆରାଧନା କରନ୍ତି ସେ ଆଦିମ ।

ଆପଣ ଯଦି ଏହି ବକ୍ତବ୍ୟ ମାନଙ୍କୁ ଉପର ଠାଉରିଆ ଭାବେ ନେବେ, ତେବେ ଆପଣଙ୍କୁ ଆଘାତ ଲାଗିବ । କିନ୍ତୁ ଆପଣ ଯଦି ଗମ୍ଭୀର ଭାବେ ସେ ସବୁକୁ ବିଚାର କରିବେ, ଆପଣ ସେସବୁକୁ ସତ୍ୟ ବୋଲି ସ୍ୱୀକାର କରିବେ । ଜ୍ଞାନ ବିଜ୍ଞାନର ବିକାଶ ହୋଇନଥିଲା ବେଳେ ଈଶ୍ୱର ଭାବନା ସୃଷ୍ଟି ହୋଇ ପ୍ରସାରିତ ହୋଇଥିଲା ସେତେବେଳେ ଲୋକମାନଙ୍କ ମଧ୍ୟରେ ବିଚାରଶୀଳ ମନୋଭାବର ବିଶେଷ ବିକାଶ ଲାଭ କରିନଥିଲା । ମଣିଷ ଯେତେବେଳେ ଆଦିମ ସ୍ଥିତିରେ ରହିଥିଲା ଭୟ ଓ ଅଜ୍ଞତା ଯୋଗୁଁ ସେ ଈଶ୍ୱର ଭାବନା ସୃଷ୍ଟି କରିଥିଲା । ଯିଏ ଆଜିର ଯୁଗରେ ସେହି ଭାବନାରେ ବିଶ୍ୱାସ ସ୍ଥାପନ କରୁଛି ସେ ଏହି ଆଦିମ ସ୍ଥିତିରେ ରହିଛି । ନିଜର ସ୍ୱାର୍ଥ ପାଇଁ ବା ପ୍ରାଧାନ୍ୟ ବିସ୍ତାର ପାଇଁ ଈଶ୍ୱର ଭାବନାକୁ ପ୍ରସାର କରାଯାଉଛି । ଯିଏ ଈଶ୍ୱର ଭାବନାର ପ୍ରସାର କରୁଛନ୍ତି ସେ ହେଉଛନ୍ତି ଅସାଧୁ ।

"ପ୍ରାର୍ଥନାର ଅନ୍ୟନାମ ହେଉଛି ଧନଲିପ୍‌ସା" ବୋଲି ପେରିୟାର ମନ୍ତବ୍ୟ ଦେଇଛନ୍ତି । ଯଦି ଧନଲିପ୍‌ସାର ମନୋଭାବ, ଆଳସ୍ୟ ଓ ଠକିବାରୁ ଜଣେ ମୁକ୍ତ ରହିବ ତେବେ ପ୍ରାର୍ଥନାର କୌଣସି ଆବଶ୍ୟକତା ରହିବ ନାହିଁ । ଜଣେ ନିଜର ପ୍ରଚେଷ୍ଟା ମାଧ୍ୟମରେ ଯେ କୌଣସି ପଦକୁ ଯାଇ ପାରନ୍ତି । ନିଜର ଉଦ୍ୟମ ବ୍ୟତୀତ ଜଣେ ପ୍ରାର୍ଥନାଦ୍ୱାରା କିଛି ହାସଲ କରିପାରିବ କି ? ଏହି ଦୃଷ୍ଟିରୁ ମୁଁ ଏହାକୁ ଧର୍ମଲୀପ୍‌ସାର ମନୋଭାବ କହୁଛି । ଯିଦ ଈଶ୍ୱର ସର୍ବତ୍ର ବିଦ୍ୟମାନ ଓ ସବୁ କିଛିକୁ ସେ ଦେଖୁଛନ୍ତି ତେବେ ପ୍ରାର୍ଥନା ଏକ ଦେଣ-ନେଣ ବ୍ୟବସ୍ଥା । ମୁଁ ଯଦି ଏହା ଆପଣଙ୍କ ପାଇଁ କରିଦିଏ, ଆପଣ ମୋ ପାଇଁ ଏହା କରିଦେବେ କି ନାହିଁ ? ସୁତରାଂ ପେରିୟାରଙ୍କ ମତରେ ପ୍ରାର୍ଥନା ହେଉଛି ଏକ ଠକାମୀ ବା ଛଳନାତ୍ମକ କାର୍ଯ୍ୟ ।

# ୧୯. ପୁରାଣମାନଙ୍କ ଉପରେ ପେରିୟାରଙ୍କ ଗବେଷଣା

ପେରିୟାର ଯେଉଁ ପରିବାରରେ ଜନ୍ମ ହୋଇଥିଲେ ଓ ଯେଉଁ ପରିବେଶରେ ଗଢ଼ି ଉଠିଥିଲେ ସେଥିରେ ପୁରାଣମାନଙ୍କ ବିଷୟରେ ଜାଣିବାର ଅନେକ ସୁଯୋଗ ମିଳିଥିଲା । ତାଙ୍କ ସମୟରେ ପୁରାଣ, ଇତିହାସ ଓ ଶାସ୍ତ୍ର ତଥା ଈଶ୍ୱର ସମ୍ବନ୍ଧୀୟ ଲେଖାମାନଙ୍କୁ ସେ ଅନେକ ଅଧ୍ୟୟନ କରିଥିଲେ । କ୍ରିପାନନ୍ଦ ବରିୟାର ବି ଅନେକ କିଛି ପଢ଼ିଥିଲେ । ସେ କେତେକ ବିଷୟକୁ ଗମ୍ଭୀରତାର ସହ ଅଧ୍ୟୟନ କରିବା ସହ ସେଥିରେ ଆଲୋଚନାମାନ କରୁଥିଲେ । ସେ ବିଭିନ୍ନ ବିଷୟକୁ ବ୍ୟଙ୍ଗର ସହ ସୁନ୍ଦର ବୁଝାଉଥିଲେ । ପେରିୟାର ମଧ୍ୟ ଏକ ବିଶ୍ଳେଷଣାତ୍ମକ ଦୃଷ୍ଟି ନେଇ ପୁରାଣ ମାନଙ୍କୁ ପଢୁଥିଲେ ଓ ସେସବୁର ସତ୍ୟା ସତ୍ୟ ବିଷୟରେ ଲୋକ ମାନଙ୍କୁ ବ୍ୟକ୍ତ କରୁଥିଲେ । ପେରିୟାର ଭାବୁଥିଲେ ଯେ ଲୋକଙ୍କ ଭିତରେ ଈଶ୍ୱର ବିଶ୍ୱାସ ସୃଷ୍ଟି ଓ ପ୍ରସାର ପାଇଁ ପୁରାଣମାନେ ମୁଖ୍ୟତଃ ପ୍ରେରଣା ଯୋଗାଉଛନ୍ତି । ଲୋକମାନେ ନିଜର ଆତ୍ମମର୍ଯ୍ୟାଦା ହରାଇବା ଓ ସେମାନଙ୍କ ବିଚାରଶୀଳତାର ହ୍ରାସ ପାଇଁ ପୁରାଣମାନ ଦାୟୀ । ସେଥିରେ ଅନେକ ଅବାନ୍ତର ଭାବନା ରହିଛି ଯାହା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ ।

ପେରିୟାର ପୁରାଣମାନଙ୍କର ସମାଲୋଚନା କରୁଥିଲେ କାରଣ ପୁରାଣମାନ ସମାଜକୁ ଭାଗ ଭାଗ କରିବାରେ ମୁଖ୍ୟ ଭୂମିକା ନେଇଛନ୍ତି । ପୁରାଣମାନଙ୍କରେ ବର୍ଣ୍ଣିତ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଜନିତ ଚତୁର୍ବର୍ଣ୍ଣ ବ୍ୟବସ୍ଥା ସମାଜରେ ଉଚ୍ଚ-ନୀଚ ମନୋଭାବ ସୃଷ୍ଟି କରିଛି । ଏପରିକି କେତେକ ବ୍ୟକ୍ତିଙ୍କୁ ଅସ୍ପୃଶ୍ୟକରି ରଖିବା କ୍ଷେତ୍ରରେ ପୁରାଣ ଓ ବର୍ଣ୍ଣବ୍ୟବସ୍ଥା ମୁଖ୍ୟତଃ ଭୂମିକା ନେଇଛନ୍ତି । ଅସ୍ପୃଶ୍ୟ ଲୋକମାନେ ଶିକ୍ଷା ପାଇପାରିବେ ନାହିଁ । ସମାଜରେ ଏହି ଭାବନା ସୃଷ୍ଟି ହୋଇଛି ଯେ ଅସ୍ପୃଶ୍ୟତା ଈଶ୍ୱର ସୃଷ୍ଟି କରିଛନ୍ତି । ଯେଉଁମାନେ ଅସ୍ପୃଶ୍ୟ ସେମାନେ ଦାସ ହୋଇ ରହିବେ ଓ ଅନ୍ୟ ବର୍ଣ୍ଣର ଲୋକମାନଙ୍କର ସେବା କରିବେ । ଭାରତୀୟ

ସମାଜରେ ଏହି ପ୍ରଥାମାନଙ୍କୁ ପେରିୟାର ତୀବ୍ର ଭାବରେ ସମାଲୋଚନା କରିଛନ୍ତି ।

ସମାଜରେ ସବୁଠାରୁ ନିମ୍ନ ସ୍ତରରେ ଥିବା ଲୋକମାନଙ୍କ ମଧ୍ୟରେ ପେରିୟାର ସଚେତନତା ସୃଷ୍ଟି କରିବାକୁ ପଦକ୍ଷେପ ନେଇଛନ୍ତି । ତାହାଙ୍କ ମତରେ ପୁରାଣ ଓ ଶାସ୍ତ୍ରମାନଙ୍କୁ ପ୍ରତ୍ୟାଖ୍ୟାନ କରିବା ଆବଶ୍ୟକ । ସେମାନେ ସତ୍ୟ ଓ ନ୍ୟାୟର ପରିପନ୍ଥୀ । ସ୍ୱାର୍ଥପର ଲୋକମାନେ ମୁଷ୍ଟିମେୟ ଲୋକମାନଙ୍କର ଉପକାର ପାଇଁ ଏ ସବୁକୁ ରଚନା କରିଛନ୍ତି । ସମାଜର ନିମ୍ନ ଶ୍ରେଣୀର ଲୋକମାନଙ୍କ ଭିତରେ ଏହି ଚେତନା ଆଣିବାକୁ ସେ ପ୍ରୟାସ କରିଛନ୍ତି । ଏଣୁ ସେ ଲୋକଙ୍କୁ ପୁରାଣମାନଙ୍କର ଅସତ୍ୟ ଭାବନା ବିଷୟରେ ବୁଝାଇଛନ୍ତି ।

ଯେଉଁ ବିଷୟ ଓ ଶାସ୍ତ୍ରକୁ ଲୋକମାନେ ପବିତ୍ର ମନେକରୁଥିଲେ ସେସବୁ କିପରି ମିଥ୍ୟା ଓ ଅନ୍ୟକୁ ପ୍ରତାରିତ କରିବା ପାଇଁ ଉଦ୍ଦିଷ୍ଟ ପେରିୟାର ଏହା ପ୍ରସାର କରିବାକୁ ଉଦ୍ୟମ କରିଛନ୍ତି । ଈଶ୍ୱର ସତ୍ୟ, ପୁରାଣମାନଙ୍କର କାହାଣୀ ମାନ ମଧ୍ୟ ସତ୍ୟ ଏହି ଭାବନାକୁ ଦୂର କରିବା ପାଇଁ ପେରିୟାର ବିଭିନ୍ନ ପଦକ୍ଷେପ ନେଇଛନ୍ତି । ଏହି ଉଦ୍ୟମରେ ସେ ଯେଉଁ ବିରୋଧର ସମ୍ମୁଖୀନ ହୋଇଛନ୍ତି ତାହା କଳ୍ପନାତୀତ । ତାଙ୍କର ବିରୋଧୀ ମାନେ ତାଙ୍କ ଉପରକୁ ପଚା ଅଣ୍ଡା, ଚପଲ ଓ ସାପ ଫିଙ୍ଗିଛନ୍ତି । ତେବେ ପେରିୟାର ସେମାନଙ୍କ ପ୍ରତି ସର୍ବଦା ଶ୍ରଦ୍ଧାଶୀଳ ମନୋଭାବ ପୋଷଣ କରିଛନ୍ତି, କାରଣ ତାଙ୍କର ବିଶ୍ୱାସ ହୋଇଛି ଯେ ସେମାନଙ୍କର ଅଜ୍ଞତା ଯୋଗୁ ସେମାନେ ଏପରି କରୁଛନ୍ତି । ସେ କେଉଁଠି ହେଲେ ରାଗ ପ୍ରକାଶ କରିନାହାନ୍ତି ବରଂ ସେମାନଙ୍କ ପ୍ରତି ଦୟାଭାବ ଦେଖାଇଛନ୍ତି ।

ସେ ବିଭିନ୍ନ ଗାଁ ଓ ଟାଉନମାନଙ୍କୁ ଯାଇ ତାଙ୍କ ଭାବନା ଲୋକମାନଙ୍କ ଭିତରେ ପ୍ରଚାର କରିଛନ୍ତି । ଏତଦ୍ ବ୍ୟତୀତ ତାଙ୍କର ସମ୍ବାଦପତ୍ର 'କୁଦି ଅରସୁ'ରେ ବିଭିନ୍ନ ଲେଖାମାନ ପ୍ରକାଶ କରିଛନ୍ତି । ଏମ୍. ସିଙ୍ଗରବେଲରଙ୍କ ପରି ନେତାମାନଙ୍କୁ ପୁରାଣମାନଙ୍କ ବିଷୟରେ ଲେଖାଲେଖି କରିବାକୁ ନିବେଦନ କରିଛନ୍ତି । ପୁରାଣ, ଈଶ୍ୱର ଓ ଶାସ୍ତ୍ରମାନଙ୍କୁ ସମାଲୋଚନା କରି ସେ ପୁସ୍ତକମାନ ମଧ୍ୟ ରଚନା କରିବାକୁ ପଦକ୍ଷେପ ନେଇଛନ୍ତି ।

ସନ୍ତକୁଲମ ସଂସ୍କାର ଏ ରାଘବନ ଈଶ୍ୱରଙ୍କ ସମ୍ବନ୍ଧରେ ତାଙ୍କର ଆଲୋଚନାକୁ ନେଇ ଏକ ପୁସ୍ତକ ପ୍ରକାଶକଲେ । "ଈଶ୍ୱରଙ୍କ ସମାଲୋଚନା କରୁଥିବା ଅବିଶ୍ୱାସୀ ମାନେ କିଏ" ଶୀର୍ଷକରେ ଏକ ବହି ଲେଖିଲେ । ଆମେରିକୀୟ ହେତୁବାଦୀ ଇଙ୍ଗରସଲ, ଭୋଲଟେୟାରଙ୍କ ଜୀବନୀ ଯାହା ଲେଖିଥିଲେ ତାହାକୁ କେ.ଏମ.ବାଲ ସୁବ୍ରମନିଅମ ତାମିଲ ଭାଷାରେ ଅନୁବାଦ କରି ପେରିୟାରଙ୍କ ଦ୍ୱାରା ପ୍ରକାଶ କଲେ । କୈବଲ୍ୟମ ସମିୟାର ପୁରାଣମାନଙ୍କୁ ସମାଲୋଚନା କରି ଗୁଡିଏ ପ୍ରବନ୍ଧ ପ୍ରକାଶ କରିଥିଲେ । ସେସବୁ ଲେଖାକୁ ସଂଗ୍ରହ କରି ତାହାର ଏକ ସଂକଳନ ୧୯୩୧ରେ ପ୍ରକାଶ ପାଇଲା । ୧୯୩୨ରେ "ସତ୍ୟ ହିନ୍ଦୁ ଧର୍ମ" ନାମରେ ଏକ ପୁସ୍ତକ ତାମିଲରେ ପ୍ରକାଶିତ ହୋଇଥିଲା । ୧୯୨୮ ରେ "ଜ୍ଞାନ ସୂର୍ଯ୍ୟ" ନାମରେ ଏକ ତାମିଲ ବହି ପ୍ରକାଶିତ ହୋଇଥିଲା । ଏହି ବହିଟି ବେଶ୍ ଜନାଦୃତ ହୋଇଥିଲା । ଏହି ବହିର ଲେଖକ ଥିଲେ ସ୍ୱାମୀ ଶିବାନନ୍ଦ ସରସ୍ୱତୀ । ଏହି ବହିଟି ଶାସ୍ତ୍ରମାନଙ୍କରେ ରହିଥିବା ମିଥ୍ୟାମାନଙ୍କୁ ଦେଖାଇ ପ୍ରକାଶ କଲା । ଏହି ସବୁ ପୁସ୍ତକର ପ୍ରଭାବରେ ଅଣବ୍ରାହ୍ମଣମାନେ ସଂଗଠିତ ହେବାର ସୁଯୋଗ ପାଇଲେ ଓ ବ୍ରାହ୍ମଣବାଦୀ ଶୋଷଣରୁ ମୁକ୍ତ ହେବାକୁ ଏକ ମାନସିକତା ସୃଷ୍ଟି ହେଲା ।

ପେରିୟାରଙ୍କ ହେତୁବାଦୀ ଭାବଧାରା ବିରୁଦ୍ଧରେ କେତେକ ଈଶ୍ୱରବାଦୀ ବ୍ୟକ୍ତି "ଦେଶବନ୍ଧୁ"ନାମରେ ଏକ ତାମିଲ ସମ୍ବାଦପତ୍ର ପ୍ରକାଶ କଲେ । ତେବେ ଖୁବ୍ ଅଳ୍ପଦିନ ଭିତରେ ଏହାର ପ୍ରକାଶନ ବନ୍ଦ ହୋଇଗଲା । ପେରିୟାରଙ୍କ ଯୁକ୍ତି ସଂଗତ ବକ୍ତବ୍ୟକୁ ରକ୍ଷଣଶୀଳ ବ୍ୟକ୍ତିମାନେ ସମ୍ମୁଖୀନ ହେବା ସମ୍ଭବ ନଥିଲା । ପୁରାଣର କାହାଣୀମାନଙ୍କୁ ସେ ସାଧାରଣରେ ପ୍ରକାଶ କରି ସେସବୁର ଅବାସ୍ତବତା ବିଷୟରେ ଲୋକମାନଙ୍କୁ ବୁଝାଇଲେ । ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ସଂପର୍କରେ ରହିଥିବା ପୌରାଣିକ ବ୍ୟାଖ୍ୟାନମାନ କିପରି ଅବାନ୍ତର କାହାଣୀ ତାହା ଲୋକମାନଙ୍କୁ କହିଲେ । ସେ ବିଜ୍ଞାନ ସମ୍ମତ ଧାରାରେ ଜନଚେତନାକୁ ଜାଗ୍ରତ କରୁଥିଲେ । ରାମାୟଣରେ ବର୍ଣ୍ଣିତ ହୋଇଛି ଯେ ଦଶରଥ ଷାଠିଏ ହଜାର ବର୍ଷ ବଞ୍ଚିଥିଲେ । ଏସବୁ ବିଶ୍ୱାସ କିପିର ଅସତ୍ୟ ଲୋକଙ୍କୁ ବୁଝାଇଲେ । ବିନାୟକ, ସୁବ୍ରମନ୍ୟ

ଆଦିଙ୍କର ଜନ୍ମ ବୃତ୍ତାନ୍ତ କିପରି ଅସତ୍ୟ ଓ ଅବାନ୍ତର ତାହା ସେ ଦର୍ଶାଇଛନ୍ତି । ଶିବଙ୍କ ସଂପର୍କରେ ଥିବା ତାଳବୃକ୍ଷ ଓ ଗୁରୁଡ଼ଲାୟ ଆଦି କାହାଣୀ ମଧ୍ୟ କିପରି ଅସତ୍ୟ ତାହା ସେ ବ୍ୟକ୍ତକରି ଏପରି ସବୁ ଅବାନ୍ତର ବିଶ୍ୱାସମାନଙ୍କରୁ ମୁକ୍ତ ହେବାକୁ ସେ କହିଛନ୍ତି । ଆତ୍ମ ମର୍ଯ୍ୟାଦା ରକ୍ଷା କରିବା ପାଇଁ ଏସବୁ ଅବାସ୍ତବ ବିଶ୍ୱାସମାନଙ୍କରୁ ମୁକ୍ତ ହେବା ଦରକାର ।

ପୁରାଣମାନଙ୍କରେ ବିଭିନ୍ନ ପର୍ବ ବିଷୟକୁ ବ୍ୟାଖ୍ୟା କରି ସେସବୁର ଅସାରତା ସେ ଦର୍ଶାଇଛନ୍ତି । ତେବେ କୃଷିଭିତ୍ତିକ ପର୍ବ ପୋଂଗଲକୁ ସେ ସମର୍ଥନ କରିଛନ୍ତି ଓ ଅନ୍ୟାନ୍ୟ ବହୁ ପର୍ବ କିପରି ଆମର ବିଶ୍ୱାସବିରୋଧୀ ତାହା ଦର୍ଶାଇଛନ୍ତି ।

ରାମାୟଣରେ ଯେଉଁ ଯୁଦ୍ଧର ବର୍ଣ୍ଣନା ରହିଛି ତାହା ଆର୍ଯ୍ୟ ଓ ଦ୍ରାବିଡ଼ମାନଙ୍କ ମଧ୍ୟରେ ଯୁଦ୍ଧ । ସେ ରାବଣଙ୍କର ଯଶର ବର୍ଣ୍ଣନା ଦେଇଛନ୍ତି । ପୁରାଣର କାହାଣୀମାନ ଲୋକଙ୍କ ଭିତରେ ଭକ୍ତିଭାବନା ସୃଷ୍ଟି କରିବାକୁ ସୃଷ୍ଟି ହୋଇ ନାହିଁ । ବରଂ ପୁରାଣର କାହାଣୀ ମାନଙ୍କଦ୍ୱାରା ସମାଜର ଅନେକ ଲୋକଙ୍କୁ ନ୍ୟୁନ କରି ରଖିବାକୁ ପ୍ରୟାସ ହୋଇଛି । ସେ ସେହି କାହାଣୀମାନଙ୍କୁ ସମାଲୋଚନା କରିଛନ୍ତି । ସିନେମା ଓ ନାଟକର କେତେକ କଳାକାର ଏନ.ଏସ.କ୍ରିଷ୍ଣନ, ଏମ. ଆର.ରାଧା, ଲେଖକ ଭାରତୀ ଦର୍ଶନ ଓ ପୁଲବର କୁଂଜଡାଇଙ୍କ ସହଯୋଗରେ ସେ ପୁରାଣର କାହାଣୀମାନ କିପରି ଅସତ୍ୟ ଓ କପୋଳକଳ୍ପିତ ତାହା ଦର୍ଶାଇଛନ୍ତି । ପୁଲବର କୁଜନ୍ତାଇ "ରାବଣ କବିୟମ" ନାମରେ ଏକ ପୁସ୍ତକ ରଚନା କରିଥିଲେ । ଏହା ଚିନ୍ତାଶୀଳ ବ୍ୟକ୍ତିଙ୍କ ମଧ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲା । ୧୯୨୮ରେ ଏମ.ଏସ. ପୁର୍ଣ୍ଣଲିଂଗମ "ରାବଣ ପେରିୟାର" ନାମରେ ଏକ ପୁସ୍ତକ ରଚନା କରିଥିଲେ । ଏମ.ଆର.ରାଧା ଅଧର୍ମ ନାମରେ ନାଟକ ଲେଖି ସେଥିରେ ରାମାୟଣକୁ ସମାଲୋଚନା କରିଥିଲେ ।

ପେରିୟାର ପୁରାଣମାନଙ୍କ ବିଷୟରେ କରିଥିବା ଗବେଷଣା ଲୋକମାନଙ୍କ ମଧ୍ୟରେ ସ୍ୱାଧୀନ ଚିନ୍ତାର ମନୋଭାବ ସୃଷ୍ଟି କରିଥିଲା । ପୁରାଣରେ ବର୍ଣ୍ଣିତ ହୋଇଥିବା ଅବାନ୍ତର ବିଷୟମାନଙ୍କୁ ସମାଲୋଚନା କରିବାକୁ ସେ ଲୋକମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିଥିଲେ ।

# ୨୦. ଧର୍ମ କ'ଣ ?

ଧର୍ମ ବା ରିଲିଜିଅନର ବିଭିନ୍ନ ଅର୍ଥ ପ୍ରଦାନ କରାଯାଏ । କେତେକ କହନ୍ତି ଧର୍ମ ଅତି ପ୍ରାଚୀନ । ଏହା ଯେହେତୁ ଈଶ୍ୱର କୃତ ଏହା ପରିବର୍ତ୍ତନଶୀଳ ନୁହେଁ । ଈଶ୍ୱର କିଛି ବ୍ୟକ୍ତିଙ୍କୁ ପ୍ରେରଣକରି ତାଙ୍କ ମାଧ୍ୟମରେ ଧର୍ମ ପରିବର୍ତ୍ତନ କରିଛନ୍ତି । ଈଶ୍ୱର ଅବତାର ନେଇ ଧର୍ମ ସୃଷ୍ଟି କରିଛନ୍ତି । ଧାର୍ମିକ ନେତାମାନେ ଏହି ସବୁ ବିଶ୍ୱାସ ଜନଗଣଙ୍କ ମଧ୍ୟରେ ସୃଷ୍ଟି କରିଛନ୍ତି । ଲୋକମାନେ ଏହି ସବୁ କାହାଣୀକୁ ବିଶ୍ୱାସ କରିବାକୁ ତାଙ୍କୁ କୁହାଯାଇଛି ଓ ଲୋକମାନେ ଏହି ସବୁ ନିର୍ଦ୍ଦେଶକୁ ପାଳନ କରିବାକୁ ବାଧ୍ୟ ହୋଇଛନ୍ତି ।

## ଧର୍ମ କିପରି ସୃଷ୍ଟି ହୋଇଛି ?

ଯେତେବେଳେ ଲୋକମାନେ ଆଦିମ ସ୍ତରରେ ଜୀବନ ଯାପନ କରୁଥିଲେ ସେତେବେଳେ ସେମାନେ କୌଣସି ବିଷୟରେ ପ୍ରଶ୍ନ କରିପାରୁ ନଥିଲେ । ଏହି ପ୍ରାଚୀନ ସମୟରେ ଧର୍ମମାନ ସୃଷ୍ଟି ହୋଇଥିଲା । ଯାହା କିଛି ଲୋକ କହୁଥିଲେ ତାହାକୁ ଅନ୍ୟମାନେ ବିଶ୍ୱାସ କରୁଥିଲେ । ସେ ସମୟର ଭାବଧାରା ଓ ଏ ଯୁଗର ଭାବନା ମଧ୍ୟରେ ବହୁ ପାର୍ଥକ୍ୟ ରହିଛି । ଗୋଟିଏ ସମୟର ଆବଶ୍ୟକତା ଅନୁଯାୟୀ ଧର୍ମମାନେ ପ୍ରାଚୀନ ସମୟରେ ସୃଷ୍ଟି ହୋଇଥିଲେ । ସେ ସମୟରେ ହୁଏତ ସେସବୁର କିଛି ଆବଶ୍ୟକତା ରହିଥିଲ ।

## ଜ୍ଞାନହୀନ ଭାବନା ଓ କଳ୍ପନା

ଆପଣ ଯେକୌଣସି ଧର୍ମର ବିଷୟ ନିଅନ୍ତୁ । ଏହାର ଅନେକ ଭାବନା ପ୍ରକୃତି- ବିରୋଧୀ । ସେ ଭିତରେ ଈଶ୍ୱର ବିଶ୍ୱାସ ହେଉଛି ମୁଖ୍ୟ । ଲୋକମାନେ ଈଶ୍ୱର ବିଶ୍ୱାସ ସହ ସ୍ୱର୍ଗ, ନରକରେ ମଧ୍ୟ ବିଶ୍ୱାସ କରୁଥିଲେ । ଦୁଇଟି ଜଗତ ରହିଛି, ଗୋଟିଏ ଆକାଶରେ ଓ ଅନ୍ୟଟି ଆମ ପୃଥିବୀ, ଆକାଶ ତଳେ । ଲୋକମାନେ ତାଙ୍କ କର୍ମର ଫଳ ଭୋଗକରିବେ । ସେମାନେ ଭାଗ୍ୟ, ପୁନର୍ଜନ୍ମରେ

ବିଶ୍ୱାସ ସ୍ଥାପନ କରୁଥିଲେ । ଲୋକମାନଙ୍କର ଅଜ୍ଞତା ଯେତେ ପ୍ରାଚୀନ ସେମାନଙ୍କର ଧର୍ମ ମଧ୍ୟ ସେତିକି ପ୍ରାଚୀନ । ଯଦି ଏବେ କୌଣସି ଧର୍ମ ସୃଷ୍ଟି ହୋଇଥାଆନ୍ତା ହୁଏତ ସେଥିରେ କମ୍ ଅଜ୍ଞତା ରହିଥାନ୍ତା । **ଧର୍ମରେ ବିରୋଧାଭାସ**

ଗୋଟିଏ ଧର୍ମରେ ଯାହା କୁହାଯାଇଛି, ଅନ୍ୟ ଏକ ଧର୍ମରେ ତାର ବିପରୀତ କଥା କୁହାଯାଇଛି । ଲୋକମାନଙ୍କର ନିତିଦିନିଆ ଜୀବନର ଖାଦ୍ୟ, ପୋଷାକ, ବନ୍ଧୁତା, ଅନୁଭୂତି ଇତ୍ୟାଦି ସହ ଧର୍ମର ସମ୍ବନ୍ଧ ରହିଛି । ଗୋଟିଏ ଧର୍ମର ଲୋକ ଯେଉଁ ସବୁଥିରେ ବିଶ୍ୱାସ ସ୍ଥାପନକରନ୍ତି, ଅନ୍ୟ ଧର୍ମର ଲୋକେ ଅନ୍ୟ କଥାରେ ବିଶ୍ୱାସ କରନ୍ତି । ଯଦି ଈଶ୍ୱର ଧର୍ମର ଭାବନା ସୃଷ୍ଟି କରିଛନ୍ତି, ତେବେ ଦେଶକୁ ଦେଶ ବା ସ୍ଥାନକୁ ସ୍ଥାନ ଭିତରେ ଏତେ ଧର୍ମଗତ ପାର୍ଥକ୍ୟ କାହିଁକି ରହିଛି ? ତେଣୁ ଯାହା ସବୁ ଈଶ୍ୱରଙ୍କ କଥା କୁହାଯାଉଛି ସେସବୁ କେବଳ ମନଗଢ଼ା କାହାଣୀ ଓ ମିଥ୍ୟା । ସେସବୁ କିଛି ସ୍ୱାର୍ଥପର ଲୋକଙ୍କର ହୁଏତ ଉର୍ବର କଳ୍ପନା ।

## ଈଶ୍ୱର ଭାବନାରେ ବିରୋଧାଭାସ

ଗୋଟିଏ ଧର୍ମରେ କୁହାଯାଇଛି ଯେ ଈଶ୍ୱର ଏକ । ଅନ୍ୟ ଧର୍ମରେ କୁହାଯାଇଛି ଈଶ୍ୱର ସହସ୍ରାଧିକ । ଅନ୍ୟ ଏକ ଧର୍ମ ମତରେ ଈଶ୍ୱରଙ୍କ ସଂଖ୍ୟା ଅସୀମ । ଗୋଟିଏ ଧର୍ମର ମତରେ ଈଶ୍ୱର ଆକାରହୀନ । ଅନ୍ୟ ଏକ ଧର୍ମର ମତରେ ଈଶ୍ୱର ବ୍ୟକ୍ତି ସଦୃଶ୍ୟ, ତାଙ୍କର ମୁଣ୍ଡ ଓ ଦୁଇ ହାତ ରହିଛି । ଅନ୍ୟ ବିଶ୍ୱାସରେ ତାଙ୍କର ଦୁଇଟି ମୁଣ୍ଡ ଓ ଚାରି ଗୋଡ଼, ଅନ୍ୟ ଏକ ବିଶ୍ୱାସରେ ତାଙ୍କର ପାଞ୍ଚଟି ମୁଣ୍ଡ ଓ ଦଶଟି ହାତ ରହିଛି । ଗୋଟିଏ ଧର୍ମର ବିଶ୍ୱାସରେ ତାଙ୍କ ପାଖରେ ଭୋଗରାଗ ଦେବା ଆବଶ୍ୟକ ନାହିଁ । ଅନ୍ୟ ବିଶ୍ୱାସରେ ତାଙ୍କ ପାଖରେ ଦିନରେ କେତେବାର ଭୋଗ କରିବା ଦରକାର । ଗୋଟିଏ ବିଶ୍ୱାସରେ ଦେବତାଙ୍କର ପତ୍ନୀ ବା ସନ୍ତାନ ନାହାନ୍ତି । ଅନ୍ୟ ବିଶ୍ୱାସରେ ତାଙ୍କର ଜଣେ, ଦୁଇ ଜଣ ଓ ଏପରିକି ବହୁ ପତ୍ନୀ ଓ ସନ୍ତାନ ରହିଛନ୍ତି । ଗୋଟିଏ ଧାର୍ମିକ ବିଶ୍ୱାସରେ ଶୃଂଖଳା ଦେବତାଙ୍କର ଏକାନ୍ତ କାମ୍ୟ । ଅନ୍ୟ ବିଶ୍ୱାସରେ ଯଦି ଦେବତାଙ୍କର ରକ୍ଷିତା ନାହାନ୍ତି, ସେ ସୁସ୍ଥ ନୁହନ୍ତି । କେତେକ ବିଶ୍ୱାସରେ କେହି ଦେବତା ଅନ୍ୟ ଦେବତାଙ୍କ ପତ୍ନୀଙ୍କୁ ନେଇ

ଚାଲିଯାନ୍ତି । ଗୋଟିଏ ବିଶ୍ୱାସ ଅନୁଯାୟୀ ଈଶ୍ୱର ହେଉଛନ୍ତି ପ୍ରେମର ମୂର୍ତ୍ତିମନ୍ତ ବ୍ୟକ୍ତି । ଅନ୍ୟ ବିଶ୍ୱାସରେ ତାଙ୍କର ଦେବତା ଦୁଇହଜାର ବ୍ୟକ୍ତିଙ୍କୁ ହତ୍ୟା କରିଛନ୍ତି । ଗୋଟିଏ ବିଶ୍ୱାସରେ ସବୁ ମନୁଷ୍ୟ ସମାନ ହୋଇ ସୃଷ୍ଟି ହୋଇଛନ୍ତି । ହିନ୍ଦୁ ଧର୍ମ ଧାରଣାରେ ଲୋକମାନେ ଉଚ୍ଚ ନୀଚ ହୋଇ ଜନ୍ମ ହୋଇଛନ୍ତି । ସେହି ବିଶ୍ୱାସ ଅନୁଯାୟୀ କେତେକ ଲୋକଙ୍କୁ ସ୍ପର୍ଶ କରାଯାଇ ପାରିବ ନାହିଁ । ସେମାନେ ଅଧ୍ୟୟନ କରି ପାରିବେ ନାହିଁ । ଅନ୍ୟମାନଙ୍କର ଦାସ ବା ଭୃତ୍ୟ ହୋଇ କାମ କରିବାକୁ ସେମାନ ସୃଷ୍ଟ ହୋଇଛନ୍ତି ।

ଧର୍ମ ମନୁଷ୍ୟକୁ ନିର୍ବୋଧ କରେ । ଧର୍ମମାନଙ୍କର ଉତ୍ପତ୍ତି ଯୋଗୁ ଲୋକମାନଙ୍କର ବିଚାରଶୀଳତା ନଷ୍ଟ ହୋଇଛି । ଧର୍ମଦ୍ୱାରା ଲୋକଙ୍କର କିଛି ମଙ୍ଗଳ ହୋଇଛି କି ? ଏହାଦ୍ୱାରା ଲୋକମାନଙ୍କ ମଧ୍ୟରେ ଶୃଂଖଳା ପ୍ରତିଷ୍ଠିତ ହୋଇଛି କି ? ବରଂ ଧର୍ମ ଯୋଗୁ କିଛି ଲୋକ ଅନ୍ୟମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିଛନ୍ତି । ଧର୍ମ , ଈଶ୍ୱର, ଭକ୍ତି, ସ୍ୱର୍ଗବାସକୁ କେତେକ ବ୍ୟକ୍ତି ସେମାନଙ୍କର ବ୍ୟକ୍ତିଗତ ସଂପତ୍ତି ବୋଲି ମନେକରନ୍ତି । ବରଂ ଶୃଂଖଳା ଓ ସାଧୁତା ସାଧାରଣ ଜୀବନ ପାଇଁ ଅବଶ୍ୟମ୍ଭାବୀ । ଜଣେ ଯଦି ଈଶ୍ୱରଙ୍କ ପ୍ରତି ଭକ୍ତିଭାବ ବ୍ୟକ୍ତ କରୁନାହିଁ, ତାଦ୍ୱାରା କିଛି ଅସୁବିଧା ନାହିଁ । କିନ୍ତୁ ଯଦି ଲୋକମାନେ ଶୃଙ୍ଖଳା ଓ ସାଧୁତା ସମାଜରେ ବ୍ୟକ୍ତ କରୁନାହାନ୍ତି, ତେବେ ସମାଜରେ ଅସ୍ଥିରତା ଓ କ୍ଷୟଶୀଳତା ସୃଷ୍ଟି ହେବ ।

## ଧାର୍ମିକ କାର୍ଯ୍ୟରେ ଅର୍ଥ ବ୍ୟୟକରିବା ନିରର୍ଥକ

ଲୋକମାନେ ଧର୍ମକୁ ନିଜର ସ୍ୱାର୍ଥ ଦିଗରେ ବିନିଯୋଗ କରୁଛନ୍ତି । ଏହାଦ୍ୱାରା ସମାଜର କିଛି ହିତ ସାଧିତ ହେଉନାହିଁ । ଶହ ଶହ ବର୍ଷ ତଳେ ଧର୍ମମାନ ସୃଷ୍ଟି ହୋଇଥିଲେ । ଏହି ପ୍ରକ୍ରିୟାରେ କେତେ କେତେ ଶ୍ରମ ଓ ଶକ୍ତି ନଷ୍ଟ ନ ହୋଇଛି ? ଏ ସବୁ ସତ୍ତ୍ୱେ ଲୋକମାନଙ୍କ ଭିତରେ ଶୃଙ୍ଖଳା ଓ ସାଧୁତା ବୃଦ୍ଧି ପାଇ ନାହିଁ । ଶୋଷଣ ପାଇଁ ଧର୍ମ ରହିଛି । ଏହାଦ୍ୱାରା ମୁଷ୍ଟିମେୟ ଲୋକଙ୍କର ସ୍ୱାର୍ଥ ସାଧିତ ହେଉଛି । ଧର୍ମଦ୍ୱାରା ମନୁଷ୍ୟ ସମୁଦାୟର କିଛି ମଙ୍ଗଳ ହୋଇନାହିଁ ।

ଧର୍ମ ମନୁଷ୍ୟର ବୌଦ୍ଧିକତାକୁ ନଷ୍ଟ କରିଛି । ଏହା ପ୍ରକୃତିବିରୋଧୀ, ଏହା ମଧ୍ୟ ବିକାଶର ପ୍ରତିକୂଳ । ଯେଉଁମାନେ ଧର୍ମକୁ ଅସ୍ୱୀକାର କରିଛନ୍ତି ସେମାନଙ୍କର ଅବଦାନ ଦ୍ୱାରା ମାନବ ସମୁଦାୟର ମଙ୍ଗଳ ସାଧିତ ହୋଇଛି । ସେମାନେ ସମାଜରୁ ଅନେକ କୁସଂସ୍କାର ଦୂର କରିବାରେ ସଫଳ ହୋଇଛନ୍ତି । ଏହାଦ୍ୱାରା ଦେଶର ଉନ୍ନତି ହୋଇଛି ।

## ମାନବ ସମୁଦାୟ ପାଇଁ ଧର୍ମର କ'ଣ ଆବଶ୍ୟକତା ରହିଛି ?

ସଂପ୍ରତି ଗୋଟିଏ ସୁଇଚ ଟିପିଲେ ସହସ୍ରାଧିକ ବଲବ ଜଳିପାରୁଛି ଏହା କ'ଣ ଧର୍ମ ନା ଈଶ୍ୱର ସୃଷ୍ଟି କରିଛନ୍ତି ? ଏହା କ'ଣ ଶାସ୍ତ୍ରରେ ରହିଛି ? ମନୁଷ୍ୟର ବୁଦ୍ଧିର ବିନିଯୋଗକୁ ଧର୍ମ ପ୍ରତିରୋଧ କରିଆସିଛି । କାର୍ଲ ମାର୍କସ ଧର୍ମକୁ ମଣିଷର ଅଫିମ ନିଶା ବୋଲି କହିଛନ୍ତି । ଆମ ଦେଶରେ ଧର୍ମ ବହୁ ବିଷୟର ବିକାଶରେ ପ୍ରତିବନ୍ଧକ ହୋଇରହିଛି । ଶୃଙ୍ଖଳାର ବାର୍ତ୍ତା ଦେଉଥିବା ଏକ ପୁସ୍ତକ ହେଲା ତିରୁ-ବଲୁବରଙ୍କ ରଚିତ ତିରୁକୁରାଳ ପୁସ୍ତକ । ତେବେ ଏହି ପୁସ୍ତକର ସମସ୍ତ ବିଷୟ ମଧ୍ୟ ଉପଯୋଗୀ ନୁହେଁ ।

ହିନ୍ଦୁଧର୍ମ ଏକ କାଳ୍ପନିକ ଧାରଣା । କୌଣସି ବିଦ୍ୱାନ ଏହାକୁ ଏକ ଧର୍ମ ଭାବରେ ଗ୍ରହଣ କରିବେ ନାହିଁ । ଶଙ୍କରାଚାର୍ଯ୍ୟ ମଧ୍ୟ କହିଛନ୍ତି –"ହିନ୍ଦୁଧର୍ମର ସ୍ଥିତି ନାହିଁ" । ଆମର କୌଣସି ଗ୍ରନ୍ଥରେ ହିନ୍ଦୁ ଧର୍ମର ଉଲ୍ଲେଖ ନାହିଁ । ପ୍ରକୃତରେ ହିନ୍ଦୁଧର୍ମ କ'ଣ ? ଏହାର ନୀତି କ'ଣ ? ଏହା କାହାଠାରୁ ଆରମ୍ଭ ହେଲା ? **ଏହା କେତେ ପ୍ରାଚୀନ ? ଏହି ପ୍ରଶ୍ନମାନଙ୍କର ଉତ୍ତର କେହି ଦେଇପାରିବେ କି ?**

ଆମେ ଯଦି ଜଣେ ହିନ୍ଦୁଙ୍କୁ ଏହି ପ୍ରଶ୍ନ ପଚାରିବା ସେ କହିବେ, "ଏହାକୁ ହିନ୍ଦୁ ଧର୍ମ କୁହନ୍ତୁ ନାହିଁ । ଏହାକୁ ବୈଦିକ ଧର୍ମ କୁହନ୍ତୁ" । ବେଦରେ କଣ ରହିଛି ? ଧାର୍ମିକ ଭାବନା ହେଉଛି ଅଜ୍ଞତାର ଆଧାର । ହିନ୍ଦୁଧର୍ମରେ ଅନେକ ଅଜ୍ଞତା ଭରିରହିଛି । ଲୋକମାନଙ୍କ ମଧ୍ୟରେ ପ୍ରେମର ବାର୍ତ୍ତା ପ୍ରସାର କରିବା ପରିବର୍ତ୍ତେ ଧର୍ମ ଲୋକମାନଙ୍କ ମଧ୍ୟରେ ଅଜ୍ଞତାର ହିଁ ବିସ୍ତାର କରୁଛି । ହିନ୍ଦୁ ଧର୍ମରେ ଅନେକ ଅନ୍ଧବିଶ୍ୱାସ ଓ ଅର୍ଥହୀନ କର୍ମକାଣ୍ଡ ରହିଛି । ସବୁ ବିଷୟକୁ କେବଳ

ଆଖିବୁଜି ବିଶ୍ୱାସ କରିବାକୁ ହେବ । କେବଳ ବ୍ରାହ୍ମଣମାନଙ୍କର ବିକାଶ ଓ ଉନ୍ନତି ପାଇଁ ହିନ୍ଦୁଧର୍ମ ଉପଯୋଗୀ ହୋଇରହିଛି । ଏଥିରେ ଅନେକ ଅଶ୍ଳୀଳ ଓ ସ୍ୱାର୍ଥବାଦୀ ନିୟମ ରହିଛି । ଏଥିରେ ଅନେକ କାଳ୍ପନିକ କାହାଣୀ ରହିଛି ଯାହା ଲୋକମାନେ ଭୟରେ ବିଶ୍ୱାସ କରୁଛନ୍ତି । ସାଧାରଣ ଲୋକମାନଙ୍କୁ ଭ୍ରମିତ କରିବା ପାଇଁ ଏଥିରେ ବହୁ ଉପାଦାନ ରହିଛି ।

ପୂଜାନାମରେ ଦେବତାମାନଙ୍କୁ ସନ୍ତୁଷ୍ଟ କରିବାକୁ ଯଜ୍ଞ କରାଯାଏ । ଏହା ଅତୀତରେ ଅର୍ଚ୍ଚକମାନେ କରୁଥିଲେ ଓ ଯଜ୍ଞରେ ପଶୁମାନଙ୍କୁ ବଳି ଦିଆଯାଉଥିଲା ।

## ଧର୍ମ କିପରି ସର୍ବଦା ସମାନ ହୋଇରହିବ ?

ଏକ ନିର୍ଦ୍ଦିଷ୍ଟ ସମୟରେ ଲୋକମାନଙ୍କର ଆବଶ୍ୟକତାକୁ ପୂରଣ କରିବା ପାଇଁ ଧର୍ମମାନଙ୍କର ସୃଷ୍ଟି ହୋଇଥିଲା । ଯଦି ସେମାନେ ହଜାର ହଜାର ବର୍ଷ ତଳେ ସୃଷ୍ଟି ହୋଇଥିଲେ, ତେବେ ସାଂପ୍ରତିକ ସମୟରେ ବିଜ୍ଞାନର ଅଗ୍ରଗତି ଯୋଗୁ ସେଥିରେ ଅନେକ ସଂସ୍କାର ବା ପରିମାର୍ଜନ ଆବଶ୍ୟକ । ଯାହା ସହସ୍ରାଧିକ ବର୍ଷତଳେ ଉଦ୍‌ଭବ ହୋଇଥିଲା ଆମେ ସେ ସବୁକୁ ଏବେ ଗ୍ରହଣ କରିପାରିବା ନାହିଁ । ସେସବୁ ସାଂପ୍ରତିକ ସମୟର ଆବଶ୍ୟକତା କିପରି ପୂରଣ କରିପାରିବେ ? ଧର୍ମମାନ ଯେ ପରିବର୍ତ୍ତନଶୀଳ ନୁହନ୍ତି ଏହା ଭାବିବା ଯଥାର୍ଥ ନୁହେଁ ।

ଏହି ସ୍ଥିତିରେ ଧର୍ମ ଈଶ୍ୱରଙ୍କଦ୍ୱାରା ସୃଷ୍ଟି ହୋଇଛି ଓ ଏହା ପରିବର୍ତ୍ତିତ ହେବା ଯଥାର୍ଥ ନୁହେଁ କହିବା ଅର୍ଥହୀନ ମନେହୁଏ । ଏହିପରି ଧର୍ମମାନଙ୍କୁ ପ୍ରତ୍ୟାଖ୍ୟାନ କରିବା ଯଥାର୍ଥ । ଲୋକମାନଙ୍କର ମାନସିକତାରେ ଆମେ ପରିବର୍ତ୍ତନ ଆଣିବା ଆବଶ୍ୟକ ଫଳରେ ସେମାନେ ବିଚାରହୀନ ଭାବେ ଧର୍ମକୁ ଗ୍ରହଣ କରିବେ ନାହିଁ । ସବୁ ଲୋକମାନଙ୍କ ମଧ୍ୟରେ ଭ୍ରାତୃତ୍ୱର ଭାବନା ରହିବା କ୍ଷେତ୍ରରେ ଧର୍ମ ବଡ ପ୍ରତିବନ୍ଧକ । ଅତୀତରେ ଏ କ୍ଷେତ୍ରରେ ଯେଉଁ ସ୍ଥିତି ଥିଲା, ଆଜି ମଧ୍ୟ ସେହି ପରିସ୍ଥିତି ରହିଛି ।

ଯେଉଁମାନେ ଆତ୍ମସମ୍ମାନରେ ବିଶ୍ୱାସ ରଖନ୍ତି ସେମାନେ ଧର୍ମକୁ ପ୍ରତ୍ୟାଖ୍ୟାନ କରିବାରେ କୁଣ୍ଠାବୋଧ କରିବେ ନାହିଁ । ଏହା ଲୋକମାନଙ୍କର ସ୍ୱାଧୀନତା ଓ

ବିକାଶର ପରିପନ୍ଥୀ । ଧର୍ମ ଲୋକଙ୍କ ମଧ୍ୟରେ ଆଧାରହୀନ ବିଶ୍ୱାସ ସୃଷ୍ଟି କରିଥାଏ । ସଂପ୍ରତି ସବୁ ଧର୍ମମାନ ଲୋକମାନଙ୍କୁ ପ୍ରତାରିତ କରୁଛନ୍ତି । ଧର୍ମମାଧ୍ୟମରେ ପୂଜାପୀଠ ମାନଙ୍କର ପୂଜକ ଗୋଷ୍ଠୀ ଓ ଧନୀ ଲୋକମାନେ ଉପକୃତ ହେଉଛନ୍ତି । ଏହାଦ୍ୱାରା ସାଧାରଣ ଲୋକଙ୍କର କିଛି ଉପକାର ସାଧିତ ହେଉ ନାହିଁ ।

ପ୍ରତ୍ୟେକ ଧର୍ମପ୍ରାଣ ବ୍ୟକ୍ତି ତାଙ୍କ ଧର୍ମ ଈଶ୍ୱରଙ୍କଦ୍ୱାରା ଉଦ୍‌ଭବ ହୋଇଛି ବୋଲି ବିଶ୍ୱାସ କରନ୍ତି । ଏହା ଯଦି ସତ୍ୟ, ତେବେ ଈଶ୍ୱର କାହିଁକି ଏତେ ଗୁଡ଼ିଏ ଧର୍ମ ସୃଷ୍ଟି କରିଛନ୍ତି ଓ ଏତେ ପୃଥକ୍ ନୀତି ନିୟମର ଅବତାରଣା କରିଛନ୍ତି ? ସେ ଏପରି ଧର୍ମ କାହିଁକି ସୃଷ୍ଟି କଲେ ଯେତେବେଳେ ଗୋଟିଏ ଧର୍ମ ଅନ୍ୟ ଧର୍ମ ଉପରେ ଆକ୍ରମଣ କରିବ ? ଯଦି ପ୍ରତ୍ୟେକ ବ୍ୟକ୍ତି ଈଶ୍ୱରଙ୍କଦ୍ୱାରା ସୃଷ୍ଟ, ସେତେବେଳେ ଜଣେ ଦୁଇଜଣଙ୍କୁ କାହିଁକି ଅବତାରର ଭୂମିକା ଦିଆଯିବ ?

ଇସଲାମ ଯେହେତୁ ପରେ ସୃଷ୍ଟି ହୋଇଛି ତାହା ପୂର୍ବରୁ ମୁଖ୍ୟ ଧର୍ମମାନଙ୍କର ଦୁର୍ବଳତାକୁ ଦୂର କରିବାକୁ ଚେଷ୍ଟା କରିଛି ।

ଯେଉଁ ଧର୍ମ ହେଉନା କାହିଁକି ଯଦି ଏହା ସର୍ବସାଧାରଣଙ୍କର ବିକାଶ ପାଇଁ କାର୍ଯ୍ୟକରୁଛି ତେବେ ମୁଁ ଏହାକୁ ସମର୍ଥନ କରିବି । ଯେଉଁ ଧର୍ମ ମଣିଷ ମଣିଷ ଭିତରେ ବିଭେଦ ସୃଷ୍ଟି କରୁଛି ମୁଁ ସେହି ଧର୍ମକୁ ବିରୋଧ କରିବି । ଯେତେଦିନ ପର୍ଯ୍ୟନ୍ତ ସବୁ ଲୋକଙ୍କୁ ହିନ୍ଦୁଧର୍ମ ସମାନ ବୋଲି ଗ୍ରହଣ କରି ନାହିଁ, ଲୋକମାନେ ଅନ୍ୟ ଧର୍ମକୁ ଧର୍ମାନ୍ତରୀକରଣ କରିବା ସ୍ୱାଭାବିକ ।

ପୃଥିବୀରେ ଯେତେ ମନ୍ଦ ସ୍ଥିତି ରହିଛି ସେଥି ପାଇଁ ଧର୍ମମାନେ ମୁଖ୍ୟତଃ ଦାୟୀ । ସବୁ ଧର୍ମଙ୍କର ମତ ହେଉଛି ସଂସାରରେ ସବୁ କିଛି ଈଶ୍ୱରଙ୍କଦ୍ୱାରା ଅନୁଷ୍ଠିତ ହେଉଛି । କିନ୍ତୁ ଧର୍ମ ହେଉଛି ଲୋକଙ୍କ ମଧ୍ୟରେ ବୈଷମ୍ୟର ମୂଳକାରଣ ।

ପେରିୟାରଙ୍କ ମତରେ ଜାତିଗତ ଶୋଷଣ ବା ଅତ୍ୟାଚର ଉଚ୍ଚ-ନୀଚ ଭେଦଭାବ ଓ ଅସ୍ପୃଶ୍ୟତା ହିନ୍ଦଧର୍ମରେ ବ୍ୟାପକହୋଇ ରହିଛି । ଏପରି ବୈଷମ୍ୟ ଅନ୍ୟ ଧର୍ମମାନଙ୍କରେ ନାହିଁ ।

# ୨୧. ପେରିୟାରଙ୍କ ମତରେ ଜାତିପ୍ରଥା ଉତ୍ପତ୍ତିର କାରଣ ନିରୂପଣ

ଭାରତ ପରି ପୃଥିବୀରେ କୌଣସି ଦେଶରେ ଜାତିପ୍ରଥା ନାହିଁ । ଆର୍ଯ୍ୟ ବ୍ରାହ୍ମଣମାନଙ୍କ ପାଇଁ ଏହା ଉଦ୍‌ଭବ ହୋଇଛି । ନିଜର ସ୍ୱାର୍ଥ ସାଧନ ପାଇଁ ଓ ଅନ୍ୟମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିବାକୁ ସେମାନେ ଜାତି ବ୍ୟବସ୍ଥା ସୃଷ୍ଟି କରିଥିଲେ । ଏହି ସାମାଜିକ ଭେଦଭାବ ଅନ୍ୟ କୌଣସି ଦେଶରେ ନାହିଁ । ଭାରତୀୟ ଜନସଂଖ୍ୟାର ଏକ କ୍ଷୁଦ୍ର ଅଂଶ ହେଉଛନ୍ତି ବ୍ରାହ୍ମଣ ଆର୍ଯ୍ୟମାନେ । ସଂଖ୍ୟାଗରିଷ୍ଠ ଲୋକମାନଙ୍କୁ ଭାଗ ଭାଗ କରିବା ପାଇଁ ଓ ସେମାନଙ୍କର ଏକତାକୁ ନଷ୍ଟ କରିବାକୁ ବ୍ରାହ୍ମଣମାନେ ଜାତିଗତ ଭେଦଭାବ ସୃଷ୍ଟି କରିଛନ୍ତି । ଜାତିଗତ ବ୍ୟବସ୍ଥାକୁ ଦୀର୍ଘସ୍ଥାୟୀ କରିବାକୁ ସେମାନେ ଏହି ବ୍ୟବସ୍ଥାକୁ ଈଶ୍ୱରଙ୍କ ସହ ସଂଯୁକ୍ତ କରି ସେହି ସଂପର୍କରେ ଶାସ୍ତ୍ର ଓ ସ୍ମୃତିଗ୍ରନ୍ଥମାନ ରଚନା କରିଛନ୍ତି । ଜାତିଗତ ଭେଦଭାବ ଅନୁଯାୟୀ ବ୍ରାହ୍ମଣମାନେ ସବା ଉପରେ ରହିଛନ୍ତି । ସେମାନଙ୍କୁ ପୂଜା କରାଯିବା ଆବଶ୍ୟକ । ଅନ୍ୟ ସବୁଲୋକ ବ୍ରାହ୍ମଣମାନଙ୍କ ତଳେ । ବ୍ରାହ୍ମଣମାନେ କେବଳ ଦିଅଁ ଦେବତା ଙ୍କ ନିକଟକୁ ଯାଇପାରିବେ ଓ ସ୍ପର୍ଶ କରିପାରିବେ । ଅନ୍ୟମାନେ ଦେବତା /ଈଶ୍ୱରଙ୍କ ନିକଟକୁ ଯିବାକୁ ଯୋଗ୍ୟ ନୁହନ୍ତି । ସେମାନେ ଦେବତାଙ୍କୁ ନା ସ୍ପର୍ଶ କରିପାରିବେ ନା ପ୍ରାର୍ଥନା କରିପାରିବେ । କେବଳ ସଂସ୍କୃତ ଭାଷାରେ ଦେବତା, ଈଶ୍ୱରଙ୍କୁ ଆରାଧନା କରାଯିବ ଓ ସେହି ଭାଷା କେବଳ ବ୍ରାହ୍ମଣମାନେ ଶିକ୍ଷାକରିବେ । ଦେବତାଙ୍କ ଆରାଧନା ପାଇଁ ମନ୍ତ୍ର ସବୁ ସଂସ୍କୃତ ଭାଷାରେ ରଚିତ ହୋଇଛି । ବ୍ରାହ୍ମଣମାନେ କେବଳ ଶିକ୍ଷା ଅର୍ଜନ କରିବେ, ଅନ୍ୟ ଜାତିର ଲୋକମାନେ ଶିକ୍ଷା କରିପାରିବେ ନାହିଁ । ସବୁ ଜାତିର ଲୋକମାନେ ବ୍ରାହ୍ମଣମାନଙ୍କୁ ସେବାକରିବେ ବୋଲି ସେମାନେ ଶାସ୍ତ୍ରରେ ଉଲ୍ଲେଖ କରିଛନ୍ତି ।

ଅବ୍ରାହ୍ମଣମାନଙ୍କୁ କୁହାଯାଇଛି ଯେ ସେମାନେ ଜାତିର ନିୟମକୁ ମାନିବେ । ସେମାନଙ୍କୁ ଏପରି ମଧ୍ୟ କୁହାଯାଇଛି ଯେ ଯଦି ସେମାନେ ଜାତି

ବ୍ୟବସ୍ଥାକୁ ନ ମାନିବେ, ସେମାନେ ଈଶ୍ୱରଙ୍କଦ୍ୱାରା ଦଣ୍ଡିତ ହେବେ। ଭୟ ଯୋଗୁ ଲୋକମାନେ ବ୍ରାହ୍ମଣମାନଙ୍କର ନିର୍ଦ୍ଦେଶକୁ ମାନିଛନ୍ତି ଓ ସେମାନଙ୍କ ଆଜ୍ଞାକୁ ପାଳନକରିଛନ୍ତି। ବ୍ରାହ୍ମଣମାନେ ଯେହେତୁ ଈଶ୍ୱର ବା ଦେବତାଙ୍କର ନିକଟତର, ତେଣୁ ଅନ୍ୟମାନେ ବ୍ରାହ୍ମଣମାନଙ୍କୁ ଭୟକରି ଆସିଛନ୍ତି।

କାଂଚା ଇଲାୟା ହାଇଦ୍ରାବାଦସ୍ଥିତ ଓସମାନିଆ ବିଶ୍ୱବିଦ୍ୟାଳୟରେ ରାଜନୀତି ବିଜ୍ଞାନରେ ଅଧ୍ୟାପକ ରହିଛନ୍ତି। ସେ ତାଙ୍କ ପୁସ୍ତକରେ ଦର୍ଶାଇଛନ୍ତି ଯେ ସେ ହେଉଛନ୍ତି ଯାଦବ ଜାତିର ବ୍ୟକ୍ତି। ତାଙ୍କ ଜାତିର ଲୋକମାନଙ୍କୁ ବ୍ରାହ୍ମଣମାନେ କହିଛନ୍ତି ଯେ ଯଦି ସେମାନେ ସେମାନଙ୍କ ପିଲାମାନଙ୍କୁ ଶିକ୍ଷା ପାଇଁ ସ୍କୁଲକୁ ପଠାଇବେ, ତେବେ ଦେବୀ ସରସ୍ୱତୀ ସେମାନଙ୍କୁ ମାରିଦେବେ। ଏହି ବିଶ୍ୱାସ ଯୋଗୁ ତାଙ୍କ ଗୋଷ୍ଠୀର ବହୁ ଲୋକ ସେମାନଙ୍କ ପିଲାମାନଙ୍କୁ ବିଦ୍ୟାଳୟକୁ ଶିକ୍ଷା ପାଇଁ ପଠାଉ ନାହାନ୍ତି। ଏହି ଦୃଷ୍ଟିରୁ ହିନ୍ଦୁଧର୍ମକୁ ଏକ ଫାସିଷ୍ଟ ଧର୍ମ ବୋଲି କହିଛନ୍ତି।

ଯଦି ଜଣେ ଅବ୍ରାହ୍ମଣ ଶିକ୍ଷା ପାଏ, ତେବେ ତାର ଜିଭକୁ କାଟି ଦିଆଯିବ। ଯଦି ସେ ବିଦ୍ୟା ଅର୍ଜନ କରେ ତାଙ୍କର ହୃଦୟକୁ ନଷ୍ଟ କରାଯିବ ଓ ଯଦି ସେ ଜ୍ଞାନ ବିଷୟରେ ଶ୍ରବଣ କରେ ତେବେ ତାର କାନରେ ଶିଶା ଢଳାଯିବ। ବ୍ରାହ୍ମଣମାନେ ଏପରି ଦଣ୍ଡବିଧାନ ଶାସ୍ତ୍ରରେ କରିଛନ୍ତି ଓ ଏହି ନିୟମକୁ ପାଳନ କରିବାକୁ ଅନ୍ୟମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି।

ପେରିୟାର ସମାଜରୁ ଜାତି ବ୍ୟବସ୍ଥାର ବିଲୋପ ପାଇଁ ପ୍ରୟାସ କରିଛନ୍ତି। ଜନ୍ମକୁ ନେଇ ଜାତି ଓ ସଂଖ୍ୟାଗରିଷ୍ଠ ଲୋକମାନଙ୍କୁ ଭାଗ ଭାଗ କରି ରଖିବା ବ୍ୟବସ୍ଥାକୁ ସେ ତୀବ୍ର ବିରୋଧ କରିଛନ୍ତି। ଜାତିକୁ ଧ୍ୱଂସ କରିବାକୁ ଈଶ୍ୱର, ଧର୍ମ, ପୁରାଣ ଓ ଶାସ୍ତ୍ରମାନଙ୍କୁ ଧ୍ୱଂସ କରିବା ଆବଶ୍ୟକ। ଅସ୍ପୃଶ୍ୟତା ଦୂରୀକରଣ ଏହି କାର୍ଯ୍ୟର କେବଳ ଅଧା ହାସଲ କରିବ, ସଂପୂର୍ଣ୍ଣ ଜାତିବ୍ୟବସ୍ଥାର ବିଲୋପ ଥିଲା ପେରିୟାରଙ୍କ ଆଭିମୁଖ୍ୟ। ପେରିୟାରଙ୍କର ବିଚାର ଥିଲା ଯେ ଜାତିପ୍ରଥାର ବିଲୋପ

ହେଲେ ଅସ୍ପୃଶ୍ୟତାର ମଧ୍ୟ ବିଲୋପ ହୋଇପାରିବ । ଏହି ଉଦ୍ଦେଶ୍ୟରେ ସେ ଜାତିର ନିର୍ମୂଳନ ଚାହିଁଥିଲେ । ଯେଉଁମାନେ ଜାତିପ୍ରଥା ଓ ବର୍ଣ୍ଣବ୍ୟବସ୍ଥାକୁ ସମର୍ଥନ କରୁଥିଲେ ପେରିୟାର ସେମାନଙ୍କୁ କଠୋର ସମାଲୋଚନା କରିଛନ୍ତି ।

ଜାତିପ୍ରଥାର ବିଲୋପ ପାଇଁ ଅନ୍ତର୍ଜାତି ବିବାହ ହେଉଛି ଏକମାତ୍ର ପନ୍ଥା । ଅନ୍ତର୍ଜାତି ବିବାହଦ୍ୱାରା ଜାତିଗତ ଭେଦଭାବକୁ ଦୂର କରାଯାଇ ପାରିବ । ଶିକ୍ଷା, ଚାକିରିର ସୁଯୋଗଦ୍ୱାରା ମଧ୍ୟ ଜାତି ବ୍ୟବସ୍ଥା ନିର୍ମୂଳନ ସମ୍ଭବ ।

ଆର୍ଯ୍ୟ ବ୍ରାହ୍ମଣମାନଙ୍କ ପାଇଁ ଅବ୍ରାହ୍ମଣ ବ୍ୟକ୍ତି ସେ ଖ୍ରୀଷ୍ଟିଆନ, ମୁସଲମାନ ବା ନିମ୍ନ ଜାତିର ହିନ୍ଦୁ ଅସ୍ପୃଶ୍ୟ ତାହା ନୁହେଁ, ସମସ୍ତ ଅବ୍ରାହ୍ମଣ ହିନ୍ଦୁମାନେ ହିଁ ଅସ୍ପୃଶ୍ୟ । କାରଣ ଯେତେବେଳେ ଯେକୌଣସି ଅବ୍ରାହ୍ମଣ ବ୍ୟକ୍ତି କୌଣସି ମନ୍ଦିରକୁ ଯାନ୍ତି, ସେ ଦିଅଁଙ୍କ ପାଖକୁ ଯାଇପାରିବେ ନାହିଁ ବା ତାଙ୍କୁ ସ୍ପର୍ଶ କରିପାରିବେ ନାହିଁ । ହିନ୍ଦୁମାନଙ୍କ ମଧ୍ୟରେ ତଥାକଥିତ ଉଚ୍ଚ ଜାତିର ଲୋକମାନଙ୍କୁ ପେରିୟାର ଏହା ବୁଝାଇଛନ୍ତି ଯେ ସେମାନେ ବି ବ୍ରାହ୍ମଣମାନଙ୍କ ଦୃଷ୍ଟିରୁ ଅସ୍ପୃଶ୍ୟ । ପେରିୟାର ଅନୁସୂଚିତ ଜାତିର ଲୋକମାନଙ୍କର ସାମାଜିକ ବିକାଶ ପାଇଁ ପ୍ରୟାସ କରିଛନ୍ତି । ସେ ଡ. ଆମ୍ବେଦକରଙ୍କ ସହ ମିଶି ହିନ୍ଦୁ ସମାଜରୁ ଜାତିପ୍ରଥା ଦୂର କରିବାକୁ ପଦକ୍ଷେପ ନେଇଛନ୍ତି ।

## ପେରିୟାର ଓ ଦଳିତ ଜନଗଣ

ପେରିୟାର କହୁଥିଲେ "ମୋ ଦଳ ହେଉଛି ଲୋକଙ୍କର ଦଳ । ଆମ ପାର୍ଟି ଏକ ମାନବବାଦୀ ଦଳ । ଆମ ପାର୍ଟିର ଆଦର୍ଶକୁ ମୁଁ ଏକ କ୍ଷୁଦ୍ର ବ୍ୟକ୍ୟରେ ପ୍ରକାଶ କରିପାରିବି । ସବୁ କିଛି ସମସ୍ତଙ୍କ ପାଇଁ ଏହା ଆମ ଦଳର ଆଦର୍ଶ । ତାର ତାତ୍ପର୍ଯ୍ୟ ହେଉଛି ସମତା ହିଁ ଆମ ଆଦର୍ଶ । ଏହା ହିଁ ହେଉଛି ମାନବ ଧର୍ମ । ଏହାର ମହତ୍ତ୍ୱ ହେଉଛି ଆତ୍ମସମ୍ମାନ । ମନୁବାଦୀ ଧର୍ମର ଏହା ବିପରୀତ । ପେରିୟାର ମନୁବାଦ ଧର୍ମର ପୂର୍ଣ୍ଣ ବିରୋଧୀ । ମନୁବାଦୀ ବ୍ୟବସ୍ଥାକୁ ଦୂର କରିବାକୁ ସେ ପ୍ରୟାସ କରିଛନ୍ତି । ଯେତେବେଳେ ପେରିୟାର ଜାତିଗତ ବୈଷମ୍ୟ ବିରୁଦ୍ଧରେ ସ୍ୱର ଉଠାଇଲେ

ସେତେବେଳେ ଦଳିତ ଲୋକମାନଙ୍କର ଅବସ୍ଥା କ'ଣ ଥିଲା ? ପେରିୟାର କିପରି ଦଳିତମାନଙ୍କୁ ଉଠାଇବାକୁ ଆନ୍ଦୋଳନ କରିଛନ୍ତି ତାହାର କାହାଣୀ ଯୁବକମାନେ ବୁଝିବା ନିହାତି ଆବଶ୍ୟକ ।

୧୮୯୯ ବେଳକୁ ଚେନାଇ ସହରର ଅବସ୍ଥା କ'ଣ ଥିଲା ?ସେ ସମୟକୁ ଆତ୍ମମର୍ଯ୍ୟାଦାକୁ ନେଇ କୌଣସି ଦଳ ବା ଦ୍ରାବିଡମାନଙ୍କୁ ନେଇ କିଛି ପାର୍ଟି ଗଠିତ ହୋଇନଥିଲା । ଚେନାଇରେ ୱାଲଟାକ୍ସ ରୋଡ ବୋଲି ଏକ ସ୍ଥାନ ରହିଥିଲା । ସେଠାରେ "ଓଟାଇ ୱାଦଇ"ନାମରେ ଏକ ନାଟକ କେନ୍ଦ୍ର ରହିଥିଲା । ସେଠାରେ "ଅଭିଦାନ ସୁନ୍ଦରୀ"ନାମରେ ଏକ ନାଟକ ମଂଚସ୍ଥ ହେଉଥିଲା । ସୁଗୁଣ ବିଳାସ ସଭାଦ୍ୱାରା ଏହି ନାଟକ ପରିବେଷିତ ହେଉଥିଲା । ଏହି ନାଟକ ପାଇଁ ସେମାନେ ଏକ ବଡ ବିଜ୍ଞାପନ ଦେଇଥିଲେ । ନାଟକ ପାଇଁ ଯେଉଁମାନେ ଚଉକିରେ ବସିବେ, ଟିକେଟର ମୂଲ୍ୟ ଥିଲା ଏକ ଟଙ୍କା, ଗ୍ୟାଲେରି ପାଇଁ ଟିକେଟର ମୂଲ୍ୟ ପଚ୍ଚଶ ପଇସା ଓ ଯେଉଁମାନେ ତଳେ ବସିବେ ଟିକେଟର ମୂଲ୍ୟ ଦୁଇ ଅଣା (ଆଜିର ହିସାବରେ ୧୨ ପଇସା) ସେହି ବିଜ୍ଞାପନରେ ନାଟକ ପ୍ରେକ୍ଷାଳୟକୁ ଯିବା ପାଇଁ କେତେକ ସର୍ତ୍ତ ରହିଥିଲା ।

ପଞ୍ଚମ (ଦଳିତ ଲୋକ)ମାନେ ନାଟକ ଦେଖିପାରିବେ ନାହିଁ । ସେମାନେ ହେଉଛନ୍ତି ମାଟିର ମଣିଷ । ସେମାନଙ୍କ ବ୍ୟତୀତ ସମାଜ ଚଳିପାରିବ ନାହିଁ । ସମସ୍ତେ ଯେଉଁ ଖାଦ୍ୟ ଖାଉଛନ୍ତି, ଜମିରେ ସେମାନେ ଶ୍ରମ ଦେଇ ତାହା ଉପାର୍ଜନ କରୁଛନ୍ତି । କିନ୍ତୁ ନାଟକ ହଲକୁ ଯିବା ପାଇଁ ସେମାନଙ୍କୁ ବାରଣ କରାଯାଇଛି । ଯଦିବି ସେମାନେ ଟିକେଟ କିଣନ୍ତି ତଥାପି ସେମାନେ ହଲ ଭିତରେ ପ୍ରବେଶ କରିପାରିବେ ନାହିଁ । ସେମାନେ ପରିଶ୍ରମ କରି ରୋଜଗାର କଲେ ବି ସାମାଜିକ ବ୍ୟବସ୍ଥାରେ ସେମାନଙ୍କୁ ମଣିଷ ବୋଲି ସ୍ୱୀକାର କରାଯାଉ ନାହିଁ । ସେହିପରି ଗାଁର ବିଦ୍ୟାଳୟ ମାନଙ୍କରେ ଆଦି ଦ୍ରାବିଡ ଶ୍ରେଣୀର ପିଲାମାନେ (ବର୍ତ୍ତମାନର ପରିଭାଷାରେ ସେମାନେ ଦଳିତ) ପାଠ ପଢ଼ିପାରିବେ ନାହିଁ । ଏହି ବ୍ୟବସ୍ଥା ବିରୁଦ୍ଧରେ ପେରିୟାର ଜୀବନରେ ସଂଗ୍ରାମ କରିଛନ୍ତି । ପେରିୟାର ସାଧାରଣ

ଜୀବନକୁ ଆସିବା ସମୟରେ ଆଦିଦ୍ରାବିଡ ଶ୍ରେଣୀର ଲୋକମାନେ ଏହିପରି ସାମାଜିକ ସ୍ତରରେ ଶୋଷିତ ହୋଇରହିଥିଲେ ।

ସରକାର ଏକ ସରକାରୀ ବିଜ୍ଞପ୍ତି ପ୍ରକାଶ କରିଥିଲେ ଯେ ଯଦି କୌଣସି ବିଦ୍ୟାଳୟ ଆଦିଦ୍ରାବିଡ ପିଲାମାନଙ୍କୁ ବିଦ୍ୟାଳୟରେ ନାମ ଲେଖାଇବାକୁ ବାରଣ କରିବେ, ତେବେ ସେହି ବିଦ୍ୟାଳୟକୁ ସରକାର ସ୍ୱୀକୃତି ଦେବେ ନାହିଁ । ତେବେ ଏହି ସରକାରୀ ବିଜ୍ଞପ୍ତିଟି କେବଳ କାଗଜ ପତ୍ରରେ ବହୁ ବର୍ଷ ଧରି ରହିଥିଲା । ଯେଉଁଠି ଆଦିଦ୍ରାବିଡ ପିଲାମାନେ ବିଦ୍ୟାଳୟରେ ନାମ ଲେଖାଇବାକୁ ଆସିଛନ୍ତି ସେଠାରେ ସେମାନଙ୍କୁ ଏପରି ମନ୍ଦ ବ୍ୟବହାର ପ୍ରଦର୍ଶନ କରାଯାଇଛି ଯେପରି ସେମାନେ କେବେ ବି ସ୍କୁଲକୁ ଆସିବେ ନାହିଁ । କେତେକ ବିଦ୍ୟାଳୟରେ ଆଦିଦ୍ରାବିଡ ପିଲାଙ୍କର ନାମ କେବଳ ସ୍କୁଲ ରେଜିଷ୍ଟାରରେ ଉଲ୍ଲେଖ କରାଯାଇଛି, କିନ୍ତୁ ସେମାନଙ୍କୁ ସ୍କୁଲ ନ ଆସିବାକୁ କୁହାଯାଇଛି । ପିଲାମାନଙ୍କୁ କେବେ ଶ୍ରେଣୀଗୃହରେ ପ୍ରବେଶ କରିବାକୁ ଅନୁମତି ଦିଆଯାଇ ନାହିଁ । ଯଦି କେବେ ସ୍କୁଲ ପରିଦର୍ଶନ କରାଯାଏ, ସେଦିନ କେତୋଟି ପିଲାଙ୍କୁ ଡକାଯାଏ, ସେମାନେ ଶ୍ରେଣୀ ଗୃହର ଶେଷରେ ବସିବେ, କାହାରିକୁ ଛୁଇଁବେ ନାହିଁ । ସ୍କୁଲ ପରିଦର୍ଶନକାରୀ କର୍ମକର୍ତ୍ତା ମଧ୍ଯ ବିଦ୍ୟାଳୟର ପରିଚାଳକଙ୍କ ସହ ହାତ ମିଳାଇ ଏହି ପିଲାମାନଙ୍କୁ ବିଦ୍ୟାଳୟକୁ ନ ଆସିବାରେ ସହମତି ଦେଉଥିଲେ ।

ବ୍ରାହ୍ମଣମାନେ ଯେଉଁ ସ୍ଥାନରେ ରହୁଥିଲେ ସେମାନଙ୍କ ରାସ୍ତାରେ କୌଣସି ଆଦିଦ୍ରାବିଡ ଶ୍ରେଣୀର କେହି ପିଲା ବା ଲୋକ ଚାଲିପାରିବେ ନାହିଁ । ବିଦ୍ୟାଳୟ ମାନଙ୍କରେ ୧୯୭୦ ପର୍ଯ୍ୟନ୍ତ କୌଣସି ବିଦ୍ୟାଳୟରେ ଦଳିତ ପିଲାମାନେ ପଢ଼ିବାର ସୁଯୋଗ ପାଉନଥିଲେ । କୋବାଇ ସାମାଜିକ ସେବା ସଂସ୍ଥା (Kovai Social Service Council) ର ଚାପ ଯୋଗୁ କେତେକ ପିଲା ସ୍କୁଲରେ ନାମ ଲେଖାଇଥିଲେ । ବ୍ରାହ୍ମଣ ସବଇନିସପେକ୍ଟର ମାନେ  ବ୍ରାହ୍ମଣ ମାନେ ରହୁଥିବା ରାସ୍ତାରେ ଯେପରି ଦଳିତପିଲାମାନେ ନଯା'ନ୍ତି ସେଥିପାଇଁ ମଧ୍ଯ ଦୃଷ୍ଟି ରଖୁଥିଲେ । ବିଧାୟକ ଆର.କେ. ସନମୁଗମ ଏ ବିଷୟରେ ସଙ୍ଗନଲୁରର ସବଇନସପେକ୍ଟରଙ୍କ

ସହ କଥା ହେଲେ ମଧ୍ଯ କିଛି ସୁଫଳ ମିଳିଲା ନାହିଁ, ଦଳିତ ପିଲାମାନଙ୍କ ପ୍ରତି ଏହିପରି କଟକଣା ରହିଥିଲା । ପରେ ଡିଏସ.ପି.ଙ୍କୁ ଏହା କହିବା ପରେ ସବଇନିସପେକ୍ଟରଙ୍କ ଅନ୍ୟାୟ ପଦକ୍ଷେପକୁ ପରିବର୍ତ୍ତନ କରାଯାଇପାରିଲା ।

ଆର.କେ. ସନମୁଗମଙ୍କର ଏହି କାର୍ଯ୍ୟ ଯୋଗୁ ବ୍ରାହ୍ମଣମାନେ ଅନ୍ୟ ଲୋକମାନଙ୍କୁ ପ୍ରଭାବିତ କରି ତାଙ୍କ କାରଖାନାରେ କେହି କାର୍ଯ୍ୟ ନକରିବାକୁ କହିଲେ । ଅବଶ୍ୟ ପରେ ଲୋକମାନଙ୍କୁ ବୁଝାଇବାରୁ ସେମାନେ କାମକୁ ଆସିଲେ । ଆଦିଦ୍ରାବିଡ ଶ୍ରେଣୀର ପିଲାମାନେ କିପରି ବିଦ୍ୟାଳୟରେ ପଢ଼ିବେ ସେଥି ପାଇଁ ବହୁ ଉଦ୍ୟମ କରିବାକୁ ହୋଇଛି । ୧୯୩୬ ଜାନୁଆରୀ ୧୯ ଦିନ କୁଦି ଆରସୁ ସମ୍ବାଦପତ୍ରରେ ଏହି ସଂପର୍କରେ ଏକ ବିବରଣୀ ପ୍ରକାଶ ପାଇଥିଲା ।

ଅନୁସୂଚିତ ଜାତିର ଲୋକମାନେ କାହିଁକି ଖାଦ୍ୟ ଅନ୍ୟମାନଙ୍କ ପାଇଁ ରାନ୍ଧିପାରିବେ ନାହିଁ ପେରିୟାର ଉଠାଇଲେ । କଂଗ୍ରେସ ଅଧିବେଶନରେ ବ୍ରାହ୍ମଣମାନେ ସ୍ୱତନ୍ତ୍ର ସ୍ଥାନରେ ବସି ସ୍ୱତନ୍ତ୍ର ଭାବେ ସେମାନଙ୍କ ପାଇଁ ରନ୍ଧା ଯାଉଥିବା ଖାଦ୍ୟ ଖାଉଥିଲେ । ଅବ୍ରାହ୍ମଣ ଲୋକମାନେ ପୃଥକ୍ ସ୍ଥାନରେ ବସି ଖାଦ୍ୟ ଖାଉଥିଲେ । କୌଣସି ଅବ୍ରାହ୍ମଣ ବ୍ୟକ୍ତି ବ୍ରାହ୍ମଣମାନଙ୍କ ଖାଦ୍ୟ ରାନ୍ଧିପାରିବେ ନାହିଁ । ସବୁ କଂଗ୍ରେସ ସମ୍ମିଳନୀରେ କେବଳ ବ୍ରାହ୍ମଣମାନେ ଖାଦ୍ୟ ରାନ୍ଧୁଥିଲେ । ଅବ୍ରାହ୍ମଣ ଲୋକମାନେ ଏପରିକି ରୋଷାଇ ଘରେ ପ୍ରବେଶ କରିପାରୁ ନଥିଲେ ।

କନ୍ତୁ ଆତ୍ମମର୍ଯ୍ୟାଦା ସମ୍ମିଳନୀରେ ଏକାଠି ସମସ୍ତଙ୍କ ପାଇଁ ରୋଷେଇ ହେଉଥିଲା । ନାଦର, ନାଇଡୁ, ମୁସଲମାନ ଓ ଦଳିତ ଲୋକ ସମସ୍ତେ ଏକତ୍ର ଭୋଜନ କରୁଥିଲେ ଓ ସମସ୍ତେ ଖାଦ୍ୟ ପରିଶି ପାରୁଥିଲେ ।

ପୂର୍ବରୁ ଯେଉଁମାନେ ବାଜା ବଜାଉଥିଲେ ସେମାନେ କିଛି କାମିଜି ବା ଶାର୍ଟ ପିନ୍ଧିବା ମନା ଥିଲା । ଏପରିକି ସେମାନେ ବେକରେ ତଉଲିଆ ମଧ୍ୟ ପକାଇ ପାରୁନଥିଲେ । ତାମିଲନାଡୁରେ ନୟନମ ଏକ ବାଦ୍ୟ ସମସ୍ତ ଶୁଭ କାର୍ଯ୍ୟରେ ବଜାଯାଏ । ଏହା ସହ ଏକ ଢୋଲବାଦ୍ୟ ବାଜେ ଯାହାର ଦୁଇ ପଟେ ବଜାଯାଇ ଶବ୍ଦ ସୃଷ୍ଟି କରାଯାଏ । ନୟନମ ବାଦ୍ୟ ସହ ସ୍ୱରର ଗୀତ ସହ ଢୋଲ

ବାଦ୍ୟ ତାଳ ଦେଇ ବାଜେ । ଏହି ବାଦ୍ୟ ବଜାଇବାକୁ ଶିକ୍ଷା କରିବାକୁ ହୁଏ । ପିଢ଼ି ପିଢ଼ି ଦେଇ ନୟନମ ବାଦ୍ୟ ତାମିଲ ସଂସ୍କୃତିରେ ବ୍ୟବହୃତ ହେବା ଦେଖାଯାଏ । ବିଂଶ ଶତାବ୍ଦୀ ଆରମ୍ଭରେ ଶିବ କୋହୁଣ୍ଡୁ ଏହି ବାଦ୍ୟ ବଜାଇବାରେ ବହୁ ପ୍ରବୀଣ ଥିଲେ । ସେ ମଦୁରାଇର ଲୋକ । କେବଳ ଧନୀ ଲୋକମାନେ ତାଙ୍କ ବାଦ୍ୟ ଶୁଣିବାକୁ ତାଙ୍କୁ ଡାକି ପାରୁଥିଲେ । ଏହିବାଦ୍ୟ ତାଳେ ତାଳେ ଗୀତ ଗାନ କରାଯାଉଥିଲା । ଏହି କଳା ଶିକ୍ଷା କରିବାକୁ ବହୁ ଉଦ୍ୟମ କରିବାକୁ ହେଉଥିଲା ।

୧୯୨୪ରେ କାନଡୁ କାତମ ଗ୍ରାମରେ ଭି.ଏସ୍. ସନମୁମଙ୍କ ପରିବାରରେ ଏକ ବିବାହ ଅନୁଷ୍ଠିତ ହେଲା । ସେହି ବିବାହ କାର୍ଯ୍ୟକ୍ରମରେ ଶିବ କୋହୁଣ୍ଡୁଙ୍କୁ ଗୀତ– ବାଦ୍ୟ ପରିବେଷଣ କରିବାକୁ ଡକା ଯାଇଥିଲା । ବିବାହ ପ୍ରସେସନ ବେଳେ ସେ ଓ ତାଙ୍କ ପାର୍ଟି ଏହା ପରିବେଷଣ କରିଥିଲେ । ଶିବ କୋହୁଣ୍ଡୁ ଏକ ଜରିଦିଆ ଧୋତି ପିନ୍ଧିଥିଲେ । ସେ କିଛି ଶାର୍ଟ ପିନ୍ଧିନଥିଲେ । ନୟନମ ସଂଗୀତ ବାଦ୍ୟ ପରିବେଷଣ କରୁଥିବା କଳାକାରମାନେ କୌଣସି କାମିଜ ନ ପିନ୍ଧିବା ନିୟମ ଥିଲା । ଶିବ କୋହୁଣ୍ଡୁ କେବଳ ଛୋଟ ତଉଲିଆଟିଏ ବେକରେ ପକାଇଥିଲେ । ସେହି ଅବସରରେ ପେରିୟାର, ଡ.ବରଦାରଜୁଲୁ ନାଇଡୁ ଓ ଏ.ଭି.ତ୍ୟାଗରାଜନ ଯୋଗ ଦେଇଥିଲେ । ସେମାନେ ସନମୁଗମ ପଟୁକୋଟାଇ ଅଲଗିରିଙ୍କ ଘରେ ବସିଥିଲେ, ଯେ ବି ବିବାହକୁ ନିମନ୍ତ୍ରିତ ହୋଇଥିଲେ ।

ବିବାହ ପ୍ରସେସନ ଯିବାବେଳେ ଜଣେ ଯୁବକ ଶିବ କୋହୁଣ୍ଡଙ୍କ ପାଖକୁ ଆସି ସେ କାନ୍ଧରେ ପକାଇଥିବା ତଉଲିଆଟିକୁ ବାହାର କରିବାକୁ ତାଙ୍କୁ କହିଲେ ଓ ଏହା ଧୋତିରେ ଖୋସିବାକୁ ଆଦେଶ ଦେଲେ । ଶିବ କୋହୁଣ୍ଡୁ କହିଲେ ଯେ ସେ ତାଙ୍କ ଶରୀରର ଉପର ଭାଗକୁ ଅନାବୃତ ରଖିଛନ୍ତି, କେବଳ ଝାଳ ପୋଛିବାକୁ ଛୋଟ ତଉଲିଆଟିଏ ଧରିଛନ୍ତି । ଏହାପରେ ସେହି ଯୁବକ ସେହି ଉତ୍ତରରେ ସନ୍ତୁଷ୍ଟ ନହୋଇ ତାଙ୍କୁ ଧମକ ଦେଲେ ଓ କହିଲେ ଯେ ସେ ନୟନମ ବାଦ୍ୟ ବଜାଇବାକୁ ତାଙ୍କୁ ଅନୁମତି ଦେବେ ନାହିଁ । ଏହାକୁ ଲକ୍ଷ୍ୟ କରି ଆଲଗିରି ଶିବଙ୍କ ପାଖକୁ ଯାଇ

ତାଙ୍କୁ ଛୋଟ ତଉଲିଆଟିକୁ କାନ୍ଧରୁ ବାହାର ନକରି ରଖି ତାଙ୍କର ବାଦ୍ୟ ବଜାଇ ଚାଲିବାକୁ କହିଲେ । ଯେଉଁମାନେ ଏହି ସଂଗୀତ ଶୁଣିବାକୁ ଚାହୁଁଛନ୍ତି ସେମାନେ ଏଠାରେ ରୁହନ୍ତୁ, ନହେଲେ ଏଠାରୁ ଚାଲିଯାନ୍ତୁ ବୋଲି ସେ କହିଲେ ।

ଏହାପରେ ଅନ୍ୟ କେତେକ ଶିବ କୋହୁଣ୍ଡୁଙ୍କ ପାଖକୁ ଯାଇ କାନ୍ଧରୁ ଛୋଟ ତଉଲିଆଟିକୁ ବାହାର କରିଦେବାକୁ ଧମକ ଦେଲେ । ରାସ୍ତା ମଝିରେ ସେମାନେ ବାଦ୍ୟ ବନ୍ଦ କରିଦେଲେ ଓ ପ୍ରସେସନ ବନ୍ଦ ହୋଇଗଲା । ଏହି ସମୟରେ ଆଲଗିରି ଯେ ପେରିୟାରଙ୍କ ଅନୁଗାମୀ ଏହା ଜଣାପଡିଲା । ଭି.ଏସ୍. ସନମୁଗମଙ୍କ ଘରେ ପେରିୟାର ବସିଥାନ୍ତି । କେହି ପ୍ରସେସନ ସ୍ଥଳରୁ ଯାଇ ଘଟଣାଟି ପେରିୟାରଙ୍କୁ ଜଣାଇଲେ । ପେରିୟାର କହିଲେ, "ନିଜର ଆର୍ଥିକ ଔଦ୍ଧତ୍ୟ ଦେଖାଇବା ଠିକ୍ ନୁହେଁ । ଜଣେ କଳାକାରଙ୍କ ଆତ୍ମ ସମ୍ମାନକୁ ଅସମ୍ମାନ କରାଯାଇ ପାରିବ ନାହିଁ । ଶିବ କୋହୁଣ୍ଡୁଙ୍କ ସହ କଥା ହେବା, ତେବେ ବିବାହ ପ୍ରସେସନ ଅବ୍ୟାହତ ରହୁ ।" ଭି.ଏସ. ସନମୁଗମ ଘଟଣାଟି ବୁଝିପାରିଲେ । ମଝି ରାସ୍ତାରେ ବାଦ୍ୟ - ସଂଗୀତ ବନ୍ଦକରିବା ଅସମ୍ମାନଜନକ । ସେ ଘୋଷଣା କଲେ - "ଶିବ ତାଙ୍କ କାନ୍ଧରେ ତଉଲିଆଟି ରଖି ବାଦ୍ୟ ନୟନମ ବଜାନ୍ତୁ । ଯେଉଁମାନେ ଆଗ୍ରହୀ ସେମାନେ ରହନ୍ତୁ, ନଚେତ ଏଠାରୁ ଚାଲିଯାନ୍ତୁ । ପରିସ୍ଥିତି ନିୟନ୍ତ୍ରଣକୁ ଆସିଲା । ଶିବ ତାଙ୍କର ବାଦ୍ୟ ତଉଲିଆ ଧରି ବଜାଇଲେ । ଜଣେ ଦଳିତ ଲୋକ କାନ୍ଧରେ ତଉଲିଆଟିଏ ପକାଇବା ବି ଉଚ୍ଚ ଜାତିର ଲୋକ ସହ୍ୟ କରିପାରୁ ନଥିଲେ ।

## ଆଦି ଦ୍ରାବିଡମାନଙ୍କୁ ହୋଟେଲ ମନା

ଚେନ୍ନାଇ ସହରର ମାଉଣ୍ଟ ରୋଡ ଓ ଜର୍ଜ ଟାଉନରେ ଦୁଇଟି ବଡ ବିଜ୍ଞାପନ ବୋର୍ଡ ଲଗାଯାଇ ସେଥିରେ ଲେଖା ଯାଇଥିଲା - ପରିୟା (ଆଦି ଦ୍ରାବିଡ) ଜାତିର ଲୋକ, କୁକୁର ଓ.କୁଷ୍ଠରୋଗୀଙ୍କୁ ଭିତରକୁ ଯିବା ମନା । କେଉଁ ହୋଟେଲକୁ କେବଳ ବ୍ରାହ୍ମଣମାନେ ଯିବେ, ତାହା ମଧ୍ୟ ଲେଖାଯାଇଥିଲା । ଏହାର ତାତ୍ପର୍ଯ୍ୟ ଥିଲା ଯେ ହୋଟେଲମାନଙ୍କୁ ଶୂଦ୍ର ଓ ପଞ୍ଚମ (ଦଳିତ) ମାନେ ପ୍ରବେଶ କରିପାରିବେ ନାହିଁ ।

ଊନବିଂଶ ଶତାବ୍ଦୀ ବେଳକୁ ଛାତ୍ରାବାସରେ କେବଳ ବ୍ରାହ୍ମଣପିଲାମାନେ ରହୁଥିଲେ । ଅବ୍ରାହ୍ମଣ ପିଲାମାନେ ହଷ୍ଟେଲରେ ରହିପାରିବେ ନାହିଁ । ହୋଟେଲରେ ମଧ୍ୟ ସେମାନେ ଯାଇ ଖାଇପାରିବେ ନାହିଁ । ଯେଉଁଠି ପିଲାମାନେ ରହିଲେ, ସେଠାରେ ସେମାନେ ବ୍ରାହ୍ମଣ ପିଲାମାନଙ୍କ ସହ ଏକାଠି ବସି ଖାଇପାରିଲେ ନାହିଁ । ଖାଦ୍ୟ ପରସିବା କ୍ଷେତ୍ରରେ ମଧ୍ୟ ତାରତମ୍ୟ ରହୁଥିଲା ।

ତିରୁବଲିକେନିସ୍ଥିତ ଆକବର ସାହିବ ରୋଡରେ ଡ. ସି. ନଟେସନ ଏକ ଛାତ୍ରାବାସରେ ଅବ୍ରାହ୍ମଣ ପିଲାମାନଙ୍କୁ ରଖିଥିଲେ । ତାହାକୁ ଦ୍ରାବିଡ ସଂଘ ଛାତ୍ରାବାସ କୁହାଯାଉଥିଲା । ସେଠାରେ ଅବ୍ରାହ୍ମଣ ପିଲାମାନେ ରହି ପଢୁଥିଲେ । ଯେଉଁମାନେ ଚେନାଇକୁ ଉଚ୍ଚ ଶିକ୍ଷା ପାଇଁ ଆସୁଥିଲେ ସେଠାରେ ରହି ପଢୁଥିଲେ । ଫଳରେ କିଛି ଅବ୍ରାହ୍ମଣ ପିଲା ସେଠାକୁ ଆସି ଉଚ୍ଚ ଶିକ୍ଷା ପ୍ରାପ୍ତ ହୋଇଥିଲେ । ବହୁ କ୍ଷେତ୍ରରେ ଶୂଦ୍ର ଓ ଦଳିତ ବର୍ଗର ପିଲାମାନେ ବହୁ ପ୍ରତିବନ୍ଧକର ସମ୍ମୁଖୀନ ହେଉଥିଲେ ।

୧୯୩୮ ନୀଦମଙ୍ଗଳମଠାରେ କଂଗ୍ରେସର ଏକ ସଭା ଅନୁଷ୍ଠିତ ହୋଇଥିଲା । ତିନି ଜଣ ଆଦି ଦ୍ରାବିଡ ବ୍ୟକ୍ତି ସେହି ସଭାରେ ଯୋଗ ଦେଇ ଅନ୍ୟମାନଙ୍କ ସହ ଖାଇଥିଲେ । ଏହା ଜଣାପଡିବା ପରେ ସେମାନଙ୍କୁ ଧରି ନଣ୍ଡା କରାଗଲା ଓ ସେମାନଙ୍କୁ ଗଛରେ ବାନ୍ଧି ମାଡ ଦିଆଯାଇଥିଲା ।

୧୯୩୫ରେ କୁମ୍ଭକୋନମ ମୁନିସପାଲିଟିରେ ନିଷ୍ପତ୍ତି ହୋଇଥିଲା ଯେ ଦଳିତ ପରିବର୍ତ୍ତେ ଶୂଦ୍ରମାନଙ୍କୁ ବ୍ରାହ୍ମଣ ବସ୍ତିର ମଳ ଉଠାଇବାକୁ ନିଯୁକ୍ତି ଦିଆଯିବ । ବ୍ରାହ୍ମଣମାନଙ୍କର ଝାଡା ବି ଦଳିତ ମାନେ ଉଠାଇବା ସେ ସମୟରେ ମନ୍ଦ କାର୍ଯ୍ୟ ଥିଲା ।

ସେଲମ ମୁନିସପାଲିଟିର ଚେୟାରମାନ ସି.ରାଜଗୋପାଳଚାରୀ ଥିବା ବେଳେ ଜଣେ ଆଦି ଦ୍ରାବିଡ ଜଳଯୋଗାଣ ପାଇଁ ପାଇପର ଭଲବ ଖୋଲୁଥିଲେ ଓ ବନ୍ଦ କରୁଥିଲେ । ତାଙ୍କୁ ସେହି କାର୍ଯ୍ୟରୁ ହଟାଇବା ପାଇଁ ବ୍ରାହ୍ମଣମାନେ ଦାବି କରିଥିଲେ । ୧୯୩୮ରେ ତାମିଲ ନାଡୁ ବସମାନଙ୍କରେ ପଞ୍ଚମ ବା ଦଳିତ

ଶ୍ରେଣୀର ଲୋକମାନେ ଯାତ୍ରା କରିପାରିବେ ନାହିଁ ବୋଲି ଲେଖା ଯାଉଥିଲା । ଏପରିକି ବସ ଟିକେଟରେ ମଧ୍ୟ ଏହା ଲେଖା ଯାଇଥିଲା । ରାମନାଥପୁରମ ଜିଲ୍ଲା ବୋର୍ଡର ସଭାପତି ଭାବେ ଡବ୍ଲୁ.ପି.ଏ. ସୌନ୍ଦର ପାଣ୍ଡିୟାନ ହେବାପରେ ସେ ଏହି ଲେଖାକୁ ହଟାଇ ଦେଇଥିଲେ । ୧୮୨୯ରେ ତିରୁବିତାଙ୍କୁର ସରକାର ଏକ ଆଦେଶ ଯାରି କରିଥିଲେ ଯେ ନାଦର ଜାତିର ମହିଳାମାନେ ବ୍ଲାଉଜ ପିନ୍ଧି ପାରିବେ ନାହିଁ । ଚେନ୍ନାଇ ସ୍ଥିତ ଭିଲିଓ୍ୱାଲକମରେ ୧୯୪୦ରେ ପୋଷ୍ଟ ଅଫିସର ପୋଷ୍ଟମାନ ଦଳିତ ଲୋକମାନଙ୍କ ପାଖକୁ ଚିଠି ଆସିଲେ ତାହାକୁ ବାହାରେ ଫିଙ୍ଗି ଦେଉଥିଲେ । ସମସ୍ତ ସରକାରୀ କାଗଜପତ୍ରରେ ଦଳିତ ଜାତିର ଲୋକମାନଙ୍କ ନାମରେ ପରିୟା ଲେଖା ଯାଉଥିଲା । ଚେନ୍ନାଇ ମ୍ୟୁନିସପାଲ କର୍ପୋରେସନ ପରିୟା ପରିବର୍ତ୍ତେ ଆଦି ଦ୍ରାବିଡ ଲେଖିଲା । ଡ.ସି. ନଟେସନଙ୍କ ଉଦ୍ୟମ ଯୋଗୁ ସରକାରୀ ନଥିରେ ଆଦି ଦ୍ରାବିଡ ଲେଖାଗଲା ।

୧୯୩୨ ସମୟକୁ ନେଲାଇ ଜିଲ୍ଲାରେ ପୁରାଧା ଧୋବି ନାମରେ ଏକ ଜାତିର ଲୋକ ରହୁଥିଲେ । ସେମାନଙ୍କୁ ଦେଖିବା ଏକ ଅଶୁଭ ଘଟଣା ବୋଲି ବିଶ୍ୱାସ ଥିଲା । ତେଣୁ ଦିନବେଳେ ସେହି ଜାତିର ଲୋକମାନେ ରାସ୍ତାକୁ ନବାହାରିବାକୁ ସେମାନଙ୍କୁ ବାରଣ କରାଯାଇଥିଲା । ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ନାଦର ଜାତିର ମହିଳାମାନେ ଅଳଙ୍କାର ପିନ୍ଧିବା ନିଷିଦ୍ଧ ଥିଲା । ସେମାନେ ଗାଈ ଦୁହିଁପାରିବେ ନାହିଁ, ବ୍ଲାଉଜ ପିନ୍ଧି ପାରିବେ ନାହିଁ, କିମ୍ବା ଗରାରେ ପାଣି ନେଇପାରିବେ ନାହିଁ । ଏହି ସବୁ ସର୍ତ୍ତ ବ୍ରାହ୍ମଣମାନେ ଅନ୍ୟମାନଙ୍କ ପାଇଁ କରିଥିଲେ । ଯେତେବେଳେ ଓମାନ୍ଦୁର ରାମସାମୀ ରେଡିୟାର ତାମିଲନାଡୁର ମୁଖ୍ୟମନ୍ତ୍ରୀ ଥିଲେ ତାଙ୍କର ପୁଅ ଶରଣ ମା ଦେବୀ ଗୁରୁକୁଳରେ ଛାତ୍ର ଥିଲେ । ସେ ବ୍ରାହ୍ମଣ ପିଲାଙ୍କ ସହ ଏକାଠି ଖାଇପାରୁ ନଥିଲେ କିମ୍ବା ସେମାନଙ୍କ କଳସୀରୁ ପାଣି ପି' ପାରୁନଥିଲେ । ଚେନ୍ନାଇର କୀଲପୌକ ମେଣ୍ଟାଲ ହସ୍ପିଟାଲରେ ବ୍ରାହ୍ମଣ ରୋଗୀମାନଙ୍କୁ ସ୍ୱତନ୍ତ୍ର ଚିକିତ୍ସା ଦିଆଯାଉଥିଲା । ସେମାନଙ୍କୁ ଅବ୍ରାହ୍ମଣ ରୋଗୀମାନଙ୍କ ସହ ରଖାନଯାଇ ସ୍ୱତନ୍ତ୍ର ସ୍ଥାନରେ ରଖାଯାଉଥିଲା ।

ଯେତେବେଳେ ଡ. ସୁବାରାୟନ ମୁଖ୍ୟମନ୍ତ୍ରୀ ହେଲେ ପାଟୁକୋଟାଇରେ ତାଲୁକ ବୋର୍ଡ ଅଫିସରେ ଜଣେ ଦଳିତ ବ୍ୟକ୍ତି ମାରିମୁତୁଙ୍କୁ ସଭ୍ୟ କଲେ । ତାଲୁକ ବୋର୍ଡରେ ସଭାପତି କେବେ ସଭ୍ୟମାନଙ୍କ ସଭା ଡାକିଲେ ନାହିଁ କାରଣ ସେମାନଙ୍କୁ ଜଣେ ଦଳିତ ବ୍ୟକ୍ତିଙ୍କ ସହ ଏକାଠି ବସିବାକୁ ହେବ । ପାଟୁକୋଟାଇର ଆତ୍ମମର୍ଯ୍ୟାଦା ସଂଘ ତରଫରୁ ପ୍ରତିବାଦ କରାଗଲା । ମୁଖ୍ୟମନ୍ତ୍ରୀ ଡ. ସୁବାରାୟନ କହିଲେ ଯେ ଯଦି ତାଲୁକ ବୋର୍ଡର ସଭା ଆହୂତ ନହୁଏ ତେବେ ବୋର୍ଡକୁ ଭାଙ୍ଗି ଦିଆଯିବ । ଏହାପରେ ତାଲୁକ ବୋର୍ଡର ସଭା ଡକାଗଲା । ସଭାରେ ମାରିମୁତ ଅନ୍ୟ ସଭ୍ୟମାନଙ୍କ ସହ ବସିଲେ ।

ନାବୁବଟୁକରାଇର ତାଂଜାବୁର ଠାରେ ଏକ ଶ୍ମଶାନ ରହିଥିଲା । ସେଠାରେ ସବୁ ଜାତିର ଲୋକଙ୍କର ଶବଦାହ କରାଯାଉଥିଲା । ସେହି ଶ୍ମଶାନରେ ପଥର ରଖି ଶୂଦ୍ରମାନଙ୍କ ପାଇଁ ଏକ ସ୍ଥାନ ରଖା ଯାଇଥିଲା ଯେଉଁ ସ୍ଥାନରେ ଶୂଦ୍ରମାନଙ୍କର କେବଳ ଶବଦାହ ହେବ । ୧୯୫୪ରେ ପେରିୟାରଙ୍କ ଉଦ୍ୟମରେ ସେହି ପଥର ହଟାଇ ଦିଆଯାଇଥିଲା । ଯେଟାୟପୁରମଠାରେ ଏକ ଭାରତୀ ଉତ୍ସବ ପାଳନ କରାଯାଉଥିଲା । ମଞ୍ଚରେ ସି. ରାଜଗୋପାଳଚାରୀ, ଏମ.ଏସ. ଶୁଭଲକ୍ଷ୍ମୀ ଓ ତାଙ୍କ ସ୍ୱାମୀ ସଦାଶିବନଙ୍କ ବସିବା ପାଇଁ, ଚଉକି ରଖାଯାଇଥିଲା । ମୁଖ୍ୟମନ୍ତ୍ରୀ ଓମାନଦୁର ରାମସାମୀ ରେଡିୟାରଙ୍କ ବସିବା ପାଇଁ ଚଉକିର ବ୍ୟବସ୍ଥା ନ ହୋଇ ତଳ ଦରିରେ ବସିବାକୁ ବ୍ୟବସ୍ଥା ହୋଇଥିଲା । ଜାତି ଆଗରେ ପଦପଦବୀ ଗୌଣହୋଇ ରହିଥିଲା ।

ପଚିଶ ବର୍ଷ ତଳେ ରେଲ ବିଭାଗର ଭୋଜନାଳୟରେ ବ୍ରାହ୍ମଣମାନଙ୍କ ପାଖରେ ଅବ୍ରାହ୍ମଣ ବସି ଖାଇପାରୁନଥିଲେ । ସେମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ହୋଇଥିଲା । ୧୯୪୩ରେ ସରକାରୀ କଲେଜ ମାନଙ୍କରେ ବ୍ରାହ୍ମଣମାନଙ୍କ ପାଇଁ ସ୍ୱତନ୍ତ୍ର ଜଳ-କଳସୀ ରଖାଯାଉଥିଲା । ସମସ୍ତ ଛାତ୍ର ଏକ ଜାଗାରୁ ପାଣି ପି' ପାରୁନଥିଲେ । ବ୍ରାହ୍ମଣ ଓ ଅବ୍ରାହ୍ମଣମାନଙ୍କ ପାଇଁ ସ୍ୱତନ୍ତ୍ର କଳସୀମାନଙ୍କର ବ୍ୟବସ୍ଥା ହୋଇଥିଲା । ପୁଲିଆଙ୍ଗୁଡିରେ ଜଣେ ବ୍ରାହ୍ମଣଙ୍କ ବିରୁଦ୍ଧରେ ଏକ ନରହତ୍ୟା ଅଭିଯୋଗ

ଆସିଥିଲା । ସେ ଗିରଫ ହେଲେ ଓ ତାଙ୍କୁ କୋର୍ଟରେ ହାଜର କରାଗଲା । ବିଚାରପତି ବ୍ରାହ୍ମଣ ଥିଲେ ଓ ସେ ନରହତ୍ୟା ପରି ଅଭିଯୋଗ ଥାଇ ସୁଦ୍ଧା ଅପରାଧୀଙ୍କୁ ମୁକ୍ତ କରିଦେଲେ । ଲୋକମାନଙ୍କର ସାଧାରଣ ଜୀବନଧାରାରେ ଜାତିର ମନୋଭାବ ପ୍ରଭାବଶାଳୀ ରହିଥିଲା ।

ଆଦି ଦ୍ରାବିଡମାନଙ୍କ ପାଇଁ ରହିଥିବା ପ୍ରତିବନ୍ଧକରୁ କିଛି ଏଠାରେ ଉଲ୍ଲେଖ କରାଯାଇପାରେ ।

- ବ୍ରାହ୍ମଣ ଓ ଉଚ୍ଚ ଜାତିର ଲୋକ ରହୁଥିବା ବସ୍ତିର ରାସ୍ତାରେ ସେମାନେ ଚାଲିପାରିବେ ନାହିଁ । ସେହିପରି ମନ୍ଦିର ଥିବା ସର୍ବସାଧାରଣ ରାସ୍ତାରେ ମଧ୍ୟ ଦଳିତମାନେ ଚାଲିବା ମନା ଥିଲା ।
- ଆଣ୍ଠୁ ତଳକୁ ସେମାନେ ଲୁଗା ପିନ୍ଧିପାରିବେ ନାହିଁ ।
- ସେମାନେ ସୁନାର ଗହଣା ଲଗାଇପାରିବେ ନାହିଁ ।
- କେବଳ ମାଟି ପାତ୍ରରେ ଜଳ ନେବେ, ଅନ୍ୟ ଧାତୁ ପାତ୍ରରେ ପାଣି ଘରକୁ ନେଇପାରିବେ ନାହିଁ ।
- ସେମାନେ ପିଲାମାନଙ୍କୁ ପାଠ ପଢ଼ାଇପାରିବେ ନାହିଁ ।
- ସେମାନେ ଚାକର (ଦାସ) ପରି ବଞ୍ଚିବେ ।
- ସେମାନେ କୌଣସି ଜମିର ମାଲିକ ହୋଇପାରିବେ ନାହିଁ ।
- ଗାଁରେ ଚାଲୁଥିବା ବେଳେ ସେମାନେ ଚପଲ ପିନ୍ଧିପାରିବେ ନାହିଁ । ସେମାନଙ୍କ ବିବାହ ସମୟରେ ସେମାନେ କିଛି ବାଜା ବଜାଇ ପାରିବେ ନାହିଁ ।
- ସେମାନେ କୌଣସି ଘୋଡା ଉପରେ ଚଢ଼ି ପ୍ରସେସନରେ ଯାଇପାରିବେ ନାହିଁ ।
- ସେମାନେ କୌଣସି ଶଗଡ ଗାଡିରେ ବସି ଯାଇପାରିବେ ନାହିଁ । ସର୍ବସାଧାରଣ କୂଅ ପୋଖରୀର ଜଳ ନେଇପାରିବେ ନାହିଁ ।

- ଶ୍ମଶାନରେ ପହଞ୍ଚିବା ପାଇଁ ସେମାନେ ଅନ୍ୟ ବାଟରେ ଯିବେ । ଗାଁ ଲୋକଙ୍କ ରାସ୍ତାରେ ଯାଇପାରିବେ ନାହିଁ ।
- ଗାଁ ଲୋକଙ୍କ ଶ୍ମଶାନ ସେମାନେ ବ୍ୟବହାର କରିପାରିବେ ନାହିଁ । ଶରୀରର ଉପର ଅଂଶକୁ ସେମାନେ ତଉଲିଆଦ୍ୱାରା ଆବଦ୍ଧ କରିପାରିବେ ନାହିଁ ବା କାମିଜ ପିନ୍ଧିପାରିବେ ନାହିଁ ।
- ସେମାନଙ୍କର ମହିଳାମାନେ ବ୍ଲାଉଜ ପିନ୍ଧିପାରିବେ ନାହିଁ ।
- କୌଣସି ଉଚ୍ଚ ଜାତିର ଲୋକ ମହିଳାମାନଙ୍କ ପାଖ ଦେଇ ଗଲେ ସେମାନେ ଓଢ଼ଣା ଦେଇପାରିବେ ନାହିଁ, ଏହାକୁ ଅନାବୃତ ରଖିବେ ।
- ଯଦି କୌଣସି କେସ୍‌ରେ କୋର୍ଟରେ ସାକ୍ଷ୍ୟ ଦେବାକୁ ହୁଏ ତେବେ ସେମାନେ ଅନ୍ୟଠାରୁ ଦୂରରେ ଛିଡା ହୋଇ ସାକ୍ଷ୍ୟ ପ୍ରଦାନ କରିବେ ।
- ହୋଟେଲ ଓ ବସ୍‌ମାନଙ୍କରେ ସେତେବେଳେ ଲେଖା ଯାଉଥିଲା ଯେ ଦଳିତ ଲୋକ, କୁକୁର ଓ କୁଷ୍ଠରୋଗୀମାନେ ସେଥିରେ ପ୍ରବେଶ କରିପାରିବେ ନାହିଁ ।
- ନାଟକ ଅଭିନୀତ ହେଉଥିବା ମଂଚ ସମ୍ମୁଖସ୍ଥ ହଲରେ ଦଳିତ ବା ପଞ୍ଚମମାନେ ପ୍ରବେଶ କରିପାରିବେ ନାହିଁ ବୋଲି ଲେଖାଯାଉଥିଲା ।

ଏହି ପ୍ରଥାମାନଙ୍କୁ ଦୂର କରିବାକୁ ପେରିୟାର ସଂଗ୍ରାମ କରିଥିଲେ । ଯଦି କୌଣସି ଦଳିତ ବ୍ୟକ୍ତି, କୌଣସି ଶଗଡ ବା ଘୋଡାଗାଡିରେ ଯିବା କେହି ଦେଖୁଥିଲେ ତେବେ ତାଙ୍କୁ ଲୋକମାନେ ବାନ୍ଧିଦେଇ ପିଟୁଥିଲେ । ଏହି କଥାକୁ ପେରିୟାର ନିନ୍ଦା କରିବା ସହ କୁଦି ଅରସୁ ସମ୍ବାଦପତ୍ରରେ ୨୪.୧୧.୧୯୨୯ ସଂଖ୍ୟାରେ ଏ ବିଷୟରେ ଲେଖିଥିଲେ । ଆନ୍ତୋନିରାଜ ଏକ ଦଳିତ ଛାତ୍ର ଅଗ୍ରହରମ ରାସ୍ତାରେ ଦିନେ ଚାଲିକରି ଯାଉଥିଲେ । ଏହା ଦେଖି ରଙ୍ଗସାମୀ ଆୟାର ନିଜର ଚପଲରେ ତାଙ୍କୁ ବାଡେଇଲେ । ଏ ସଂପର୍କରେ କୁଦି ଆରସୁ ସମ୍ବାଦପତ୍ରରେ ୨୪.୨.୧୯୨୬ ଦିନ ଏକ ନିନ୍ଦାପୂର୍ବକ ଲେଖା ଲେଖିଥିଲେ ।

ଲୋକମାନଙ୍କ ମଧ୍ୟରେ ଆତ୍ମସମ୍ମାନ ଭାବ ଆଣିବାକୁ ଓ ସାମାଜିକ ସଚେତନତା ସୃଷ୍ଟି କରିବାକୁ ପେରିୟାର ବିଭିନ୍ନ ସମୟରେ ନାନା ସଭାମାନଙ୍କରେ ଯୋଗ ଦେଉଥିଲେ ।

ଉଚ୍ଚ ଜାତି ଲୋକମାନଙ୍କର ଏହି ସବୁ ଅମାନବିକ କାର୍ଯ୍ୟକୁ ସେ ନିନ୍ଦା କରୁଥିଲେ ଓ ଏହାକୁ ପ୍ରତିରୋଧ କରିବାକୁ ସେ ବିଭିନ୍ନ ସଭା ସମିତିରେ ଲୋକମାନଙ୍କୁ ଆହ୍ୱାନ ଦେଉଥିଲେ । ନିମ୍ନ ଶ୍ରେଣୀ ଲୋକମାନଙ୍କର ମାନବିକ ଅଧିକାର ପାଇଁ ସେ ଜୀବନସାରା ସଂଗ୍ରାମ କରିଛନ୍ତି । ତୁରିମଙ୍ଗଳମଠାରେ ଏହି କଥା ସେ କହିଥିଲେ–

"ମାନବିକ ଅଧିକାର ପାଇଁ ଆମର ସ୍ୱାଧୀନ ସରକାର ଦରକାର । ଯେଉଁମାନେ ଦଳିତ ଲୋକମାନଙ୍କୁ ଏପରି ନ୍ୟୂନକରି ରଖିଛନ୍ତି ସେମାନେ ମାନବିକତାର ଶତ୍ରୁ ଓ ଦ୍ରାବିଡଦଳର ମଧ୍ୟ ଶତ୍ରୁ । ଦ୍ରାବିଡ କାଜାଗମ ଦଳର ଆଭିମୁଖ୍ୟ ହେଉଛି ଜାତି ପ୍ରଥାର ବିଲୋପ । ଦ୍ରାବିଡ କାଜାଗମ (ଡିକେ) ପାର୍ଟି ଓ ଦଳିତ ଜାତିର ଲୋକମାନେ ଅଙ୍ଗାଙ୍ଗୀ ଭାବେ ସଂପୃକ୍ତ । ସେମାନେ ପରସ୍ପରଠାରୁ ପୃଥକ ହୋଇପାରିବେ ନାହିଁ ।

ସେ ଥରେ କହିଲେ ଭାରତର ରାଷ୍ଟ୍ରପତି ଜଣେ ଦଳିତ ବ୍ୟକ୍ତି ହେବା ଆବଶ୍ୟକ । ଦଳିତ ଜାତି ବା ଅନୁସୂଚିତ ଜାତି (ଏସ ସି) ଲୋକମାନଙ୍କର ଅଧିକାର ପାଇଁ ସେ ସହାସ୍ରାଧିକ ସଭାରେ ଯୋଗଦେଇ ଲୋକମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିଛନ୍ତି । ପେରିୟାରଙ୍କ କାର୍ଯ୍ୟକ୍ରମ ଓ ଭାଷଣ ବିଦୁତଲାଇ ସମ୍ବାଦପତ୍ର ଓ ଦ୍ୱିମାସିକ ପତ୍ରିକା ଉନମାଇରେ ପ୍ରକାଶ ପାଉଥିଲା ।

ଦ୍ରାବିଡ କାଜାଗମ ଦଳ ଓ ପେରିୟାର ସମାଜର ଅବହେଳିତ, ଦରିଦ୍ର ଓ ଦଳିତ ଲୋକମାନଙ୍କର ମାନବିକ ଅଧିକାରର ସୁରକ୍ଷା ପାଇଁ ସମର୍ପିତ ଥିଲେ । ସମସ୍ତ ଦ୍ରାବିଡ ଜନଗଣ ଏକ ଭୂମି ଓ ଏକ ଜାତିର ବ୍ୟକ୍ତି । ଦ୍ରାବିଡମାନଙ୍କ ଭିତରେ କିଛି ବ୍ୟକ୍ତିଙ୍କର ଜାତିଗତ ଭାବନା ନେଇ ଅହମିକା ରହିଛି । ଆମକୁ ସମସ୍ତଙ୍କ ଭିତରେ ସମତା ଆଣି ଜାତିଗତ ଭେଦଭାବକୁ ଦୂର କରିବାକୁ ହେବ । ଆମ ମଧ୍ୟରେ କୌଣସି ଭେଦଭାବ ସ୍ଥାନ ପାଇବା ଯଥାର୍ଥ ନୁହେଁ ।

ଡିକେର ଆଭିମୁଖ୍ୟ ହେଉଛି ସାମାଜିକ ଭେଦଭାବକୁ ଦୂରକରିବା । ପରିୟା- ବ୍ରାହ୍ମଣ ଭିତରେ, ଉଚ୍ଚ ଜାତି ନୀଚ ଜାତି ଭିତରେ, ପଞ୍ଚମ ଓ ଶୂଦ୍ରମାନଙ୍କ ମଧ୍ୟରେ ରହି ଆସିଥିବା ଭେଦଭାବକୁ ଦେଶରୁ ବିଲୋପ କରିବାକୁ ପଡିବ ।

ଆର୍ଯ୍ୟମାନେ ଓ ସେମାନଙ୍କର ଦଳ ଲୋକମାନଙ୍କୁ ଭ୍ରମିତ କରି ଆସୁଛନ୍ତି । ସେମାନେ ଈଶ୍ୱରଙ୍କ ନାମରେ ଲୋକମାନଙ୍କୁ ଦାସ କରି ରଖିଛନ୍ତି । ଆଦି ଦ୍ରାବିଡମାନଙ୍କ ପାଇଁ ସେମାନେ ବହୁତ କରିଛନ୍ତି ବୋଲି କହୁଛନ୍ତି, କିନ୍ତୁ ତାହା ସତ୍ୟ ନୁହେଁ । କେଉଁମାନଙ୍କୁ ଆମେ ଆଦି ଦ୍ରାବିଡ କହିବା ନାହିଁ । ପରିୟା ବା ଶୂଦ୍ର କହି ଆମେ କାହାକୁ ନ୍ୟୂନକରିବା ନାହିଁ । ଦଳିତ ଓ ସମାଜର ଅନଗ୍ରସର ବ୍ୟକ୍ତିମାନଙ୍କ ପାଇଁ ମୋର ବନ୍ଧୁ ଡ. ଆମ୍ବେଦକର ଅନେକ କିଛି କରୁଛନ୍ତି । ସମାଜର ଦଳିତ ଲୋକମାନେ ହିନ୍ଦୁ ନୁହନ୍ତି ବୋଲି ସେ କହୁଛନ୍ତି । ମୁଁ ଆମ କାର୍ଯ୍ୟରେ ତାଙ୍କର ସହଯୋଗ କାମନା କରୁଛି ।

ସବୁ ସ୍ତରର ଓ ଶ୍ରେଣୀର ଲୋକମାନଙ୍କୁ ଏକତ୍ର କରିବା ପାଇଁ ଆମେ ଲକ୍ଷ୍ୟ ରଖିବା । ଭାରତୀୟ ସମାଜ ଏକ ସଂହତିପୂର୍ଣ୍ଣ ସମାଜ ହେବା ଆମର ଆଭିମୁଖ୍ୟ । ଡିକେ ସମସ୍ତ ଲୋକଙ୍କର ଜୀବନଧାରାକୁ ଉନ୍ନତ କରିବାକୁ ପ୍ରୟାସ କରିବ । ବିଶେଷକରି ସମାଜର ତଳେ ପଡିଥିବା ସବୁ ଲୋକଙ୍କର ବିକାଶ କରିବାକୁ ଆମର ଉଦ୍ୟମ ଅବ୍ୟାହତ ରହିବ । ଆମ ଲକ୍ଷ୍ୟ ପୂରଣ ପାଇଁ ସମସ୍ତ ଲୋକ ଆମ ସହ ସମ୍ମିଳିତ ହୋଇପାରିବେ । ନିଷ୍ପୀଡିତ ଲୋକମାନେ ଡିକେରେ ଯୋଗ ଦିଅନ୍ତୁ ବା ନଦିଅନ୍ତୁ କିନ୍ତୁ ଆମ ଦଳର କାର୍ଯ୍ୟ ନିଷ୍ପୀଡିତ ଲୋକଙ୍କ ପାଖରେ ପହଞ୍ଚିବ ।

## ସଚେତନତା ସୃଷ୍ଟି କରିବା

ପେରିୟାର ଅବିରତ ଭାବରେ କାର୍ଯ୍ୟ କରୁଥିଲେ ଓ ଏକ ମୁକ୍ତ ମନରେ ସବୁ ବିଷୟକୁ ଅନୁଶୀଳନ କରୁଥିଲେ । ଲୋକମାନଙ୍କୁ ସଚେତନ କରିବା ଓ ସେମାନେ କିପରି ନିଜର ଅଧିକାର ପାଇଁ ସହଯୋଗ କରିବେ ସେଥି ପାଇଁ ଭୟଶୂନ୍ୟ ଭାବେ ଲୋକମାନଙ୍କୁ ବୁଝାଉଥିଲେ । ଏହା ପେରିୟାରଙ୍କ ସମ୍ବନ୍ଧରେ ଆନାଦୁରାଇ କହିଥିଲେ ।

ଜଣେ ବ୍ୟକ୍ତି ଅନ୍ୟ ଜଣେ ବ୍ୟକ୍ତିଙ୍କୁ ଛୁଇଁବ ନାହିଁ, ଦେଖିବ ନାହିଁ, ଜଣେ ରାସ୍ତାରେ ଚାଲିପାରିବ ନାହିଁ, ମନ୍ଦିର ଭିତରକୁ ଯାଇପାରିବ ନାହିଁ, ସର୍ବସାଧାରଣ ଜଳାଶୟରୁ ପାଣି ନେଇପାରିବ ନାହିଁ– ଏହି ବ୍ୟବସ୍ଥା ବିରୁଦ୍ଧରେ ପେରିୟାର ସ୍ୱର ଉଠାଇଥିଲେ । ଏହିପରି ଏକ ସାମାଜିକ ଅବସ୍ଥା ତାମିଲନାଡୁରେ ପେରିୟାରଙ୍କ ସମୟରେ ରହିଥିଲା । ଯେଉଁ ସମାଜରେ ଏତେ ଅନ୍ୟାୟ ଓ ଅମାନବିକତା ରହିଛି ଈଶ୍ୱର ତାକୁ କିପରି ସହ୍ୟ କରୁଛନ୍ତି ? ସେହିପରି ଈଶ୍ୱରଙ୍କୁ ବିଶ୍ୱାସ କରିବାର ଅର୍ଥ କିଛି ରହିଛି କି ? ତଥାପି ଲୋକମାନେ ଈଶ୍ୱରଙ୍କୁ ନ୍ୟାୟବାନ ଓ କରୁଣାକର କହିବା କିଛି ଅର୍ଥ ରଖେ ନାହିଁ ।

ଆମ ଲୋକଙ୍କ ବିଷୟରେ କ'ଣ କୁହାଯିବ । ସମାଜରେ ମୁଷ୍ଟିମେୟ ଲୋକ ଅନ୍ୟମାନଙ୍କୁ ଏପରି ଦମନକରି ରଖିବାକୁ କାହିଁକି ସହ୍ୟ କରାଯିବ ! ଲୋକେ କେତେ ଧୈର୍ଯ୍ୟର ସହ ଏହି ଅନ୍ୟାୟକୁ ବରଦାସ୍ତ କରିବେ ? ଏହି ସବୁ ପ୍ରଶ୍ନ ପେରିୟାର ଅବତାରଣା କରୁଥିଲେ । ଅସ୍ପୃଶ୍ୟ ଲୋକମାନଙ୍କୁ ସବୁ ସ୍ତରରେ ସମାନତା ଦିଆଯବା ଆବଶ୍ୟକ । ଅସ୍ପୃଶ୍ୟତା କାହିଁକି ରହିଛି, ଏହା କିପରି ସୃଷ୍ଟିହେଲା । ଆମେ ଯେତେବେଳେ ପଚାରୁଛେ ଆମକୁ କୁହାଯାଉଛି ଏହା ଆମ ଧର୍ମରେ ରହିଛି । ଧର୍ମ କାହିଁକି ଅସ୍ପୃଶ୍ୟତା ସୃଷ୍ଟି କରିଛି –ଆମେ ପଚାରିଲେ ଆମକୁ କୁହାଯାଉଛି ଏହା ଆମ ଶାସ୍ତ୍ରର ନିର୍ଦ୍ଦେଶ । ଆମେ ଯଦି ପଚାରୁଛେ ଶାସ୍ତ୍ର କିପରି ସୃଷ୍ଟି ହୋଇଛି, ଆମକୁ କୁହାଯାଉଛି ଏହା ଈଶ୍ୱରଙ୍କର ନିର୍ଦ୍ଦେଶରେ ରଚିତ ହୋଇଛି ।

ଯଦି ସେମାନଙ୍କର ବକ୍ତବ୍ୟ ଯଥାର୍ଥ, ତେବେ ଆମକୁ ଧର୍ମରୁ ମୁକ୍ତ ହେବାକୁ ହେବ, କାରଣ ଧର୍ମ ହିଁ ଅସ୍ପୃଶ୍ୟତାକୁ ପ୍ରଶ୍ରୟ ଦେଇଛି । ଆମକୁ ଶାସ୍ତ୍ରକୁ ପ୍ରତ୍ୟାଖ୍ୟାନ କରିବାକୁ ହେବ ଯାହା ଧର୍ମ, ଈଶ୍ୱର ପ୍ରେରଣାରେ ରଚିତ ହୋଇଛି ।

ଜାତିର ନିୟମ ମାନିବା ଯୋଗୁ ମନୁଷ୍ୟ ଅନ୍ୟମାନଙ୍କୁ ବିଷ୍ଠାଠାରୁ ଆହୁରି ନିକୃଷ୍ଟ ମନେ କରୁଛି । ଜଣେ ବ୍ୟକ୍ତି ଯେତେବେଳେ ପାଇଖାନାରେ ମଳତ୍ୟାଗ କରୁଛି, ସେତେବେଳେ ସେ ତାର ମଳଦ୍ୱାରକୁ ପାଣିରେ ଧୋଉଛି । ଯଦି କେତେବେଳେ କେହି କୌଣସି ମଇଳା ମାଡି ଦେଉଛି ସେ ନିଜର ଗୋଡକୁ ପାଣିରେ ଧୋଇ ପରିଷ୍କାର କରୁଛି । ପାଣିରେ ଧୋଇବାଦ୍ୱାରା ମଇଳାର ଚିହ୍ନ

ସେହି ଅଂଶରୁ ପୂରା ଛାଡିଯିବ ଓ ପରିଷ୍କାର ହୋଇଯିବ । କିନ୍ତୁ ଜଣେ ଯେତେବେଳେ ଜଣେ ଦଳିତ ବ୍ୟକ୍ତିକୁ ସ୍ପର୍ଶ କରିଦେଉଛି, ସେତେବେଳେ ତାର ସମଗ୍ର ଶରୀର ଅପବିତ୍ର ହୋଇଗଲା ଭାବି ସେ ପୂରା ପାଦରୁ ମୁଣ୍ଡ ପର୍ଯ୍ୟନ୍ତ ପାଣିରେ ଗାଧୋଉଛି । ଅର୍ଥାତ୍ ସେ ଜଣେ ମଣିଷକୁ ମଇଳାଠାରୁ ମଧ୍ୟ ନ୍ୟୂନ ମନେ କରୁଛି । ଜଣେ ମଣିଷକୁ ଛୁଇଁବାଦ୍ୱାରା ଜଣେ କିପିର ଅପବିତ୍ର ହୁଏ ! ପ୍ରକୃତରେ କାହାକୁ ଛୁଇବାଦ୍ୱାରା କିଛି ହୁଏ ନାହିଁ । କିନ୍ତୁ ଅନ୍ୟକୁ ଛୁଇଁବାଦ୍ୱାରା ମଣିଷ ଅପବିତ୍ର ହୋଇଯାଏ ବୋଲି ଆମକୁ ଧାରଣା ଦିଆଯାଇଛି । ଶ୍ରମବିହୀନ ଉପାର୍ଜନ କରି ବଞ୍ଚିବାକୁ ସେମାନେ ଏହିପରି ଗାଲୁ ଗପ ସୃଷ୍ଟି କରିଛନ୍ତି । ଏଥିରେ କୌଣସି ସତ୍ୟତା ନାହିଁ ।

କିଛି ବ୍ୟକ୍ତି ଅସ୍ପୃଶ୍ୟତା ଓ ଜାତିପ୍ରଥାକୁ ଯାବୁଡି ଧରି ରଖିଚନ୍ତି ଓ ସେସବୁର ବିଲୋପ ଚାହୁଁନାହାନ୍ତି । ସେମାନେ ଗୀତା, ମନୁ ସଂହିତା ଓ ଅନ୍ୟ ଶାସ୍ତ୍ରକୁ ନିଷ୍ଠାର ସହ ବିଶ୍ୱାସ କରୁଛନ୍ତି । ଯେତେଦିନ ଧରି ଏହାକୁ ବିଶ୍ୱାସ କଲେ ମଧ୍ୟ ଏଥିରୁ କୌଣସି ଉପକାର ମିଳିବ ନାହିଁ । ସେମାନଙ୍କର କାର୍ଯ୍ୟ ଏକ ଛିଦ୍ର ଯୁକ୍ତ କଳସୀରେ ପାଣି ନେବା ସଦୃଶ । ତେଣୁ ଆପଣ ଯଦି ଅସ୍ପୃଶ୍ୟତା, ଜାତିପ୍ରଥାରୁ ମୁକ୍ତ ହେବାକୁ ଚାହୁଁଛନ୍ତି, ତେବେ ଆପଣଙ୍କୁ ଆପଣଙ୍କ ଧର୍ମକୁ ପରିହାର କରିବାର ଅଛି । ଯଦି ବି ଆପଣ ଧର୍ମକୁ ପରିହାର କରିପାରିବେ ନାହିଁ ଅନ୍ତତଃ ଧାର୍ମିକ ବିଶ୍ୱାସରୁ ମୁକ୍ତ ହେବା ଦରକାର । ଧାର୍ମିକ ବିଶ୍ୱାସରୁ ମୁକ୍ତ ନହେଲେ ଆପଣ ଅସ୍ପୃଶ୍ୟତା ଓ ଜାତିଗତ ଭେଦଭାବକୁ ବିଲୋପ କରିପାରିବେ ନାହିଁ । କେତେକ ବ୍ୟକ୍ତି ଧର୍ମ ପରିବର୍ତ୍ତନ କରି ଅସ୍ପୃଶ୍ୟତାର ନିଗଡରୁ ମୁକ୍ତ ହୋଇଛନ୍ତି ।

ଯଦି ଏକ ସହରରେ ସଫାଇ କର୍ମଚାରୀ ନ ରହିବେ ସହରଟିର ରାସ୍ତା ଘାଟ ମଇଳାରେ ପୂରିଯିବ । ଯଦି ବାରିକ ରହିବେ ନାହିଁ ତେବେ ଲୋକମାନେ ବାଳ କାଟିପାରିବେ ନାହିଁ । ଯଦି ରାଜମିସ୍ତ୍ରୀ ରହିବେ ନାହିଁ, ଆପଣ ଘର ଖଣ୍ଡିଏ ନିର୍ମାଣ କରିପାରିବେ ନାହିଁ । ଯଦି ବୁଣାକାରମାନେ ରହିବେ ନାହିଁ, ତେବେ ଆପଣ ବସ୍ତ୍ର ପିନ୍ଧିବାକୁ ପାଇପାରିବେ ନାହିଁ । ଯଦି ଆପଣଙ୍କ କ୍ଷେତରେ ଶ୍ରମଜୀବୀମାନେ କାମ

କରିବେ ନାହିଁ ଆପଣ ଶସ୍ୟ ବା ପରିବା ଉତ୍ପାଦନ କରିବା ସମ୍ଭବ ହେବ ନାହିଁ । ତେବେ ଏହି ଶ୍ରେଣୀର ଲୋକମାନେ ହେଉଛନ୍ତି ଅସ୍ପୃଶ୍ୟ ଦଳିତ ।

ବ୍ରାହ୍ମଣମାନେ ଉପର ସୂଚିତ କୌଣସି କାର୍ଯ୍ୟ କରନ୍ତି ନାହିଁ । କିନ୍ତୁ ସେମାନେ ଉଚ୍ଚ ଜାତିର ବୋଲି ଗଣ୍ୟ ହୁଅନ୍ତି କିନ୍ତୁ ଏହି ଉଚ୍ଚ ଜାତିର ଲୋକମାନେ ସମାଜ ପାଇଁ କିଛି ଆବଶ୍ୟକ ମନେ ହୁଅନ୍ତି ନାହିଁ । ଦୈନନ୍ଦିନ ଜୀବନରେ ସେମାନଙ୍କର ଉପଯୋଗିତା ନାହିଁ । ଯଦି ଶ୍ରମଜୀବୀ ଲୋକମାନେ ରହିବେ ନାହିଁ ତେବେ ଉଚ୍ଚଜାତିର ବ୍ରାହ୍ମଣମାନେ ଏସବୁ କାର୍ଯ୍ୟ କରିବେ କି ? ଯେଉଁମାନେ ସେମାନଙ୍କ କାର୍ଯ୍ୟଦ୍ୱାରା ସମସ୍ତଙ୍କୁ ପରିଷ୍କାର ପରିଚ୍ଛନ୍ନତା ଭିତରେ ରହିବାରେ ସାହାଯ୍ୟ କରୁଛନ୍ତି, ସେମାନେ ନିମ୍ନ ହୋଇ ରହିଛନ୍ତି ।

ଘୁଷୁରି ଓ କୁକୁଡା କ'ଣ ଖାନ୍ତି ଆମେ ଦେଖୁଛେ । ଆମ ରାସ୍ତାରେ ସେମାନେ ମୁକ୍ତ ଭାବରେ ଯିବାରେ ଆମେ ବାଧା ଦେଉନାହେଁ । ପରନ୍ତୁ ମଣିଷଙ୍କୁ ଆମେ ରାସ୍ତାରେ ଯିବାକୁ ଅନୁମତି ଦେଉ ନାହେଁ, କାରଣ ସେମାନେ ଅସ୍ପୃଶ୍ୟ ।

ଲୋକମାନଙ୍କର ଆତ୍ମସମ୍ମାନକୁ ସରକାର ଅଗ୍ରାଧିକାର ଦେବା ଆବଶ୍ୟକ । ଲୋକମାନେ ଯେପରି ଆତ୍ମମର୍ଯ୍ୟାଦାର ସହ ବଞ୍ଚିବେ ଏହା ହିଁ ମହତ୍ତ୍ୱପୂର୍ଣ୍ଣ । କେବଳ ଖାଇବା ସବୁ କିଛି ନୁହେଁ ।

ସମସ୍ତ ପୋଲିସ ଚାକିରି ଦଳିତମାନଙ୍କୁ ଦେବା ଆବଶ୍ୟକ । ଯେଉଁ ଗ୍ରାମମାନଙ୍କରେ ଅସ୍ପୃଶ୍ୟତା ନାହିଁ, ସେମାନଙ୍କୁ ଗୌରବାନ୍ୱିତ କରାଯିବା ଦରକାର । ଦଳିତମାନଙ୍କ ପାଇଁ ସ୍ୱତନ୍ତ୍ର କଲୋନି କରିବା ଆବଶ୍ୟକ ନାହିଁ ।

ପ୍ରତ୍ୟେକ ନିଜର ବିଶ୍ୱାସ ଓ କାର୍ଯ୍ୟରେ ଦୃଢ଼ ରହିବା ଦରକାର । କେବଳ ଅସ୍ପୃଶ୍ୟତା ବିରୁଦ୍ଧରେ କହିଲେ କିଛି ଲାଭ ହେବ ନାହିଁ । ଏହାଦ୍ୱାରା ରାଷ୍ଟ୍ରର ବିକାଶ ହେବ ନାହିଁ । ଯେଉଁ ଲୋକମାନେ ଶ୍ରମଦେଇ ସାମାଜିକ ବିକାଶରେ ଆଗୁଧ ହେଉଛନ୍ତି ସେମାନଙ୍କୁ ପଶୁତୁଲ୍ୟ ବ୍ୟବହାର କରାଯାଉଛି । ସମସ୍ତଙ୍କୁ କିପରି ମନୁଷ୍ୟ ପରି ବ୍ୟବହାର କରାଯିବ ତାହା ଆମ ସମାଜରେ ଏକ ଗମ୍ଭୀର ପ୍ରଶ୍ନ । ପେରିୟାର ଦଳିତ ଲୋକମାନଙ୍କର ସମସ୍ୟାକୁ ଭଲଭାବେ ହୃଦବୋଧ କରିଥିଲେ ଓ ସେମାନଙ୍କ ସଂକଟକୁ ଦୂର କରିବା ପାଇଁ ଜୀବନସାରା ନିଷ୍ଠାପର ଉଦ୍ୟମ ଜାରି ରଖିଥିଲେ ।

# ୨୨. ଫଳିତ ଜ୍ୟୋତିଷ ଉପରେ ଗବେଷଣା

ପେରିୟାର ଫଳିତ ଜ୍ୟୋତିଷ ଉପରେ ଗବେଷଣାକରି ତାଙ୍କର ବିଚାରକୁ ବ୍ୟକ୍ତ କରିଥିଲେ । ସେ ଏ ବିଷୟରେ କହିଥିଲେ- "ଗବେଷଣା କରିବାକୁ ମୋର ଯୋଗ୍ୟତା ନାହିଁ । ତଥାପି ଫଳିତ ଜ୍ୟୋତିଷ ସଂପର୍କରେ ଅନ୍ୟମାନେ ସୁଚିନ୍ତିତ ମତ ନରଖିଥିବାରୁ ମୁଁ ଏ ବିଷୟରେ ଅନେକ କିଛି ଅନୁଶୀଳନ କରିଛି ଓ ମୋର ମତାମତ ପ୍ରକାଶ କରୁଛି" ।

ଲୋକମାନେ ଅହେତୁକ ଭାବରେ ଫଳିତ ଜ୍ୟୋତିଷରେ ବିଶ୍ୱାସ କରୁଛନ୍ତି ଓ ଏଥିରେ ବୃଥାରେ ସମୟ ଓ ଅର୍ଥବ୍ୟୟ କରୁଛନ୍ତି । ଜଣେ ବ୍ୟକ୍ତିର ଜନ୍ମର ସ୍ଥାନ ଓ ସମୟକୁ ନେଇ ତାହାର ଭବିଷ୍ୟତ ଜୀବନର ଘଟଣାବଳୀ ଉପରେ ପରିକଳ୍ପନା କରାଯାଉଛି । ତେବେ ଜନ୍ମର କେଉଁ ସମୟକୁ ଆଧାର ଭାବରେ ନିଆଯିବ ? ମାଆର ଗର୍ଭରେ ଯେତେବଳେ ଭ୍ରୂଣ ସୃଷ୍ଟି ହେଉଛି ସେହି ସମୟକୁ ନିଆଯିବ କି ? ନା ପିଲାଟି ଯେତେବେଳେ ଭୂମିଷ୍ଠ ହେଉଛି ସେହି ସମୟକୁ ଗ୍ରହଣ କରାଯିବ ? ଗୋଟିଏ ଶିଶୁ ଗର୍ଭ ସଂଚରର ୭ ରୁ ୧୦ ମାସ ଭିତରେ ଜନ୍ମ ହୋଇଥାଏ । ତେବେ ଜନ୍ମ ସମୟରେ ପ୍ରଥମେ ଯେତେବେଳେ ମୁଣ୍ଡଟି ପଦାକୁ ଆସେ ନା ଯେତେବେଳେ ପାଦ ଦୁଇଟି ବାହାରେ ନା ପୂରା ପିଲାଟି ପଦାକୁ ଆସିବାର ସମୟକୁ ଗ୍ରହଣ କରାଯାଏ ? ଏସବୁ ଅସ୍ପଷ୍ଟତା ଭିତରେ ଜନ୍ମର କେଉଁ ସମୟକୁ ନିର୍ଦ୍ଦିଷ୍ଟ ଭାବରେ ନିଆଯିବ ଏକ ବିବାଦୀୟ ପ୍ରଶ୍ନ ।

ଡାକ୍ତରଖାନାରେ ଡାକ୍ତର ଜନ୍ମ ପ୍ରକ୍ରିୟା ଉପରେ ପ୍ରାଧାନ୍ୟ ଦିଅନ୍ତି । ସେ ନିର୍ଦ୍ଦିଷ୍ଟ ସମୟରେ ପିଲାଟି ବାହାରିବାକୁ ଧ୍ୟାନ ଦିଅନ୍ତି ନାହିଁ । ପିଲାଟି କିପରି ନିରାପଦରେ ଜନ୍ମ ହେବ ଡାକ୍ତରଙ୍କର ଏହା ମୁଖ୍ୟ ସଂପୃକ୍ତି । ସୁତରାଂ ପିଲାଟି କେଉଁ ମୁହୂର୍ତ୍ତରେ ଜନ୍ମ ହେଉଛି ତାହା ଉପରେ ଡାକ୍ତର ପ୍ରାଧାନ୍ୟ ଦିଅନ୍ତି ନାହିଁ ।

ଫଳରେ ପିଲାଟି ପ୍ରକୃତରେ କେଉଁ ମୁହୂର୍ତ୍ତରେ ଜନ୍ମ ହେଲା ତାହା ସ୍ଥିର କରିବା ସମ୍ଭବ ହୁଏ ନାହିଁ । ସମୟଟିକୁ ସ୍ଥିର କରିବା ସମ୍ଭବ ହେଉନଥିଲେ ବି, ତା ଉପରେ ଗୋଟିଏ ଜାତକ ପ୍ରସ୍ତୁତ ହୋଇଥାଏ । ସମୟର ଅନିର୍ଦ୍ଦିଷ୍ଟତାକୁ ଆଧାର କରି ପ୍ରସ୍ତୁତ କରାଯାଉଥିବା ଜାତକର ବିଷୟକୁ ନେଇ ଜୀବନର ଘଟଣା ପ୍ରବାହକୁ ସ୍ଥିର କରିବା କିଛି ଅର୍ଥ ରଖେ ନାହିଁ । ଗୋଟିଏ ପିଲା ଯେଉଁ ସମୟରେ ଜନ୍ମ ହେଉଛି ସେହି ମୁହୂର୍ତ୍ତରେ ସହସ୍ରାଧିକ ପିଲା ସଂସାରରେ ଜନ୍ମ ହେଉଛନ୍ତି । ଏକ ଲଗ୍ନରେ ଜନ୍ମ ହୋଇଥିବା ସବୁ ପିଲାଙ୍କର କ'ଣ ଏକାପ୍ରକାର ଭାଗ୍ୟର ଫଳ ହେବ ? ଗୋଟିଏ ଲଗ୍ନର ଅବଧି ହୁଏତ ଦୁଇ ଘଣ୍ଟା ହୋଇଥାଏ । ଏହି ସମୟରେ ପୃଥିବୀରେ ଯେତେ ପିଲା ଜନ୍ମ ହେଲେ ସମସ୍ତଙ୍କର ସ୍ୱଭାବ, ଚରିତ୍ର କ'ଣ ସମାନ ରହିବ ? ସେମାନଙ୍କର ସ୍ୱଭାବ ଓ ଚରିତ୍ରକୁ ଗ୍ରହମାନେ ପ୍ରଭାବିତ କରିପାରନ୍ତି କି ? ପିଲାମାନଙ୍କର ସ୍ୱଭାବ ଓ ଚରିତ୍ର ସ୍ୱତଃ ବିକଶିତ ହୋଇଥାଏ ନା ଏହାକୁ ଈଶ୍ୱର ବା ଭାଗ୍ୟ ପ୍ରଭାବିତ କରେ ? ଯଦି ଗୋଟିଏ କାରଣ ଏହାକୁ ରୂପ ଦେଇଥାଏ, ତେବେ ଅନ୍ୟ କାରଣ ଗୁଡିକ ଅର୍ଥଶୂନ୍ୟ ହୋଇଯାଏ । ଯଦି ଜନ୍ମ ଗ୍ରହମାନଙ୍କର ଅବସ୍ଥିତି ଯୋଗୁଁ ହୋଇଥାଏ, ତେବେ ଭାଗ୍ୟ ଓ ଈଶ୍ୱର ଅନାବଶ୍ୟକ ହୋଇଥାଏ । ଯଦି ଭାଗ୍ୟ ଓ ଈଶ୍ୱର ସତ୍ୟ ହୋଇଥାନ୍ତେ ତେବେ ଆମ ଜୀବନର ଘଟଣାବଳୀକୁ ଯେ ଗ୍ରହମାନଙ୍କର ଗତି ଓ ସ୍ଥିତି ପ୍ରଭାବିତ କରୁଛି କହିବା ନିରର୍ଥକ ମନେହୁଏ । ଏ ଦୃଷ୍ଟିରୁ ଗ୍ରହମାନଙ୍କର ଅବସ୍ଥିତି ଅନୁଯାୟୀ ପ୍ରସ୍ତୁତ ହୋଇଥିବା ଜାତକ କିଛି ଅର୍ଥ ବହନ କରେ ନାହିଁ । ସୁତରାଂ ଈଶ୍ୱର, ଭାଗ୍ୟ ଓ ଜାତକର ଗଣନା ଉପରେ ଆସ୍ଥା ପରସ୍ପର ସହ ବିରୋଧାଭାସ ସୃଷ୍ଟି କରେ ।

ଯଦି ଜଣେ ସମର୍ଥ ଜ୍ୟୋତିଷୀ ଗଣନାକରି କହନ୍ତି ଯେ ଜଣଙ୍କର ଗ୍ରହମାନଙ୍କର ସ୍ଥିତି ଯୋଗୁ ସେ ହତ୍ୟାର ଶିକାର ହେବେ ଓ ହତ୍ୟାକାରୀ ଜେଲକୁ ଯିବେ, ତେବେ ଯେ ହତ୍ୟାକରୀ ତାଙ୍କ ଜାତକରୁ ଏହା ଜଣାପଡିବା ଆବଶ୍ୟକ ଯେ ସେ ହତ୍ୟା କରିବେ ଓ ଜେଲକୁ ଯିବେ । ଏହା ଯଦି ନ ହେଉଛି ତେବେ ଜାତକ ପ୍ରସ୍ତୁତ କରିବା ଓ ଗଣନା କରିବା ନିରର୍ଥକ ମନେହୁଏ ।

ଯଦି କିଛି ମନ୍ଦ ଘଟିବାକୁ ଯାଉଛି, ତାହାକୁ କିପରି ପୂଜାଦ୍ୱାରା ବନ୍ଦ କରାଯାଇ ପାରିବ ? ଯଦି କିଛି ଘଟିବା ପୂର୍ବ ନିର୍ଦ୍ଧାରିତ, ତେବେ ତାହାକୁ କିପରି ପରିବର୍ତ୍ତନ କରାଯିବ ? ପୂଜା ବା କର୍ମକାଣ୍ଡ ଦ୍ୱାରା ଏକ ଘଟଣାକୁ ପରିବର୍ତ୍ତନ କରାଯିବାର କଳ୍ପନା ସଂପୂର୍ଣ୍ଣ ଭାବେ ଠକାମୀ ଓ ଏହା ପଶ୍ଚାତରେ ଅର୍ଥ ଲାଭ କରିବାର ମନୋଭାବ ଥିବା ଜଣାଯାଏ ।

ଯଦି ଜାତକର ବିଷୟ ସତ୍ୟ ଅର୍ଥାତ୍ ଯାହା ଘଟିବା ପାଇଁ ପୂର୍ବ ନିର୍ଦ୍ଧାରିତ ତେବେ ଏଥିରେ ଜଣଙ୍କୁ କିପିର ଦାୟୀ କରାଯିବ ? ଜଣଙ୍କର ଇଚ୍ଛାରେ ତ କିଛି ଘଟୁନାହିଁ, ଯାହା ନିର୍ଦ୍ଧାରିତ ହୋଇରହିଛି ତାହା ହିଁ ଘଟୁଛି । ତେଣୁ ଜଣଙ୍କର କାର୍ଯ୍ୟ ଗ୍ରହମାନଙ୍କ ଅବସ୍ଥିତିଜନିତ କାରଣରୁ ସୃଷ୍ଟି ହେଉଛି । ସେହି ସ୍ଥିତିରେ ଜଣେ ଅପରାଧୀଙ୍କୁ କାହିଁକି ଦଣ୍ଡ ଦିଆଯିବ !

ଯଦି ଆମ ଜୀବନର ଘଟଣା ପ୍ରବାହ ଗ୍ରହମାନଙ୍କର ସ୍ଥିତି ଯୋଗୁ ସମ୍ଭବ ହେଉଛି, ତେବେ ଏହା ମଧ୍ୟ ଅନ୍ୟ ପ୍ରାଣୀଙ୍କ ପ୍ରତି ପ୍ରଯୁଜ୍ୟ ହେଉଥିବ । ରାଜ୍ୟାଭିଷେକ ଉତ୍ସବ ସମୟରେ ଗୋଟିଏ ହାତୀ ଓ ଘୋଡାକୁ ସଜାଇ ନିଆଯାଉଛି । ଏକ ସର୍କସ ଖେଳରେ ଅନ୍ୟ ଏକ ହାତୀ ଓ ଘୋଡାକୁ ସର୍କସ ମାଷ୍ଟର ବେତ୍ରାଘାତ କରୁଛି । ଏହି ପାର୍ଥକ୍ୟ କ'ଣ ସେମାନଙ୍କର ଗ୍ରହର ପ୍ରଭାବ ଯୋଗୁ ହେଉଛି !

ଏକ ବଡ ବିରାଟ ପଥର ଖଣ୍ଡରୁ ଏକ ଅଂଶ ନେଇ ତାକୁ ପାହାଚ ଭାବରେ ବ୍ୟବହାର କରାଯାଉଛି । ସେହି ପାହାଚ ଉପରେ ସମସ୍ତେ ପାଦଦେଇ ଚାଲୁଛନ୍ତି । ସେହି ପଥର ଖଣ୍ଡରୁ ଅନ୍ୟ ଏକ ଅଂଶନେଇ ତାକୁ କରଣୀ ସାହାଯ୍ୟରେ ଏକ ମନ୍ଦିରର ମୂର୍ତ୍ତି ନିର୍ମାଣ କରାଯାଉଛି । ସେହି ମୂର୍ତ୍ତିକୁ ମନ୍ଦିରରେ ଅନେକ ଲୋକ ପୂଜା କରୁଛନ୍ତି । ଗୋଟିଏ ପଥର ଖଣ୍ଡରୁ ଦୁଇ ଖଣ୍ଡ ପଥରକୁ ଦୁଇଟି ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ବ୍ୟବହାର କରାଯିବା ଘଟଣାରେ ଗ୍ରହମାନଙ୍କର ସମାନ ପ୍ରଭାବ ଭାବନାଟି ଅର୍ଥଶୂନ୍ୟ ମନେହେଉ ନାହିଁ କି ?

ଏକ ସମୟରେ ଗ୍ରହମାନଙ୍କର ସ୍ଥିତିରୁ କିଛି ହୁଏ କି ? ଏକ କାରଖାନାରେ ନିର୍ମିତ ହୋଇଥିବା ଘଣ୍ଟାରୁ ରାଷ୍ଟ୍ରପତି ଗୋଟିଏ କିଣିଲେ ଓ ଜଣେ ଶ୍ରମିକ ଆଉ

ଗୋଟିଏ କିଣିଲେ । ଯେଉଁ ଘଣ୍ଟାଟିକୁ ରାଷ୍ଟ୍ରପତି କ୍ରୟ କଲେ ତାର ଭାଗ୍ୟ କ'ଣ ଅନ୍ୟଠାରୁ ଭଲ ?

ଏହିପରି ଅସଂଖ୍ୟ ପ୍ରଶ୍ନ ସାଧାରଣ ଅନୁଭୂତିରୁ ପେରିୟାର ଲୋକମାନଙ୍କ ପାଖରେ ଉଠାଇଥିଲେ । ଏତଦ୍‌ବ୍ୟତୀତ ଅନେକ ବୈଜ୍ଞାନିକ କାରଣରୁ ଫଳିତ ଜ୍ୟୋତିଷ ମଧ୍ୟ ନିରର୍ଥକ । ଜ୍ୟୋତିଷମାନଙ୍କ ମତରେ ନ'ଟି ଗ୍ରହ ରହିଛନ୍ତି ଯାହା ମନୁଷ୍ୟର ଜୀବନକୁ ନିୟନ୍ତ୍ରଣ କରୁଛନ୍ତି । ଜ୍ୟୋତିଷୀମାନଙ୍କ ମତରେ ସୂର୍ଯ୍ୟ ଏକ ଗ୍ରହ କିନ୍ତୁ ମହାକାଶ ବିଜ୍ଞାନୀଙ୍କ ମତରେ ସୂର୍ଯ୍ୟ ଗ୍ରହ ନୁହେଁ, ଏକ ନକ୍ଷତ୍ର । ନକ୍ଷତ୍ରମାନେ ଆଲୋକ ଦିଅନ୍ତି , ସୂର୍ଯ୍ୟରୁ ଆଲୋକ ବିଚ୍ଛୁରିତ ହେଉଥିବାରୁ ଏହା ଏକ ନକ୍ଷତ୍ର, ଗ୍ରହ ନୁହେଁ । ଜ୍ୟୋତିଷୀମାନଙ୍କ ମତରେ ରାହୁ, କେତୁ ହେଉଛନ୍ତି ଦୁଇଟି ଗ୍ରହ । ଜ୍ୟୋତର୍ବିଜ୍ଞାନୀଙ୍କ ମତରେ ରାହୁ ଓ କେତୁର ଅବସ୍ଥିତି ହିଁ ନାହିଁ, ସେଦୃଷ୍ଟିରୁ ସେମାନଙ୍କୁ ଛାୟା ଗ୍ରହ କୁହାଯାଏ । ଜ୍ୟୋତିଷୀମାନଙ୍କ ମତରେ ପୃଥିବୀ ଏକ ଗ୍ରହ ନୁହେଁ । ତେଣୁ ସେମାନେ ଗ୍ରହ ମଧ୍ୟରେ ପୃଥବୀକୁ ସ୍ଥାନ ଦେଇନାହାନ୍ତି, ଜ୍ୟୋତିର୍ବିଜ୍ଞାନୀଙ୍କ ମତରେ ପୃଥିବୀ ଏକ ଗ୍ରହ ।

ଏହି ସବୁ କାରଣରୁ ଫଳିତ ଜ୍ୟୋତିଷ ଗ୍ରହଣ ଯୋଗ୍ୟ ନୁହେଁ । ମନୁଷ୍ୟର ଭବିଷ୍ୟତ ସ୍ଥିର କରିବାରେ ଏହାର ଭୂମିକା ନାହିଁ ।

# ୭୩. ତିରୁକ୍କୁରାଳକୁ ପ୍ରଶଂସା

ସମସ୍ତ ଦ୍ରାବିଡ ବ୍ୟକ୍ତିମାନଙ୍କ ପାଇଁ ତିରୁକ୍କୁରାଳ ଏକ ବହୁମୂଲ୍ୟ ବିଷୟ । ଆମ ସଂସ୍କୃତି, ସଭ୍ୟତା ଓ ଜୀବନଧାରା ପାଇଁ ଆମେ ସେଥିରୁ ଅନେକ ପ୍ରେରଣା ପାଇପାରିବା । ଏହା ହେଉଛି ଏପରି ଏକ ପୁସ୍ତକ ଯାହା ଶିକ୍ଷିତ ଅଶିକ୍ଷିତ ସମସ୍ତେ ବୁଝିପାରିବେ । ଜଣେ ଦିବ୍ୟ ଗୁଣ ସଂପନ୍ନ ବ୍ୟକ୍ତି ଏହାକୁ ରଚନା କରିଥିବାରୁ ଆମେ ଏହାକୁ ପ୍ରଶଂସା କରୁନାହେଁ । ବରଂ ଏଥିରେ ଅନେକ ମୂଲ୍ୟବାନ ବିଷୟର ବର୍ଣ୍ଣନା ଥିବାରୁ ଆମେ ଏହାର ପ୍ରଶଂସା କରୁଛେ । ଯଦି ଲୋକମାନେ ତିରୁକ୍କୁରାଳକୁ ନିୟମିତ ଅଧ୍ୟୟନ କରିବେ, ଏହା ସେମାନଙ୍କୁ ନୂତନ ଉପଲବ୍ଧି ଦେବ । କେହି ପ୍ରଶ୍ନ କରିପାରନ୍ତି ତିରୁବାଲୁବରଙ୍କୁ କାହିଁକି ଆମେ ଜଣେ ଈଶ୍ୱରୀୟ କବି ଭାବେ ନେବା ନାହିଁ ? ଈଶ୍ୱରୀୟ ପ୍ରତିଭା ନେଇ ମୋର ସୁନିର୍ଦ୍ଦିଷ୍ଟ ମତ ନାହିଁ, ତେବେ ତିରୁବାଲୁବରଙ୍କର ଏକ ଗବେଷଣାଧର୍ମୀ ଦୃଷ୍ଟିଭଙ୍ଗୀ ରହିଥିଲା । ତାଙ୍କ କବିତାରୁ ତାଙ୍କ ଅନୁଭୂତିର ଗଭୀରତା ଜଣାପଡେ ।

ତିରୁକ୍କୁରାଳ ପୁସ୍ତକର ପ୍ରକୃତ ଲେଖକ କିଏ ତାଙ୍କ ମତରେ ପ୍ରାୟ ଅଜ୍ଞାତ । ଆର୍ଯ୍ୟମାନେ ଏହି ସୃଷ୍ଟିର ଗୌରବ ନିଜେ ନେବାକୁ ଚାହୁଁଥିଲେ । ଫଳରେ ସେମାନେ ତିରୁବାଲୁବରଙ୍କର ନାମକୁ ବଢାଇବାକୁ ଚାହୁଁଥିଲେ । ଗୁଡିଏ ଅଦରକାରୀ ପୁସ୍ତକକୁ ଅଯଥା ପ୍ରାଧାନ୍ୟ ଦିଆଯାଏ । ସେମାନେ ତିରୁକ୍କୁରାଳକୁ ସାମାନ୍ୟ ମୂଲ୍ୟ ଦିଅନ୍ତି ନାହିଁ । ସେମାନେ ବରଂ ଗୀତାକୁ ସର୍ବଶ୍ରେଷ୍ଠ ପୁସ୍ତକ ବୋଲି ପ୍ରଚାର କରନ୍ତି । ଲୋକମାନେ ପ୍ରକୃତରେ ଗୀତାରୁ କ'ଣ ଶିକ୍ଷା ପାନ୍ତି ? ଗୀତାରେ କ'ଣ ମହନୀୟ ବିଷୟ ଶିକ୍ଷା କରିବାକୁ ରହିଛି ? ଏହି ଦୃଷ୍ଟିରୁ ପେରିୟାର ତିରୁବାଲୁବରଙ୍କ କୃତି ତିରୁକୁରାଳକୁ ବହୁ ପ୍ରଶଂସା କରିଛନ୍ତି । ଭ୍ରମାତ୍ମକ ପ୍ରଚାରକୁ ସେ ସମାଲୋଚନା କରିଛନ୍ତି । ଯେଉଁମାନେ ବିଚାରହୀନ ଭାବରେ କାହାକୁ ପ୍ରଶଂସା କରନ୍ତି, ପେରିୟାର ତାହାକୁ କଠୋର ସମାଲୋଚନା କରିଥାନ୍ତି ।

ଗୀତା ନିତିଦିନର ଜୀବନଧାରାରେ ସେତେ ଉପଯୋଗୀ ନୁହେଁ । ଏହା ଆର୍ଯ୍ୟ ସଂସ୍କୃତିକୁ ପ୍ରାଧାନ୍ୟ ଦେଇଥିବାରୁ କିଛି ସ୍ୱାର୍ଥପର ବ୍ୟକ୍ତି ଏହାକୁ ଏତେ ପ୍ରାଧାନ୍ୟ ଦେଇଥାନ୍ତି । ତିରୁକୁରାଳ ଏକ ଦ୍ରାବିଡୀୟ କୃତି ହୋଇଥିବାରୁ ଏହା

ଯେତିକି ଗୁରୁତ୍ୱ ନେବା କଥା ସେତେ ପ୍ରାଧାନ୍ୟ ପାଇ ନାହିଁ । ବରଂ ତିରୁକୁରାଳକୁ ଲୋକମାନଙ୍କଠାରୁ ଲୁଚେଇ ରଖାଯାଇଥିଲା । ପେରିୟାର ଏସବୁକୁ ଲୋକଲୋଚନକୁ ଆଣିଛନ୍ତି ।

ଜଣେ ତିରୁକୁରାଳକୁ ସଂପୂର୍ଣ୍ଣ ପଢ଼ିଲେ ଏହାର ମହତ୍ତ୍ୱ ବେଶ୍ ହୃଦୟଙ୍ଗମ କରିବେ । ମନୁଧର୍ମକୁ ପ୍ରତ୍ୟାଖ୍ୟାନ କରିବାକୁ ତିରୁକୁରାଳ ରଚିତ ହୋଇଥିଲା । ଲୋକମାନଙ୍କର ଉତ୍ତମ ଜୀବନକୁ ନଷ୍ଟ କରିଦେବାକୁ ଆର୍ଯ୍ୟମାନେ ମନୁଧର୍ମ ସୃଷ୍ଟି କରିଥିଲେ । ମନୁବାଦକୁ ନଷ୍ଟ ପ୍ରତିହତ କରିବାକୁ ତିରୁକୁରାଳ ଲେଖା ଯାଇଥିଲା ବୋଲି ପେରିୟାର ମତ ଦେଇଛନ୍ତି ।

ଆର୍ଯ୍ୟମାନେ ଯଜ୍ଞରେ ପଶୁବଳି ଦେଉଥିଲେ । ତିରୁକୁରାଳ ଏହାକୁ ନିନ୍ଦା କରିଛି । ତିରୁବାଲୁବରଙ୍କ ମତରେ ଉଚ୍ଚଜାତି ନୀଚ ଜାତି କିଛି ନାହିଁ । ସବୁ ମନୁଷ୍ୟ ସମାନ । ତିରୁବାଲୁବରଙ୍କ ମତରେ ଜନ୍ମ ଜନିତ କାରଣରୁ କେହି ବଡ ବା କେହି ସାନ ନୁହେଁ । ଯେକୌଣସି କାର୍ଯ୍ୟ କରିବା ପାଇଁ ତିରୁକୁରାଳରୁ ପ୍ରେରଣା ମିଳିଥାଏ । ସାଧାରଣ ଜୀବନକୁ ଉନ୍ନତ କରିବା ପାଇଁ ଏହା ଅଭିପ୍ରେତ । ଏହା କୌଣସି ଧର୍ମର ଗ୍ରନ୍ଥ ନୁହେଁ । ତିରୁକୁରାଳ ଦେଶର ସମସ୍ତ ବ୍ୟକ୍ତିଙ୍କୁ ଜ୍ଞାନର ମାର୍ଗ ଦେଖାଏ । ଲୋକଙ୍କ ମଧ୍ୟରେ ଶୃଂଖଳାବୋଧ ସୃଷ୍ଟି କରିବାରେ ଏହା ଅନନ୍ୟ ମନେହୁଏ । ରାମାୟଣ, ଭଗବଦଗୀତା, ଭାଗବତ ତୁଳନାରେ ତିରୁକୁରାଳ ଅଧିକ ମହତ୍ତ୍ୱ ରଖେ । ତିରୁବାଲୁବରଙ୍କ ମତରେ ଈଶ୍ୱର ତାଙ୍କର କର୍ତ୍ତବ୍ୟ କରିବା ଦରକାର ନହେଲେ ଈଶ୍ୱରଙ୍କର କିଛି ଆବଶ୍ୟକତା ହିଁ ନାହିଁ । ଲୋକମାନଙ୍କୁ ନିଯୁକ୍ତି ଦେବା ପାଇଁ ହେଉଥିବା ସାକ୍ଷାତକାର ପରିପ୍ରେକ୍ଷୀରେ ପାର୍ଥୀମାନଙ୍କୁ ତିରୁକୁରାଳରୁ ପ୍ରଶ୍ନ ପଚରାଯିବା ଆବଶ୍ୟକ । ଅନ୍ୟ ଶାସ୍ତ୍ରମାନଙ୍କର କର୍ମ କ୍ଷେତ୍ରରେ କୌଣସି ଗୁରୁତ୍ୱ ନଥିବା ସମୟରେ ତିରୁକୁରାଳ ଜୀବନ ପାଇଁ ଅନେକ ଅର୍ଥ ରଖେ । ବିଭିନ୍ନ ଲେଖକ ତିରୁକୁରାଳ ବିଷୟରେ ନିଜର ବିଶ୍ୱାସ ଓ ଭାବନାକୁ ନେଇ ସମୀକ୍ଷା ଲେଖିଛନ୍ତି । ତାମିଲ ପଣ୍ଡିତମାନେ ତାହାକୁ ସମାଲୋଚନା କରିବା ଆବଶ୍ୟକ ।

ତିରୁକୁରାଳ ପୁସ୍ତକଟିକୁ ପେରିୟାର ଖୁବ୍ ଅଳ୍ପ ଦାମରେ ମୁଦ୍ରଣ କରିଥିଲେ, ଫଳରେ ଗରିବ ଲୋକଟିଏ ମଧ୍ୟ ଏହା କିଣିପାରିବ । ଯିଏ ଏହି ପୁସ୍ତକଟି ପଢ଼ିବ, ସେ ସେଥିରୁ ଅନେକ ନୂଆ ପ୍ରେରଣା ଲାଭକରିବ ।

# ୨୪. ତାମିଲ ଭାଷାର ସଂସ୍କାର

ପେରିୟାର ଯାହା ଉଚିତ ମନେକରିଛନ୍ତି ତାହାକୁ କହିବାରେ କେବେ କୁଣ୍ଠାବୋଧ କରିନାହାନ୍ତି । ତାମିଲ ପଣ୍ଡିତମାନେ ତାମିଲ ଭାଷାରେ ସଂସ୍କାର ଆଣିନଥିବା ଯୋଗୁ ସେ କ୍ଷୋଭ ପ୍ରକାଶ କରିଛନ୍ତି ।

ସେ ମତ ଦେଇଛନ୍ତି ୨୬ଟି ଅକ୍ଷରକୁ ନେଇ ଇଂରାଜୀ ଭାଷା ଏକ ଆନ୍ତର୍ଜାତିକ ଭାଷା ହେବା ସହ ସମସ୍ତ ଜ୍ଞାନ ବିଜ୍ଞାନର ମାଧ୍ୟମ ହୋଇପାରୁଛି । ତାମିଲ ଭାଷାରେ ୨୪୬ଟି ଅକ୍ଷର ରହିଛି । ଏତେ ଅକ୍ଷର ରହିବାର କ'ଣ ଆବଶ୍ୟକତା ରହିଛି ! ଏଥିପାଇଁ ଲେଖାମାନଙ୍କୁ କଂପୋଜ କରିବାରେ ବହୁ ସମୟ ନଷ୍ଟ ହେଉଛି । ସେ ଏଥିରେ ସଂସ୍କାର ଆଣି ଅକ୍ଷର ସଂଖ୍ୟା ୫୪କୁ କମାଇଲେ । ଭାଷାର ଆଭିମୁଖ୍ୟ ହେଉଛି ଭାବର ଆଦାନ ପ୍ରଦାନ । ଭାଷାକୁ ବିଘ୍ନରହୀନ ଭାବେ ଯାବୁଡ଼ି ଧରିବାର କିଛି ଅର୍ଥ ନାହିଁ । ଏହା କହିବା ସତ୍ତ୍ୱେ ତାମିଲ ଭାଷାର ମହତ୍ତ୍ୱକୁ ସେ ଅବମୂଲ୍ୟାୟନ କରିନାହାନ୍ତି । ତାମିଲ କେବଳ ତାମିଲ ଲୋକଙ୍କର ମାତୃଭାଷା ନୁହେଁ, ଏହି ଭାଷାର ଅନେକ ସ୍ୱତନ୍ତ୍ରତା ରହିଛି । ଏହା ଭାରତର ଏକ ପ୍ରାଚୀନତମ ଭାଷା । ଲୋକମାନେ ଯେତେବେଳେ ଆଦିମ ସ୍ଥିତିରେ ରହିଥିଲେ, ସେ ସମୟରୁ ତାମିଲ ଭାଷାର ଉତ୍ପତ୍ତି ହୋଇଛି । ଏହି କାରଣରୁ ଭାଷାର ବୈଜ୍ଞାନିକ ବିକାଶ ହୋଇ ନାହିଁ । ଏହି ଭାଷା ଏକ ପ୍ରାଚୀନ ଭାଷା ହୋଇଥିବାରୁ ଏହା ଆଦିମ ସ୍ତରରେ ରହିଛି । କିନ୍ତୁ ଏକ ଭାଷାର ନମନୀୟତା ରହିବା ଆବଶ୍ୟକ, ଯାହା ଅନେକାଂଶରେ ଇଂରାଜୀ ଭାଷାର ରହିଛି । ଫଳରେ ଜ୍ଞାନ ବିଜ୍ଞାନର ବିକାଶକୁ ଇଂରାଜୀ ତାହା ମାଧ୍ୟମରେ ପ୍ରକାଶ କରିପାରୁଛି ।

ଭକ୍ତି ଭାବର ପ୍ରସାର ପାଇଁ ତାମିଲ ଭାଷା ବହୁତ ସାହାଯ୍ୟକାରୀ, ତା ସହିତ ଏହି ଭାଷାକୁ ଭଲଭାବେ କୁହାଯାଇପାରେ । କିନ୍ତୁ ଜ୍ଞାନର ବିକାଶ ପାଇଁ ଏହା ଏତେ ଉପଯୋଗୀ ନୁହେଁ । ଫଳରେ ନୂଆ ନୂଆ ବିଷୟ ଭାଷାରେ ସହଜରେ ଗ୍ରହଣ କରାଯାଇ ପାରୁ ନାହିଁ । ତାମିଲ ଭାଷାକୁ ବିଜ୍ଞାନ ସମ୍ମତ ଧାରାରେ ବିକଶିତ

କରିବାକୁ ପେରିୟାର ପ୍ରାଧାନ୍ୟ ଦେଉଥିଲେ, ତେଣୁ ସେ ଏହି ଭାଷାର ସମାଲୋଚନା ମଧ୍ଯ କରୁଥିଲେ । କିନ୍ତୁ ଭାଷାକୁ ନ୍ୟୂନ କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା । ଏକ ଭାଷାକୁ କେବଳ ଜୀବନ ଧାରଣ ପାଇଁ ବିନିଯୋଗ କରିବା ଯଥେଷ୍ଟ ନୁହେଁ, ଏହା ଜ୍ଞାନର ବିକାଶ ପାଇଁ ମାଧ୍ୟମ ହେବା ଆବଶ୍ୟକ ।

ପ୍ରାୟ ତିନି ହଜାର ବର୍ଷ ତଳେ ତାମିଲ ଭାଷାର ଉତ୍ପତ୍ତି ହୋଇଥିଲା । ତାମିଲ ସମୁଦାୟ ପ୍ରତି ତାମିଲ ପଣ୍ଡିତମାନଙ୍କର କ'ଣ ଅବଦାନ ରହିଛି ? ତାମିଲ ପଣ୍ଡିତମାନେ ଭାଷାର ବିକାଶରେ ବା ତାମିଲ ଜନଗଣଙ୍କର କିଛି ମଙ୍ଗଳ ବିଧାନ କରିଛନ୍ତି କି ? ଆର୍ଯ୍ୟମାନେ ସେମାନଙ୍କର ଶାସ୍ତ୍ରରେ ତାମିଲ ଭାଷାକୁ ନ୍ୟୂନ ସ୍ଥାନ ଦେଇଛନ୍ତି । ମନ୍ଦିର ମାନଙ୍କରେ ଆର୍ଯ୍ୟମାନେ ତାମିଲ ଭାଷାକୁ ସ୍ଥାନ ଦେଇନାହାନ୍ତି ଓ ତାମିଲମାନଙ୍କୁ ଅସ୍ପୃଶ୍ୟକରି ରଖିଛନ୍ତି ।

ଯେତେବେଳେ ପେରିୟାର ତାମିଲ ଲିପିରେ କିଛି ସଂସ୍କାର ଆଣିବାକୁ ଉଦ୍ୟମ କଲେ, କେତେକ ଏହାକୁ ବିରୋଧ କଲେ । ସେମାନେ ପ୍ରଶ୍ନ ଉଠାଇଲେ ଯେ ଭାଷା ବା ଲିପିରେ ସଂସ୍କାର ଆଣିବାକୁ ସେ କିଏ, ବା ସିଏ କେତେ ଯୋଗ୍ୟ ? ସେହି ପରିପ୍ରେକ୍ଷୀରେ ପେରିୟାର ଉତ୍ତର ଦେଇଥିଲେ – "ତାମିଲ ଲିପିରେ ସଂସ୍କାର ଆଣିବା ଏକ ବଡ ପ୍ରଶ୍ନ । ମୁଁ ସ୍ୱୀକାର କରୁଛି ଯେ ମୁଁ ଏ ପାଇଁ ଯୋଗ୍ୟ ନୁହେଁ । ତେବେ ଯେତେବେଳେ ଏହି କାର୍ଯ୍ୟକୁ କେହି କରିବାକୁ ଆଗେଇ ଆସିନାହାନ୍ତି, ସେତେବେଳେ ମୋ କାର୍ଯ୍ୟରେ ଆପଣ କାହିଁକି ଦୋଷ ଦେଖୁଛନ୍ତି ? ମୁଁ ବରଂ ସମସ୍ୟାଟିର କିଛି ସମାଧାନ ପାଇଁ ଉଦ୍ୟମ କରୁଛି । ତାମିଲ ଭାଷା ବିଶ୍ୱରେ ପ୍ରତିଷ୍ଠା ଲାଭକରୁ ମୁଁ ଏହା ଚାହେଁ । ଏହାଦ୍ୱାରା ତାମିଲ ମାନଙ୍କର ଶିର ଉନ୍ନତ ହେବ ଓ ସେମାନଙ୍କର ସ୍ୱାଭିମାନ ବୃଦ୍ଧିପାଇବ । ତାମିଲ ଭାଷା ବି ବିଜ୍ଞାନସମ୍ମତ ଭାବରେ ବିକଶିତ ହେବ । "

ତାମିଲ ଭାଷାର ଉତ୍ପତ୍ତି ପରଠାରୁ ଏଥିରେ ପରିବର୍ତ୍ତନ ହୋଇଚାଲିଛି । ପ୍ରସ୍ତର ଯୁଗରେ ଯେଉଁ ତାମିଲ ଭାଷା ଥିଲା ଆମେ ତାକୁ ପଢ଼ି ପାରିବା ନାହିଁ ।

ତାମଲି ଭାଷାରେ ସମୟକୁ ସମୟ ପରିବର୍ତ୍ତନ ହୋଇଛି । ରୁଷରେ ସେମାନେ ତାଙ୍କ ଭାଷାର ପ୍ରାଚୀନ ଲିପିମାନଙ୍କୁ ହଟାଇ ଦେଇଛନ୍ତି । ସେମାନେ ପ୍ରାଚୀନ ଲିପି ପରିବର୍ତ୍ତେ ନୂଆ ଲିପି ପ୍ରୟୋଗ କରିଛନ୍ତି । ଆମେରିକାରେ ଅନେକ ଇଂରାଜୀ ଶବ୍ଦମାନଙ୍କର ଉଚ୍ଚାରଣକୁ ସେମାନେ ବଦଳାଇଛନ୍ତି । ବ୍ରିଟିଶ ବନାନଠାରୁ ଆମେରିକୀୟ ବନାନ ପୃଥକ୍ ।

ତାମିଲ ଭାଷାରେ ରହିଥିବା ୧୪୬ଟି ଅକ୍ଷର ପରିବର୍ତ୍ତେ ୫୪ଟି ଅକ୍ଷରକୁ ଗ୍ରହଣ କରିବା ପାଇଁ ପେରିୟାର ଯେଉଁ ପ୍ରସ୍ତାବ ଦେଇଥିଲେ ତାହା ଏବେ ସ୍ୱୀକୃତ ହୋଇଛି । ପେରିୟାରଙ୍କୁ ଅନୁସରଣ କରି କେତେକ ତାମଲି ପଣ୍ଡିତ ତାମିଲ ଲିପିରେ ମଧ୍ୟ ଆଉ କିଛି ସଂସ୍କାର ଆଣିଲେ । ପେରିୟାରଙ୍କ ମତରେ ପରିବର୍ତ୍ତନ ସ୍ୱାଗତଯୋଗ୍ୟ, ଫଳରେ ବିକାଶ ସମ୍ଭବ । ଭାଷା ମଧ୍ୟ ଏ କ୍ଷେତ୍ରରେ ବ୍ୟତିକ୍ରମ ନୁହେଁ । ଏ କ୍ଷେତ୍ରରେ ଜଣେ ରୂଢ଼ିବାଦୀ ଦୃଷ୍ଟିଭଙ୍ଗୀ ପୋଷଣ କରିବା ଯଥାର୍ଥ ନୁହେଁ ।

ଏମ.ଜି. ରାମଚନ୍ଦ୍ରନ ଯେତେବେଳେ ତାମିଲନାଡୁର ମୁଖ୍ୟମନ୍ତ୍ରୀ ହେଲେ ସେ ଏକ ସରାକାରୀ ନିର୍ଦ୍ଦେଶନାମା ପ୍ରକାଶ କରି ତାମିଲ ଭାଷାର ଲିପିର ଏହି ସଂସ୍କାରକୁ ଗ୍ରହଣ କଲେ । ପ୍ରାଥମିକ ଅବସ୍ଥାରେ ଯଦିବା ଏ କ୍ଷେତ୍ରରେ କିଛି ବିରୋଧ ହେଉଥିଲା ପରେ ଏହାକୁ ସମସ୍ତେ ଗ୍ରହଣ କଲେ । ପେରିୟାରଙ୍କ ଉଦ୍ୟମ ଫଳରେ ତାମିଲ ଭାଷାର ଲିପି ସଂଖ୍ୟାକୁ କମ୍ କରାଯାଇ ପାରିଲା । ଜଣେ ଯେତେବେଳେ ନୂଆଭାବରେ ଚିନ୍ତା କରନ୍ତି, ସେତେବେଳେ ଦେଶର ଭାଷା ଓ କଳା କ୍ଷେତ୍ରରେ ପ୍ରଗତି ସମ୍ଭବ ହୋଇଥାଏ ।

## ତାମିଲ ଭାଷାକୁ ଅବଦାନ :

'ଭାଷା' କ'ଣ ପେରିୟାର ବ୍ୟାଖ୍ୟା କରିଛନ୍ତି । ଭାଷା ଭାବବିନିମୟର ମାଧ୍ୟମ । ଜଣେ ନିଜ ମନର ଭାବକୁ ଅନ୍ୟ ପାଖରେ ପ୍ରକାଶ କରିବାକୁ ଭାଷାକୁ ମାଧ୍ୟମ କରିଥାଏ । ଏହାକୁ ଶବ୍ଦଦ୍ୱାରା କରାଯାଏ । ଏହା ମନୁଷ୍ୟମାନଙ୍କ ପାଇଁ

ଏକାନ୍ତ ଆବଶ୍ୟକ । ପଶୁ ପକ୍ଷୀମାନେ ବି କିଛି ଶବ୍ଦଦ୍ୱାରା ନିଜ ନିଜ ଭିତରେ ଭାବ ବିନିମୟ କରିଥାନ୍ତି । ପେରିୟାର ତାମିଲ ଭାଷା ଓ ଲିପିରେ କେତେକ ସଂସ୍କାର ଆଣିବାକୁ ପ୍ରଯତ୍ନ କଲେ । ଫଳରେ ଏହାଦ୍ୱାରା ଭାଷା ଯେ ଅଗ୍ରଗତି କରିବ ଏହା ତାଙ୍କ ଭାବନା ଥିଲା । ଭାଷାକୁ ସରଳ କରିବା ତାଙ୍କର ଲକ୍ଷ୍ୟ ଥିଲା, ଫଳରେ ଲୋକମାନେ ଏହାକୁ ସହଜରେ ଶିକ୍ଷାକରି ପାରିବେ । ତାମିଲ ଭାଷା ଏକ ପ୍ରାଚୀନ ଭାଷା । ଦୀର୍ଘଦିନ ଧରି ଏଥିରେ କୌଣସି ସଂସ୍କାର ଆସିନଥିଲା । ଭାଷାରେ ପରିବର୍ତ୍ତନ ନହେଲେ ଏଥିରେ ଅଭାବ ରହିଯାଏ । ଏହା ଫଳରେ ଭାଷାର ବିକାଶ ବାଧାପ୍ରାପ୍ତ ହୁଏ । ପ୍ରାଚୀନ ବିଷୟରେ କିଛି ପରିବର୍ତ୍ତନ ସମୟର ଆବଶ୍ୟକତା ଅନୁଯାୟୀ ହେବା ଦରକାର । ପରିବର୍ତ୍ତନକୁ ଏକ ଅପରାଧ ଭାବେ ବା ତ୍ରୁଟି ଭାବେ ଗ୍ରହଣ କରିବା ଠିକ୍ ନୁହେଁ । ପ୍ରଗତି କରିବାକୁ ହେଲେ ଓ ସମୟ ସହିତ ତାଳ ଦେବାକୁ ହେଲେ କେତେକ ପରିବର୍ତ୍ତନ ଓ ସଂଶୋଧନ ଅବଶ୍ୟମ୍ଭାବୀ । ପୁରୁଣାକୁ ଧରି ବସିବା ଏକ ସକାରାତ୍ମକ ଓ ପ୍ରଗତିଶୀଳ ଭାବନା ନୁହେଁ । ଯାହା ପ୍ରାଚୀନ ତାହା ରହିବା ଉଚିତ କହିବାଦ୍ୱାରା କିଛି ଉପକାର ମିଳେ ନାହିଁ । ଏହାଦ୍ୱାରା ସମାଜରେ ଆମର ଭୂମିକା ନ୍ୟୂନ ହୋଇଥାଏ । ଭାଷା ଜାଣିଶୁଣି ଏକ ଅସ୍ତ୍ର । ଆବଶ୍ୟକତା ଅନୁଯାୟୀ ଅସ୍ତ୍ରକୁ ବଦଳାଇବାକୁ ହୋଇଥାଏ । ସେହିପରି ଭାଷା କ୍ଷେତ୍ରରେ ମଧ୍ୟ ଏହା ପ୍ରଯୁଜ୍ୟ । ତାମିଲ ଲିପିରେ ପରିବର୍ତ୍ତନଦ୍ୱାରା ଏହି ଭାଷାକୁ ସହଜରେ ଶିକ୍ଷା କରାଯିବା ସହ ଏହାକୁ ଟାଇପ କରିବା, କଂପୋଜ କରିବା ସହଜ ହୋଇପାରିଛି । ଭାଷାରେ ଉତ୍କର୍ଷ ସାଧନ ପାଇଁ ପରିବର୍ତ୍ତନ ଦରକାର । ଭାଷାର ଦ୍ରୁତ ଅଗ୍ରଗତି ପାଇଁ ଏହାକୁ ସହଜରେ ଶିକ୍ଷା କରାଯାଉଥିବା ଆବଶ୍ୟକ । ଭାଷାକୁ ସହଜରେ ଶିକ୍ଷା କରିବାକୁ ହେଲେ ଏହାର ଅକ୍ଷର ସଂଖ୍ୟା ଅଳ୍ପ ଓ ଏହା ସହଜ ହେବା ଯଥାର୍ଥ ।

ପେରିୟାର କହିଲେ ଯେ ତାମିଲ ଭାଷାରେ ୨୪୬ରୁ ଅଧିକ ଲିପି ରହିଛି ଓ ଲିପିମାନଙ୍କ ଆକାର ମଧ୍ୟ ଜଟିଳ । ସୁତରାଂ ଏହାକୁ ୫୪ଟି ଲିପିରେ ସେ ସୀମିତ ରଖିଲେ । ହୁଏତ କିଛି ଲୋକଙ୍କର ଭାଷା ସଂସ୍କାର ନେଇ ବିଭିନ୍ନ ଭାବନା

ରହିପାରେ, କିନ୍ତୁ ଏହାକୁ କାର୍ଯ୍ୟକାରୀ କରିବା ପାଇଁ କେହି ଉଦ୍ୟମ କରିନାହାନ୍ତି । ତେବେ ଭାଷା, ସାହିତ୍ୟ ଓ ଶିକ୍ଷା କ୍ଷେତ୍ରରେ ଜଣଙ୍କର ଗଭୀରତା ନଥିଲେ ଜଣେ ସଂସ୍କାର କ୍ଷେତ୍ରରେ କିପରି ପନ୍ଥା ଦେଖାଇବେ ? ତେବେ ଏ ସବୁ ଲକ୍ଷଣର ଅଧିକାରୀ ହୋଇ ମଧ୍ୟ କେହି ଏ କ୍ଷେତ୍ରରେ ଉଦ୍ୟମ କରିନାହାନ୍ତି । ସେ କ୍ଷେତ୍ରରେ ସେ ଏହି ଉଦ୍ୟମ କରିଛନ୍ତି ।

ପେରିୟାର ଯେଉଁ ଲିପି-ସଂସ୍କାର ଓ ପରିବର୍ତ୍ତନ ତାମିଲ ଭାଷାରେ ଆଣିବାକୁ ଉଦ୍ୟମ କଲେ ତାହାକୁ ସେ ତାଙ୍କର ପ୍ରକାଶନ 'ବିଦୁତଲାଇ', 'କୁଦି ଅରସୁ' ଓ 'ଉନ୍‌ମାଇ' ରେ ପ୍ରୟୋଗ କଲେ । ୧୯୩୫ରୁ ସେ ଏହି ପ୍ରୟୋଗ ଆରମ୍ଭ କଲେ । ୧୯.୧୦.୧୯୭୫ରେ ପେରିୟାର ଜନ୍ମ ଶତବାର୍ଷିକୀ ଅବସରରେ ତାମିଲନାଡୁର ମୁଖ୍ୟମନ୍ତ୍ରୀ ଏମ.ଜି.ରାମଚନ୍ଦ୍ରନ ଏକ ସରକାରୀ ନିର୍ଦ୍ଦେଶନାମା ବଳରେ ସେହି ପରିବର୍ତ୍ତନକୁ ଗ୍ରହଣ କଲେ । ଏମଜିଆର ଏହି କ୍ଷେତ୍ରରେ ଆଉ ଏକ ପଦକ୍ଷେପ ଦିଗରେ ପାଦ ବଢ଼ାଇଲେ ।

ତାମିଲ ଭାଷାକୁ ପେରିୟାର ଏକ ଆଦିମ ଭାଷା (barbaric language) କହିଥିବା କାରଣରୁ ସଂପ୍ରତି କେତେକ ତାଙ୍କୁ ସମାଲୋଚନା କରୁଛନ୍ତି । ତେବେ ଭାଷାରେ ସଂସ୍କାର ଆଣିବାକୁ ଯେଉଁ ପ୍ରୟାସ କରିଥିଲେ ସେ ବିଷୟରେ ଗୁରୁତ୍ୱ ଦିଆଯାଉ ନାହିଁ । ଏହି ଭାଷା ଯେ ତିନି ହଜାର ବର୍ଷ ପୁରୁଣା ଏହା କେବଳ କୁହାଯାଉଛି । ଯେହେତୁ ତାମିଲ ଏକ ପ୍ରାଚୀନ ଭାଷା, ତେଣୁ ଏହା ଆଦିମ । ସେହି ସମୟର ଲୋକମାନଙ୍କର ଜ୍ଞାନ ଓ ଚିନ୍ତାଧାରା କେବେ ଆଧୁନିକ ହୋଇପାରିବ ନାହିଁ । ଏହା ହିଁ ଥିଲା ତାଙ୍କ ବକ୍ତବ୍ୟର ତାତ୍ପର୍ଯ୍ୟ । ତାମିଲରେ ଷାଠିଏ ବର୍ଷର ଏକ କଳ୍ପନା ରହିଛି । ଯଦି ଏହି ବର୍ଷମାନଙ୍କର ନାମକୁ ଦେଖାଯାଏ ତେବେ ଗୋଟିଏ ହେଲେ ବି ତାମିଲ ଶବ୍ଦ ମନେହୁଏ ନାହିଁ । ଏହା ତାମିଲମାନଙ୍କ ପାଇଁ ଲଜ୍ଜାକର ନୁହେଁ କି ? ଗୋଟିଏ ଭାଷା ପୁରାଣ ଓ ଇତିହାସକୁ କେବଳ ନେଇ ବିକଶିତ ହୋଇପାରିବ ନାହିଁ । ପୃଥିବୀରେ ଯେଉଁ ବୈଜ୍ଞାନିକ ଅଗ୍ରଗତି ଓ ଅର୍ଥନୈତିକ ପରିବର୍ତ୍ତନ ହେଉଛି ତାହା ଜାଣିବାକୁ ହେଲେ ଆମକୁ ଇଂରାଜୀ ଭାଷାର ସହାୟତା

ନେବାକୁ ହେବ । ଦେଶ ଦୁନିଆରେ ଯେଉଁ ପରିବର୍ତ୍ତନମାନ ହେଉଛି ତାହା ଅବଗତ ହେବାକୁ ହେଲେ ତାମିଲ ପଣ୍ଡିତମାନେ ତାମିଲ ଭାଷାକୁ ଆଧୁନିକୀକରଣ କରିବା ଆବଶ୍ୟକ । ଏହା ହିଁ ଥିଲା ପେରିୟାରଙ୍କର ସଂପୃକ୍ତି ।

ଆମର ଯେ ଏକ ସୁଦୀର୍ଘ ଇତିହାସ ରହିଛି ଏହା ଜାଣିବା ପାଇଁ ଆମର କ'ଣ ସାଧନ ରହିଛି ? ଆମେ ଯେତେବେଳେ ବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ ଆମେ ତାମିଲମାନଙ୍କ ବିଷୟରେ ପଢ଼ିବାର ସୁଯୋଗ ପାଇନଥିଲେ । ତାମିଲମାନଙ୍କ ବିଷୟରେ କିଛି ପୁସ୍ତକ ନଥିଲା । ଆୟାର, ଆୟେଙ୍ଗର ବ୍ରାହ୍ମଣମାନଙ୍କ ବିଷୟରେ ଆମେ ପଢିଥିଲେ । ତାମିଲ ବା ଦ୍ରାବିଡମାନଙ୍କ ବିଷୟରେ ଆମେ ଶୁଣି ବି ନଥିଲେ । ଆମେ ଉଚ୍ଚ ଶ୍ରେଣୀକୁ ଆସିବାପରେ ଆମେ ତାମିଲ ନାଡୁର ଇତିହାସ ବି ପଢୁନଥିଲେ । ଆମେ ରାମାୟଣ, ମହାଭାରତ, ଅଶୋକ, ମୁସଲମାନ ଓ ଇଂରେଜ ଶାସକମାନଙ୍କ ବିଷୟରେ ଯାହା ପଢୁଥିଲେ । ତାମିଲ କିମ୍ବା ଦ୍ରାବିଡ ଶାସନ ବିଷୟରେ ପଢ଼ିବାର ସୁଯୋଗ ପାଇନଥିଲେ । ଆପଣ ଯାହା ବି କିଛି ପଢ଼ନ୍ତି ସେଥିରେ ଅନେକ ମିଥ୍ୟା ଓ ବିଭ୍ରାନ୍ତିକର ବିଷୟ ରହିବା ଦେଖାଯାଏ । ତେଣୁ ତାମିଲ ପିଲାମାନେ ତାମିଲମାନଙ୍କ ବିଷୟରେ ଜାଣିବାର ସୁଯୋଗ ନଥିଲା । ଆର୍ଯ୍ୟମାନେ ଭାରତରେ ପ୍ରବେଶ କରିବା ପୂର୍ବରୁ ତାମିଲମାନେ କେଉଁ ଧର୍ମ ପାଳନ କରୁଥିଲେ ସେ ବିଷୟରେ କିଛି ତଥ୍ୟ ନାହିଁ । ସେମାନେ କେଉଁ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ ବା ସେମାନଙ୍କର ଜୀବନ ଶୈଳୀ କିପ୍ରକାର ଥିଲା ? ସେ ସମୟରେ ତାମିଲମାନେ ଆଦିମମାନଙ୍କ ପରି ଜୀବନ ନିର୍ବାହ କରୁଥିଲେ କି ? ଆମେ ଆମ ପିଲାମାନଙ୍କୁ ଯଦି ଆମର ଅତୀତ ବିଷୟରେ ଜାଣିବା ପାଇଁ ସୁଯୋଗ ସୃଷ୍ଟି ନକରିବା, ସେମାନେ କିପରି ଅତୀତ ବିଷୟରେ ଜାଣିବାକୁ ସମର୍ଥ ହେବେ ? ଏହା ଚିନ୍ତା କରିବା ଆବଶ୍ୟକ ।

ପୁସ୍ତକ ମନୋନୟନ କମିଟିରେ ଯେଉଁ ତାମିଲମାନେ ରହୁଛନ୍ତି ସେମାନଙ୍କର ଯଦି ଆତ୍ମମର୍ଯ୍ୟାଦା ରହିଥାନ୍ତା, ନିଜର ଭାଷା, ଗୋଷ୍ଠୀ ଓ ଭୂମି ପ୍ରତି ଜାତୀୟତା ବୋଧ ରହିଥାନ୍ତା । ତେବେ ରାମାୟଣ ଓ ମହାଭାରତର କାହାଣୀମାନ ଆମ ଇତିହାସରେ ସ୍ଥାନ ପାଇନଥାନ୍ତା । ଆମେ ଯେତେବେଳେ ଏହି ବିଷୟ କହୁଛୁ , ତାମିଲ ପଣ୍ଡିତମାନେ

ରାଗ ବ୍ୟକ୍ତ କରୁଛନ୍ତି । ଯେଉଁ ବିଷୟ ପଢ଼ିଲେ ପିଲାମାନଙ୍କ ଭିତରେ ଅହେତୁକ ବିଶ୍ୱାସ ସୃଷ୍ଟିହେବ ଓ ସେମାନେ ନିଜର ଅସ୍ମିତାକୁ ନ୍ୟୂନ କରିବେ ଆମେ ସେହି ସବୁ ବିଷୟ ସେମାନଙ୍କୁ ଶିକ୍ଷା ଦେଉଛେ । ଏହି ବିଷୟରେ ତାମିଲ ପଣ୍ଡିତମାନେ ଚିନ୍ତା କରିବା ଆବଶ୍ୟକ । ସେମାନେ ଏହି ବିଷୟରେ ଆଲୋଚନା ଓ ବିଚାର ବିମର୍ଶ କରିବା ଦରକାର । ଯେଉଁମାନେ ସ୍କୁଲ ପରିଚାଳନା ସହ ସଂପୃକ୍ତ ସେମାନେ ତାମିଲ ଭାଷା, ସାହିତ୍ୟ, ତାମିଲମାନଙ୍କର ଉତ୍ତମ ଜୀବନ ଚର୍ଯ୍ୟା ଓ ଆତ୍ମସମ୍ମାନ ବିଷୟରେ ଏତେ ସଚେତନତା ପ୍ରକାଶ କରନ୍ତି ନାହିଁ ।

ଯେଉଁ ତାମିଲମାନେ ନିଜର ଆତ୍ମମର୍ଯ୍ୟାଦା ବିଷୟରେ ଚିନ୍ତା କରୁନାହାନ୍ତି ସେମାନଙ୍କୁ ଗଭୀର ନିଦ୍ରାରୁ ଉଠାଇବାକୁ ହେବ । ସେମାନଙ୍କୁ ସ୍ୱାଧୀନ ଭାବଧାରା ଦେବାକୁ ପଡିବ । ତାମିଲମାନେ ଶିକ୍ଷିତ, ପଣ୍ଡିତ, ମନ୍ତ୍ରୀ, ରାଜ୍ୟପାଳ, ପ୍ରଶାସନିକ ଅଧିକାରୀ ଇତ୍ୟାଦି ହେଲେ ମଧ୍ୟ ସେମାନେ ନିର୍ଜୀବ ହୋଇ ରହିଛନ୍ତି । ଅଣତାମିଲ ମାନଙ୍କଦ୍ୱାରା ସେମାନେ ଶୋଷିତ ହୋଇଆସିଛନ୍ତି । ଏହି ଶୋଷଣକୁ ସେମାନେ ପ୍ରତିହତ କରିବା ଉଚିତ ନୁହେଁ କି ? ଯେଉଁମାନେ ତାମିଲମାନଙ୍କ ପାଇଁ ଆନ୍ତରିକତା ଦେଖାଉଛନ୍ତି କେବଳ ଏହା କହିବାରେ କ'ଣ ଅର୍ଥ ରହିଛି ? ଆମର ପିଲାମାନଙ୍କ ପାଖରୁ କିପରି ଅପବିଶ୍ୱାସ ଦୂର ହେବ ତାହା ଭାବିବା ଉଚିତ । ପିଲାମାନଙ୍କ ଭିତରେ ଜ୍ଞାନ, ଆତ୍ମସମ୍ମାନବୋଧ, ସ୍ୱାଧୀନ ମନୋଭାବର ବିକାଶ ପାଇଁ ଆମର ଶିକ୍ଷା ବ୍ୟବସ୍ଥାରେ ପରିବର୍ତ୍ତନ ହେବା ଆବଶ୍ୟକ । ଏହି ସ୍ୱାଧୀନ ଦୃଷ୍ଟିଭଙ୍ଗୀର ବିକାଶ ନ ହେଲେ ସ୍ୱାଧୀନତାର କିଛି ମୂଲ୍ୟ ରହିବ କି ?

ତାମଲି ପଣ୍ଡିତ ଓ ଗବେଷକମାନଙ୍କର ସାହିତ୍ୟ, ବ୍ୟାକରଣ ଉପରେ ଜ୍ଞାନ ରହିଛି । ସେମାନଙ୍କର ବିଶ୍ୱ ଇତିହାସ, ଭୂଗୋଳ ବିଷୟରେ ଜ୍ଞାନ ଓ ବିଚାରଶୀଳ ସାମର୍ଥ୍ୟ ରହିଛି କି ? ଆମେ ଏହି ପ୍ରସଙ୍ଗ ଉଠାଇଲେ ସେମାନେ ବିରକ୍ତି ପ୍ରକାଶ କରୁଛନ୍ତି । ତେବେ ଏହି ପଣ୍ଡିତମାନେ ନିଜ ସଂପର୍କରେ ଚିନ୍ତାକରନ୍ତୁ । ପୁରାଣ, ସାହିତ୍ୟକୁ ବାଦ୍ ଦେଲେ ସେମାନଙ୍କର ଆଉ କେଉଁ ବିଷୟରେ ଜ୍ଞାନ ରହିଛି ! ଆମେ ଜଣଙ୍କୁ ପଣ୍ଡିତ ବା ବିଦ୍ୱାନ କହିବାର ଅର୍ଥ ହେଉଛି ସେ ଜଣେ ବିଜ୍ଞ

ବ୍ୟକ୍ତି । କିନ୍ତୁ ଆମର ପଣ୍ଡିତମାନେ ଲୋକମାନଙ୍କୁ ନିର୍ଦ୍ଦେଶିତ କଲାପରି ସାଧାରଣଜ୍ଞାନ ଓ ସାମର୍ଥ୍ୟର ଅଧିକାରୀ କି ? ପଣ୍ଡିତ ଓ ବିଦ୍ୱାନମାନେ ପିଲାମାନଙ୍କୁ ଯଥାର୍ଥ ମାର୍ଗରେ ପରିଚାଳିତ କଲାପରି ସାମର୍ଥ୍ୟ ରଖିଛନ୍ତି କି ? ଦୁନିଆରେ ଯେଉଁ ପରିବର୍ତ୍ତନମାନ ହେଉଛି ସେସବୁକୁ ବିଚାର କରି ଉଚିତ ପନ୍ଥାରେ ପିଲାମାନଙ୍କୁ ପରିଚାଳିତ କରିବା ଆବଶ୍ୟକ । କିନ୍ତୁ ପଣ୍ଡିତମାନେ ପରିବର୍ତ୍ତନ ବିରୋଧୀ । ଯାହା ତିନି ହଜାର ବର୍ଷ ତଳେ ଥିଲା ତାହାକୁ ଧରି ରଖିବା ପଣ୍ଡିତମାନେ ଚାହାନ୍ତି । ସେମାନେ ଲୋକମାନଙ୍କ ଭିତରେ ଅହେତୁକ ବିଶ୍ୱାସ ପ୍ରସାର କରିବାରେ କାର୍ଯ୍ୟରତ । ଏହି ପଣ୍ଡିତମାନଙ୍କୁ ନେଇ ଦେଶର ବିକାଶ କିପରି ସମ୍ଭବ ? ବରଂ ସେମାନେ ଦେଶ ଦୁନିଆର ବିଚାର ସହିତ ନିଜକୁ ଅଭ୍ୟସ୍ତ କରିବା ଆବଶ୍ୟକ । ଏହା ମୁଁ ସର୍ବଦା କହି ଆସୁଛି । ସୁଖର କଥା କେତେକ ଯୁବ ବନ୍ଧୁ ଆମର ପରାମର୍ଶକୁ ଗ୍ରହଣ କରୁଛନ୍ତି ଓ ସାମାଜିକ ଚେତନାରେ ପରିବର୍ତ୍ତନ ପାଇଁ ସମର୍ଥନ ଦେଉଛନ୍ତି । ସେମାନେ ସାହସର ସହ ଆଗକୁ ଆସି ଏହା କରିବା ଦରକାର ।

ଆଜିର ଜୀବନ ପ୍ରତିଯୋଗିତାମୂଳକ । ଆମର ସଫଳତା ବା ବିଫଳତା କ୍ଷେତ୍ରରେ ଭାଷା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥାଏ । ଜ୍ଞାନ ଓ ସମସ୍ତ ସୁଯୋଗରେ ସହାୟତା ନେଇ ଆମେ ଜୀବନରେ ଆଗକୁ ଯାଇପାରିବା । ଏହି ପ୍ରକ୍ରିୟାରେ ସଫଳତା ମିଳିଥାଏ । ଆମ ଦେଶରେ ବ୍ରାହ୍ମଣମାନେ ଶିକ୍ଷା ଓ ସୁଯୋଗର ସମସ୍ତ ବିନିଯୋଗକରି ଆଗକୁ ଯାଇପାରୁଛନ୍ତି । ବହୁ ଶତାବ୍ଦୀ ଧରି ସେମାନେ ଏହି ସୁବିଧାର ଉପଯୋଗ କରୁଛନ୍ତି । ଏହି ସଂଗ୍ରାମ କୌଣସି ଅସ୍ତ୍ରଦ୍ୱାରା କରାଯାଉ ନାହିଁ । ଏହି ସଂଗ୍ରାମ ସେମାନଙ୍କର ବୁଦ୍ଧି, ଚତୁରତା ଓ କୌଶଳ ଯୋଗୁ ସମ୍ଭବ ହୋଇଛି । ଆଜି ମଧ୍ୟ ସେମାନେ ସବୁ ସୁଯୋଗର ଉପଯୋଗ କରି ସଫଳତା ହାସଲ କରୁଛନ୍ତି । ଶିକ୍ଷାକୁ ଆଧାର କରି ଏକ ଗୋଷ୍ଠୀର ଲୋକ ଅନ୍ୟ ଗୋଷ୍ଠୀମାନଙ୍କୁ ଶୋଷଣ କରିପାରୁଛନ୍ତି । ସୁତରାଂ ବିଜ୍ଞାନ, ଇଂଜିନିୟରିଂ, ଗଣିତ ଇତ୍ୟାଦି ବିଷୟର ପ୍ରସାର ପାଇଁ ପେରିୟାର ଅନେକ ଆଗ୍ରହ ପ୍ରକାଶ କରିଛନ୍ତି । ତା ହେଲେ ଆଜିର ପ୍ରତିଯୋଗିତା ମୂଳକ ଦୁନିଆରେ ତାମିଲମାନେ ପ୍ରତିଯୋଗିତାରେ

ସାମିଲ ହୋଇପାରିବେ । ପେରିୟାର ତାମିଲ ପଣ୍ଡିତମାନଙ୍କର ସମାଲୋଚନା କଲେ ବି ତାମିଲ ଭାଷାକୁ ବେଶ୍ ଆଦର କରିଛନ୍ତି । ତାହା ନିମ୍ନ ବକ୍ତବ୍ୟରୁ ସ୍ପଷ୍ଟ

(୧) ୱିନସୋଙ୍କ ମତରେ ତାମିଲ ଭାଷା କବିତାରେ ଗ୍ରୀକ୍ ଭାଷାକୁ ଓ ଲାଟିନ ସାହିତ୍ୟକୁ ଅତିକ୍ରମ କରିପାରିବ ।

(୨) କୋଲଡୱେଲ କହିଛନ୍ତି "ତାମିଲ ଭାଷା ବହୁ ପ୍ରାଚୀନ । ଏହି ଭାଷା ବହୁ ଉଚ୍ଚରେ ରହିଛି । କୌଣସି ଦ୍ରାବିଡୀୟ ଭାଷା ଏହାର ସମକକ୍ଷ ନୁହେଁ । "

(୩) ସିଲାଟେର କହିଛନ୍ତି "ସମସ୍ତ ଦ୍ରାବିଡୀୟ ଭାଷାଗୋଷ୍ଠୀ ମଧ୍ୟରେ ତାମିଲ ସବୁଠାରୁ ଏକ ସୁନ୍ଦର ଭାଷା । ଏହି ଭାଷାର ଗଠନ ଢାଂଚା ବି ବେଶ୍ ଭଲ ।"

(୪) ମୁର୍ଡୋକ କହିଛନ୍ତି "ବିଭିନ୍ନ ଭାଷା ମଧ୍ୟରେ ତାମିଲ ସବୁଠାରୁ ଉନ୍ନତ ଭାଷା । ଏହାର ସାହିତ୍ୟ ରାଜି ମଧ୍ୟ ବେଶ୍ ଉଚ୍ଚକୋଟିର ।"

ପେରିୟାରଙ୍କ ମତରେ ଯେଉଁ ମାନଙ୍କର ନିଜ ମାତୃଭାଷା ପ୍ରତି ଶ୍ରଦ୍ଧା ନାହିଁ, ସେମାନଙ୍କର ନିଜର ମାତୃଭୂମି ପ୍ରତି ମଧ୍ୟ ଶ୍ରଦ୍ଧା ରହିପାରିବ ନାହିଁ । ସୁତରାଂ ପ୍ରତ୍ୟେକ ଛାତ୍ର ତାମିଲନାଡୁରେ ତାମିଲ ଭାଷା ଶିକ୍ଷାକରିବା ଆବଶ୍ୟକ ।

ଅତୀତରେ ତାମିଲମାନଙ୍କର କୌଣସି ଜାତିଅଣ ମନୋଭାବ ନଥିଲା । ତାମିଲମାନେ ସୁଦୂର ଇଜିପ୍ଟ, , ଗ୍ରୀସ୍ ଓ ରୋମସହିତ ବାଣିଜ୍ୟିକ ସଂପର୍କ ଅତୀତରେ ରଖିଥିଲେ । ତାମିଲ ମହିଳାମାନେ ଶିକ୍ଷାରେ ଅଗ୍ରଗାମୀ ଥିଲେ । ତାମିଲ ରାଜାମାନେ ନ୍ୟାୟବନ୍ତ ଶାସକ ଥିଲେ । ତାମିଲମାନେ ମଧ୍ୟ ବେଶ୍ ସାହାସିକ ଜାତି ଥିଲେ ।

ପ୍ରତ୍ୟେକ ତାମିଲ ତାମିଲ ଭାଷା ଶିକ୍ଷାକଲେ ଭାଷାର ବିକାଶ ଘଟିବ । ଏହାଦ୍ୱାରା ତାମିଲ ନାଡୁ ପ୍ରଗତି ହାସଲ କରିପାରିବ ।

ଏହି ସବୁ କହିଥିବା ବ୍ୟକ୍ତିଙ୍କୁ ତାମିଲ ଭାଷା ବିରୋଧୀ ବୋଲି କୁହାଯାଇ ପାରିବ କି ? ଏହା ତାମିଲମାନେ ଚିନ୍ତା କରିବା ଆବଶ୍ୟକ । ଏତଦ୍‌ବ୍ୟତୀତ

ତାମିଲ ସମ୍ବାଦପତ୍ର "କୁଦି ଅରସୁ"ରେ ସେ ଯାହା ଲେଖିଥିଲେ ତାହାର କିଛି ଏଠାରେ ଉଦ୍ଧାର କରାଯାଇପାରେ–

(i) ତାମିଲମାନେ ସେମାନଙ୍କର ପିଲାମାନଙ୍କୁ ତାମିଲ ନାମ ଦେବେ ।

(ii) ସମସ୍ତ ଗ୍ରାମ ଓ ରାସ୍ତାର ନାମ ତାମିଲ ଭାଷାରେ ଲେଖାଯିବ ।

(iii) ଘରେ, ରାସ୍ତାରେ ଓ ଅଫିସରେ ଇଂରାଜୀ ଓ ସଂସ୍କୃତ ଭାଷାର ତାମିଲ ଭାଷା ସହ ମିଶ୍ରଣକୁ ପରିହାର କରିବେ ।

(iv) ଯଦି ତାମିଲ ପ୍ରତି ଶବ୍ଦ ନାହିଁ, ଇଂରାଜୀ ଶବ୍ଦ ବ୍ୟବହାର କରିବେ ।

(v) ତାମିଲ ଶବ୍ଦର ଅଭାବରେ ନୂତନ ତାମିଲ ଶବ୍ଦ ବାହାର କରିବାକୁ ପ୍ରୟାସ କରିବେ ।

(vi) ମନ୍ଦିର ଓ ପର୍ବପର୍ବାଣି ସମୟରେ ସଂସ୍କୃତ ପରିବର୍ତ୍ତେ ତାମିଲ ଭାଷାର ପ୍ରଚଳନ ହେବ ।

(vii) ଯେଉଁମାନେ ତାମିଲ ଭାଷାକୁ ଭ୍ରମାତ୍ମକ ଭାବରେ ବ୍ୟବହାର କରିବେ ତାହାର ସଂଶୋଧନ କରିବାକୁ ଯତ୍ନଶୀଳ ହେବେ । ୧ ଚେନାଇସ୍ଥିତ ସନ୍ଥମ ରୋଡରେ 'ଭାରତୀ ଦାସମ' ନାମକ ଏକ ସଂସ୍ଥା ଏକ ଅଫିସ ପ୍ରତିଷ୍ଠା କରିଥିଲେ । ସେଠାରେ ଏକ ଉତ୍ସବରେ ଯୋଗଦାନ ଅବସରରେ ପେରିୟାର କହିଥିଲେ ଯେ "ଆପଣଙ୍କ ଅଫିସ ତାମିଲ ଭାଷା ଓ ସଂଗୀତର ବିକାଶ ପାଇଁ କାର୍ଯ୍ୟ କରୁଛି । ତାମଲି ଭାଷା ଓ ତାମିଲ ଲୋକମାନେ ଏହାଦ୍ୱାରା ଉପକୃତ ହେବେ । ଆପଣଙ୍କର ସଂସ୍ଥାର ସଫଳତା ପାଇଁ ଆପଣଙ୍କୁ ସହଯୋଗ ସମର୍ଥନ ଆବଶ୍ୟକ । ଆପଣମାନଙ୍କର ଏହି କାର୍ଯ୍ୟରେ ମୁଁ ସମସ୍ତ ସହଯୋଗ ଦେବି । ଯୁବକମାନେ, ଧନୀବ୍ୟକ୍ତିଗଣ ଆପଣ ମାନଙ୍କ ପ୍ରୟାସ ପାଇଁ ସମସ୍ତ ସାହାଯ୍ୟର ହାତ ବଢ଼ାଇବା ଆବଶ୍ୟକ । ଆପଣମାନେ ତାମିଲ ଭାଷା ଓ ତାମିଲ ସମାଜର ବିକାଶ କ୍ଷେତ୍ରରେ କରୁଥିବା କାର୍ଯ୍ୟକୁ ବହୁ କ୍ଷେତ୍ରରୁ ସମର୍ଥନ ମିଳିବ ।"

ତାମଲିମାନେ ଆତ୍ମମର୍ଯ୍ୟାଦା, ଶିକ୍ଷା ଓ ଜ୍ଞାନ କ୍ଷେତ୍ରରେ ଯେପରି ଅଗ୍ରଗତି କରିବେ ଏହା ପେରିୟାରଙ୍କ ସର୍ବଦା ଲକ୍ଷ୍ୟ ରହିଥିଲା । ତାମିଲମାନଙ୍କ ଭିତରେ ଜାଗରଣ ଆଣିବାକୁ ସେ ପ୍ରୟାସୀ ଥିଲେ । ସେ ବିଭିନ୍ନ ସଭା ସମିତିରେ ଏକ ଆହ୍ୱାନ ଦେଉଥିଲେ "ଆପଣଙ୍କ ନିଜ ଭୂମିରେ ଆପଣମାନେ ଗଣିକା-ପୁତ୍ର ଭାବେ ପରିଗଣିତ ହେବେ ? ଆପଣମାନଙ୍କର ଶ୍ରମ ଓ ଅର୍ଥରେ ନିର୍ମିତ ହୋଇଥିବା ମନ୍ଦିର ମାନଙ୍କରେ ଆପଣମାନେ କାହିଁକି ପ୍ରବେଶ କରିପାରିବେ ନାହିଁ ? ଆପଣମାନଙ୍କ ଭୂଇଁରେ ନିର୍ମିତ ହୋଇଥିବା ହୋଟେଲମାନଙ୍କରେ ଆପଣ କାହିଁକି ଅସ୍ପୃଶ୍ୟ ବିବେଚିତ ହେବେ ?

କେବଳ ତାମିଲ ଭାଷା ନୁହେଁ, ତାମିଲ ନାଡୁର ସର୍ବାଂଗୀନ ବିକାଶ ପାଇଁ ପେରିୟାର ଗଭୀର ସଂପୃକ୍ତି ବ୍ୟକ୍ତ କରିଥିଲେ । କେ.ବି. ସୁନ୍ଦରମ୍ମଲ ଦଳିତ ସଂପ୍ରଦାୟର ଥିଲେ । ଆର୍ଯ୍ୟ ଗୋଷ୍ଠୀ ବ୍ୟକ୍ତିମାନେ ବା ସେମାନଙ୍କ ପରିଚାଳିତ ସମ୍ବାଦପତ୍ର ମାନେ ସୁନ୍ଦରମ୍ମଲଙ୍କର ବିକାଶ ଚାହୁଁ ନଥିଲେ । କିନ୍ତୁ ପେରିୟାର ସୁନ୍ଦରମ୍ମଲଙ୍କୁ ସମସ୍ତ ସହଯୋଗର ହାତ ବଢ଼ାଇଥିଲେ ।

ତାମିଲନାଡୁରେ ତାମିଲ ଭାଷାରେ ସଂଗୀତ ଗାନ କରାଗଲା । ଏକଦା ତାମିଲ ସଂଗୀତକୁ ଆଦୌ ଆଦର ନଥିଲା, କିନ୍ତୁ ପେରିୟାରଙ୍କ ପ୍ରୟାସରେ ଏହି ସ୍ଥିତି ବଦଳି ଗଲା । ଅତୀତରେ ବ୍ରାହ୍ମଣମାନେ ତାମିଲ ସହ ସଂସ୍କୃତକୁ ମିଶାଇ ଦେଉଥିଲେ । ତାମଲି ଭାଷାକୁ ସେମାନେ ନ୍ୟୂନ ଦୃଷ୍ଟିରେ ଦେଖୁଥିଲେ । ସେହିପରି ତାମିଲ ଲୋକମାନଙ୍କୁ ସେମାନେ ହୀନ ଭାବୁଥିଲେ । ଏହି ସ୍ଥିତି କେତେ ଶତାବ୍ଦୀ ଧରି ଲାଗି ରହିଥିଲା । ତାମିଲମାନେ ନିଜର ମହତ୍ତ୍ୱ ନେଇ ଧୀରେ ଧୀରେ ସଚେତନ ହେଲେ ଓ ନିଜର ଅଧିକାରକୁ ସାବ୍ୟସ୍ତ କଲେ । ଯେଉଁମାନେ ତାମିଲ ଭାଷା, ସଂସ୍କୃତି ଓ ଲୋକମାନଙ୍କୁ ନ୍ୟୂନ ଦୃଷ୍ଟିରେ ଦେଖିବେ ଓ ତାମିଲମାନଙ୍କ ବିକାଶରେ ପ୍ରତିବନ୍ଧକ ହେବେ, ସେମାନେ ତାମିଲନାଡୁ ଛାଡି ଦିଅନ୍ତୁ ବୋଲି ସାମାଜିକ ଚେତନା ଜାଗ୍ରତ ହେଲା । ତାମିଲ ଭାଷା ସଂସ୍କୃତ ଭାଷାରୁ ମୁକ୍ତ ହେବ ଓ ସମସ୍ତ ଗୀତ ତାମିଲ ଭାଷାରେ ଗାନ କରାଯିବ । ତାମିଲମାନେ ପୁରାଣମାନଙ୍କର ଅନ୍ଧବିଶ୍ୱାସରୁ

ମୁକ୍ତ ହେବେ । ତାମିଲମାନେ ନିଜର ସଂହତି ଓ ଭାଷାର ସୁରକ୍ଷାକୁ ପ୍ରାଧାନ୍ୟ ଦେବେ । ତାମିଲମାନେ ବୈଜ୍ଞାନିକ ମନୋଭାବ ନିତିଦିନିଆ ଜୀବନରେ ଗ୍ରହଣ କରିବେ ଓ କୁସଂସ୍କାରରୁ ମୁକ୍ତ ହେବେ । ଏହି ସବୁ କାର୍ଯ୍ୟର ପ୍ରସାର ପାଇଁ ସାମାଜିକ ସ୍ତରରେ ପ୍ରୟାସ ହେଲା । ଫଳରେ ତାମିଲ ଅସ୍ମିତା ନେଇ ସାମାଜିକ ଚେତନା ସୃଷ୍ଟି ହେଲା ।

ପେରିୟାର ଏହି ଲକ୍ଷ୍ୟ ଦିଗରେ ଅବିଶ୍ରାନ୍ତ କାର୍ଯ୍ୟ କରିଥିଲେ । ଆନାମଲାଇ ବିଶ୍ୱବିଦ୍ୟାଳୟର ତାମିଲ ବିଭାଗ ତରଫରୁ ଏକ ମାନପତ୍ର ପେରିୟାରଙ୍କୁ ଦିଆଯାଇ ତାଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା । ମାନପତ୍ରରେ ଲେଖାଥିଲା– ‘‘ଆପଣ ତାମିଲନାଡୁର ଜଣେ ମହାନ ସନ୍ତାନ । ଆପଣ ଶାରୀରିକ ସ୍ତରରେ ଦୁର୍ବଳ ହୋଇଥିଲେ ବି ମାନସିକ ସ୍ତରରେ ଦୃଢ ରହିଛନ୍ତି । ଆପଣ ତାମିଲ ଲୋକମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରିଛନ୍ତି । ତାମିଲ ଭାଷାର ବିକାଶକୁ ପ୍ରତିହତ କରିବାକୁ ହିନ୍ଦୀର ବିକାଶକୁ କେତେକ ଚାହୁଁଛନ୍ତି । କିନ୍ତୁ ଆପଣ ସେହି ପ୍ରୟାସକୁ ବନ୍ଦ କରି ପାରିଛନ୍ତି । ଆପଣ ତାମିଲମାନଙ୍କ ପାଇଁ ତାମିଲ ଭାଷାର ବିକାଶକୁ ପ୍ରାଧାନ୍ୟ ଦେଇଛନ୍ତି । ତେଣୁ ଆମେ ଆପଣଙ୍କୁ ସ୍ୱାଗତ କରୁଛୁ ।

‘‘ଆମେ ତାମିଲନାଡୁ ଆନାମଲାଇ ବିଶ୍ୱବିଦ୍ୟାଳୟର ଛାତ୍ର ଛାତ୍ରୀଗଣ ଆପଣଙ୍କୁ ଆମନ୍ତ୍ରଣ କରିଥିବାରୁ ଗର୍ବ ଅନୁଭବ କରୁଛୁ । ଆମ ପୂର୍ବରୁ ଯେଉଁମାନେ ଏହି ବିଶ୍ୱବିଦ୍ୟାଳୟରେ ପଢିଛନ୍ତି ବା ଭବିଷ୍ୟତରେ ଯେଉଁମାନେ ଏଠାରେ ଅଧ୍ୟୟନ କରିବେ ସେମାନେ ଆପଣଙ୍କୁ ଏପିର ସମ୍ମାନିତ କରିବାର ଅପୂର୍ବ ସୁଯୋଗ ପାଇବେ ନାହିଁ ।

‘‘ଆପଣ ସବୁ ମନୁଷ୍ୟକୁ ମନୁଷ୍ୟ ଦୃଷ୍ଟିରେ ଦେଖିବାକୁ ସର୍ବଦା ପ୍ରାଧାନ୍ୟ ଦେଇଛନ୍ତି । ଆପଣ ନାରୀ ପୁରୁଷ ଭିତରେ ଥିବା ଶାରୀରିକ ଭିନ୍ନତା ବ୍ୟତୀତ ସମସ୍ତଙ୍କୁ ସମାନ ଭାବି ଆସିଛନ୍ତି । ଅଦରକାରୀ ଧାର୍ମିକ ପର୍ବପର୍ବାଣିର ଅସାରତା ନେଇ ଆପଣ ଲୋକମାନଙ୍କୁ ସଚେତନ କରିଛନ୍ତି । ବିଂଶ ଶତାବ୍ଦୀର ଆପଣ ଜଣେ ମହାନ କ୍ରାନ୍ତିକାରୀ ବ୍ୟକ୍ତି ।

# ଆନାମଲାଇ ବିଶ୍ୱବିଦ୍ୟାଳୟ (୭.୧.୧୯୪୪)

ଆନାମଲାଇ ବିଶ୍ୱବିଦ୍ୟାଳୟର ତାମିଲ ବିଭାଗ ସେତେବେଳେ ତାମିଲନାଡୁରେ ସୁଖ୍ୟାତି ଅର୍ଜନ କରିଥିଲା, ଏହି ବିଭାଗ ପେରିୟାରଙ୍କୁ ତାମିଲମାନଙ୍କର ଆତ୍ମସମ୍ମାନ ବିକାଶରେ ଦେଇଥିବା ଅବଦାନ ପାଇଁ ତଥା ତାମିଲ ଭାଷାର ମହତ୍ୱ ବୃଦ୍ଧି କରିଥିବାରୁ ସମ୍ମାନିତ କରିବା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣାଥିଲା ।୧୯୨୬ରେ ସରକାର ତାମିଲ ନାଡୁରେ ହିନ୍ଦୀ ଭାଷା ଶିକ୍ଷାକୁ ବାଧ୍ୟତାମୂଳକ କରିବା ଅବସରରେ ପେରିୟାର ତାର ବିରୋଧ କରିଥିଲେ । ହିନ୍ଦୀ ଭାଷାକୁ ପ୍ରସାର କରିବା ପାଇଁ ଏତେ ଅର୍ଥ ଖର୍ଚ୍ଚ କରିବା ଆବଶ୍ୟକ ନାହିଁ । ତାମିଲନାଡୁରେ ଥିବା ବ୍ରାହ୍ମଣମାନଙ୍କ ମଧ୍ୟରୁ ୯୭% ଭାଗ ଲୋକ ହିନ୍ଦୀ ପଢନ୍ତି । କୌଣସି ତାମିଲ ହିନ୍ଦୀ ପଢନ୍ତି ନାହିଁ । ସେହି ସ୍ଥିତିରେ ତାମଲି ଭାଷାର ବିକାଶରେ ସରକାର ୧% ଆଗ୍ରହ ନ ଦେଖାଇବା ଚିନ୍ତାର ବିଷୟ ବୋଲି ପେରିୟାର କହିଲେ । ତାମିଲ ଭାଷାର ଉନ୍ନତି ପାଇଁ ସେ ଗୁରୁତ୍ୱ ଦେଲେ ।

୧୯୩୮ରେ ସି. ରାଜଗୋପାଳଚାରୀ ତାମିଲନାଡୁର ମୁଖ୍ୟମନ୍ତ୍ରୀ ହେବାବେଳେ ସେ ପୁନଶ୍ଚ ତାମିଲନାଡୁରେ ହିନ୍ଦୀ ଶିକ୍ଷାକୁ ବାଧ୍ୟତାମୂଳକ କଲେ । ଏହାକୁ ବିରୋଧ କରିବାରୁ ପେରିୟାରଙ୍କୁ ଗିରଫ କରାଗଲା ଓ ସେ ଦୁଇବର୍ଷ ଜେଲରେ ରହିଥିଲେ । ୧୯୪୮ରେ ଓମାନ୍ଦୁର ରାମସାମୀ ରେଡି ତାମିଲ ନାଡୁର ମୁଖ୍ୟମନ୍ତ୍ରୀ ହେବା ଅବସରରେ ହିନ୍ଦୀ ଭାଷାକୁ ପୁଣି ତାମିଲନାଡୁରେ ବାଧ୍ୟତାମୂଳକ କରାଗଲା । ଏହା ବିରୁଦ୍ଧରେ ପେରିୟାର ସ୍ୱର ଉଠାଇ ଆନ୍ଦୋଳନକରି ସଫଳ ହୋଇଥିଲେ । ତାମିଲନାଡୁର ରେଳ ଷ୍ଟେସନମାନଙ୍କରେ ଲେଖା ଯାଇଥିବା ହିନ୍ଦୀ ଅକ୍ଷର ଉପରେ ଲୋକମାନେ କଳା ବୋଳିଲେ । ହିନ୍ଦୀକୁ ବାଧ୍ୟତାମୂଳକ କରିବା କ୍ଷେତ୍ରରେ ପ୍ରବଳ ବିରୋଧ ତାମଲି ନାଡୁରେ ପ୍ରକାଶ ପାଇଥିଲା । ୧୯୫୪ରେ କାମରାଜ ତାମିଲ ନାଡୁର ମୁଖ୍ୟମନ୍ତ୍ରୀ ହେଲେ ଓ ସେ ପେରିୟାରଙ୍କୁ ପ୍ରତିଶ୍ରୁତି ଦେଲେ ଯେ ସରକାର ହିନ୍ଦୀକୁ କେବେ ବାଧ୍ୟତାମୂଳକ କରିବେ ନାହିଁ । ସେ ସମୟରେ ପଣ୍ଡିତ ନେହେରୁ ଭାରତର ପ୍ରଧାନମନ୍ତ୍ରୀ ଥାନ୍ତି । ପ୍ରଧାନମନ୍ତ୍ରୀ ପ୍ରତିଶ୍ରୁତି

ଦେଲେ ଯେ ଯେପର୍ଯ୍ୟନ୍ତ ତାମିଲନାଡୁର ଜନଗଣ ହିନ୍ଦୀ ଭାଷା ପାଇଁ ଆଗ୍ରହ ଦେଖାଇ ନାହାନ୍ତି ସରକାର ହିନ୍ଦୀ ଭାଷାକୁ ବାଧ୍ୟତାମୂଳକ କରିବେ ନାହିଁ । ଫଳରେ ହିନ୍ଦୀ ବିରୁଦ୍ଧରେ ହୋଇଥିବା ଆନ୍ଦୋଳନ ଏହାଦ୍ୱାରା ବନ୍ଦ ହେଲା ।

ବିବାହ ଇତ୍ୟାଦି ସମୟରେ ତାମିଲ ଭାଷାରେ ମନ୍ତ୍ର ପଢାଯିବାକୁ ପେରିୟାର ଚାହିଁଲେ । ପୂଜକମାନେ ମନ୍ଦିର ମାନଙ୍କରେ ତାମିଲ ଭାଷାରେ ପୂଜାକରିବାକୁ ସେ ଗୁରୁତ୍ୱ ଦେଲେ । କର୍ଣ୍ଣାଟକ ସଂଗୀତ ତାମିଲ ଭାଷାରେ ଗାନ କରିବାକୁ ସେ ପ୍ରସାର କଲେ । ଏହି ସବୁ ପରିବର୍ତ୍ତନ ପାଇଁ ସେ ସାମାଜିକ ଚେତନା ସୃଷ୍ଟି କରିଥିଲେ ।

ବିବାହ ସମୟରେ କିମ୍ବା ପରିବାରରେ ଉତ୍ସବ ପାଳନ ଅବସରରେ ସଂସ୍କୃତ ଭାଷାରେ ପଢାଯାଇଥିବା ମନ୍ତ୍ରକୁ ପରିବର୍ତ୍ତନ କରି ତାମିଲ ଭାଷାରେ କରିବାକୁ ସେ ଗୁରୁତ୍ୱଦେଲେ । ସେ ଏହି ସଂପର୍କରେ କୁଦି ଅରସୁ ସମ୍ବାଦପତ୍ରରେ ଲେଖୁଥିଲେ ।

ହେ ତାମିଲବାସୀ ଗଣ ! ତାମଲି ମାତା ଆପଣମାନଙ୍କୁ ନିବେଦନ କରୁଛନ୍ତି । ଆର୍ଯ୍ୟମାନଙ୍କର ଅତ୍ୟାଚାରରୁ ତାଙ୍କୁ ଉଦ୍ଧାର କରିବାକୁ ସେ ଚାହୁଁଛନ୍ତି । ଆପଣମାନେ ନିଜ ମା'ଙ୍କୁ କିପରି ଭୁଲିଯିବେ ! ମା'ଙ୍କ ପ୍ରତି ନିଜର କର୍ତ୍ତବ୍ୟ କରନ୍ତୁ ।

ତାମିଲ ମା'ଙ୍କ ଅତ୍ୟାଚାରକୁ ଆପଣମାନେ ସହିବେ କି ? ତାମିଲ ଜନନୀଙ୍କର ରୋଦନକୁ ଦୂର କରିବାକୁ ଆପଣ ଅଗ୍ରସର ହୁଅନ୍ତୁ ।

ଏହିପରି ଭାବପ୍ରବଣ ଜନିତ ଲେଖାମାନଙ୍କୁ ସେ ସମ୍ବାଦ ପତ୍ରରେ ପ୍ରକାଶକରି ଲୋକମାନଙ୍କ ମଧ୍ୟରେ ତାମିଲ ଭାଷା ପ୍ରତି ଆବେଗ ସୃଷ୍ଟି କରିଥିଲେ । ତାମିଲ ଭାଷାକୁ ଏକ ଜନନୀର ଆଖ୍ୟା ଦେବାର ଭାବଧାରାକୁ ଯଦିବା ପେରିୟାର ପସନ୍ଦ କରୁନଥିଲେ ତେବେ ଲୋକମାନଙ୍କର ଆବେଗକୁ ସ୍ପର୍ଶକରି ତାମିଲମାନଙ୍କର ସ୍ୱାର୍ଥର ସୁରକ୍ଷା ପାଇଁ ଏହା ତାଙ୍କର ପ୍ରୟାସ ଥିଲା । ପେରିୟାର ହେତୁବାଦୀ ଥିଲେ । ତେବେ ଭାଷା ସମ୍ବନ୍ଧରେ ଓ ତାମିଲମାନଙ୍କର ସ୍ୱାଭିମାନ କ୍ଷେତ୍ରରେ ସେ ସମ୍ବେଗମୂଳକ ଭାଷା ପ୍ରୟୋଗ କରିଥିଲେ ।

ସେ ତାମିଲ ଭାଷାର ଯେଉଁ ସମାଲୋଚନା କରୁଥିଲେ ତାମିଲ ଭାଷାକୁ ଘୃଣା ଦୃଷ୍ଟିରୁ ଏହା କରୁନଥିଲେ । ବରଂ ତାମିଲ ଭାଷାର ବିକାଶ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ରହିଥିଲା । ତାମିଲ ଭାଷାର ସମାଲୋଚନା ଜଣେ ସ୍ନେହଶୀଳ ଜନନୀଙ୍କର ନିଜ ପୁତ୍ରକୁ ଗାଳି ସଦୃଶ ଥିଲା । ସେ ଭାଷାର ବିକାଶ ଓ ସଂସ୍କାରକୁ ପ୍ରାଧାନ୍ୟ ଦେଇଥିଲେ ।

ତାଙ୍କର ଉପଲବ୍ଧି ଥିଲା ଯେ ତାମଲି ଭାଷାର ସମୟର ଆବର୍ତ୍ତନ ଭିତରେ କୌଣସି ପରିବର୍ତ୍ତନ ହୋଇ ନାହିଁ । ଶିଳ୍ପ, ବିଜ୍ଞାନ ଓ ଅର୍ଥନୈତିକ ବିକାଶ ପାଇଁ ତାମିଲ ଭାଷାରେ କିଛି ଅଭିବୃଦ୍ଧି ଘଟି ନାହିଁ । ଏହି କାରଣ ପାଇଁ ସେ ତାମିଲ ଭାଷାକୁ ସମାଲୋଚନା କରିଥିଲେ । ତାଙ୍କର କିଛି ବକ୍ତବ୍ୟ ଏଠାରେ ଉଦ୍ଧାର କରାଯାଇପାରେ ।

ତାମିଲ ମୋର ମାତୃଭାଷା ହୋଇଥିବାରୁ ମୁଁ ଯେ ଏହାକୁ ଭଲ ପାଏ ଏହା ନୁହେଁ । ଏହା ଏକ ପ୍ରାଚୀନ ଭାଷା ଯୋଗୁ ବା ସନ୍ଥ ଅଗସ୍ତି ଏହାକୁ ସୃଷ୍ଟି କରିଥିବା ହେତୁ ଏହାକୁ ମୁଁ ଭଲ ପାଏ, ନୁହେଁ । ବରଂ ଏହା କୋଟି କୋଟି ଲୋକଙ୍କର ହୃଦୟର ଭାଷା ଓ ଏହାର ଯଥେଷ୍ଟ ଉନ୍ନତି ସମ୍ଭବ ଏଥିପାଇଁ ମୁଁ ଏହାକୁ ଭଲପାଏ ।

ଯଦି ମୋର ଲକ୍ଷ୍ୟ ସାଧନ କ୍ଷେତ୍ରରେ ମୋ ରାଜ୍ୟ ମୋ ପାଇଁ ଅନୁକୂଳ ନୁହେଁ, ମୁଁ ମୋ ରାଜ୍ୟରୁ ଚାଲିଯାଇ ପାରେ । ସେହିପରି ମୋର ଭାଷା ଜନଗଣଙ୍କ ଆତ୍ମସମ୍ମାନର ସହ ବଞ୍ଚିବା ପାଇଁ ଯଦି ପ୍ରେରଣାଦାୟୀ ନୁହେଁ କିମ୍ବା ସାମାଜିକ ବିକାଶ ପାଇଁ ଉପଯୋଗୀ ନୁହେଁ ତେବେ ମୁଁ ସେଠାରେ ମଧ୍ୟ ରହିବାକୁ ଚାହିଁବି ନାହିଁ । ବରଂ ମୋର ଭାଷା ଆତ୍ମସମ୍ମାନ ସହ ବଞ୍ଚିବା ପାଇଁ ଓ ସାମାଜିକ ବିକାଶ ସାଧନ ପାଇଁ ଅନୁକୂଳ ହେବା ଆବଶ୍ୟକ ।

ସେହିପରି କେବଳ ବିରୋଧ ଉଦ୍ଦେଶ୍ୟରେ ମୁଁ ହିନ୍ଦୀକୁ ବିରୋଧ କରୁନାହିଁ । ଏହା ତାମିଲ ଭାଷାର ବିକାଶରେ ଯେ ପ୍ରତିବନ୍ଧକ ସେ ପାଇଁ ମୁଁ ହିନ୍ଦୀ ଭାଷାକୁ ବିରୋଧ କରୁଛି । ତାମିଲ ଭାଷା ତାମିଲନାଡୁର ଜନଗଣଙ୍କୁ ବିଭିନ୍ନ କ୍ଷେତ୍ରରେ ବିକାଶର ସୁଯୋଗ ଦେଇପାରିବ । ଏହା ମଧ୍ୟ ଆମ ଲୋକମାନଙ୍କୁ ସ୍ୱାଧୀନ

କରିପାରିବ । ଆମ ଲୋକଙ୍କ ମଧ୍ୟରେ ଆତ୍ମ ସମ୍ମାନର ଭାବନା ସୃଷ୍ଟି କରିବା କ୍ଷେତ୍ରରେ ତଥା ବିଚାରଶୀଳତାର ବିକାଶ କ୍ଷେତ୍ରରେ ତାମିଲ ଭାଷା ସହାୟକ ହେବ । ମୋତେ କେହି ପ୍ରଶ୍ନ କରିପାରନ୍ତି – ତାମିଲ ଭାଷାର ଏହି ସବୁ ଲକ୍ଷଣ ରହିଛି କି ? ହୁଏତ ତାମିଲ ଭାଷାର ଅନ୍ୟ ଭାରତୀୟ ଭାଷାମାନଙ୍କ ପରି ଏହି ସବୁ ଲକ୍ଷଣ ତୁଳନାତ୍ମକ ଭାବେ ନଥାଇପାରେ, ତେବେ ତାମିଲ ଭାଷାର ଅନେକ ସକାରାତ୍ମକ ଲକ୍ଷଣ ରହିଛି । ଏହା ତାମିଲ ଜନଗଣଙ୍କର କଳା ସଂସ୍କୃତିର ବିକାଶରେ ନିଶ୍ଚୟ ସହକ ।”

ଏହି ସବୁ ମନ୍ତବ୍ୟରୁ ତାମିଲ ଭାଷା ସମ୍ବନ୍ଧରେ ତାଙ୍କର ଦୃଷ୍ଟିଭଙ୍ଗୀ ସ୍ପଷ୍ଟ । ସେ ଏହା ଚାହୁଁଥିଲେ ଯେ ତାମିଲ ଭାଷା ତାର ଆଦିମ ସ୍ତରରୁ ଉନ୍ନତ ହୋଇ ବିକଶିତ ହେଉ । ଏହା କେବଳ ପ୍ରାଚୀନ ସ୍ତରରେ ନରହୁ । ତାମିଲ ଭାଷା ପ୍ରତି ଗଭୀର ଶ୍ରଦ୍ଧାରୁ ସେ କେବଳ ତାମିଲ ଭାଷାକୁ ସମାଲୋଚନା କରୁଥିଲେ । ଯୁବସମାଜ ତାଙ୍କର ଦୃଷ୍ଟିଭଙ୍ଗୀକୁ ଭଲ ଭାବେ ବୁଝିବା ଆବଶ୍ୟକ ।

# ୨୫. ସାମ୍ୟବାଦର ସମର୍ଥକ

ଯାହା ମାନବସମାଜର ମଙ୍ଗଳକାରୀ, ପେରିୟାର ତାର ପ୍ରଶଂସକ ଥିଲେ । ସେହି ଦୃଷ୍ଟିରୁ କମ୍ୟୁନିଜମ୍ ବା ସାମ୍ୟବାଦର ମୌଳିକ ନୀତିକୁ ସେ ଭଲ ପାଉଥିଲେ । ଯାହା ସମତା ଭାବନାର ବିରୋଧୀ ସେ ତାକୁ ଗ୍ରହଣ କରୁନଥିଲେ । ଲୋକମାନଙ୍କ ଭିତରେ ସମତାର ପ୍ରତିଷ୍ଠା ଥିଲା ତାଙ୍କ ଜୀବନର ଲକ୍ଷ୍ୟ ।

ତାଙ୍କ ଦଳର ପତାକା ଥିଲା ସମତାର ପ୍ରତୀକ । ଲାଲ ହେଉଛି ସମତାର ଚିହ୍ନ । ଜ୍ଞାନର ଅଭାବ ବା ଅଜ୍ଞତାର ପ୍ରତୀକ ହେଉଛି କଳା, ଯାହା ଅନ୍ୟ ଉପରେ ପ୍ରଭୁତ୍ୱ ବିସ୍ତାର କରିବାର ସୂଚନା ଦିଏ । କଳାର ଅପସାରଣ ଦ୍ୱାରା ତାହା ସ୍ଥାନରେ ଲାଲ ବିସ୍ତାରଲାଭ କରିବ । ପରିଣାମ ସ୍ୱରୂପ ସମସ୍ତ ପତାକାଟି ଲାଲ ହୋଇଯିବ । ତାହା ହିଁ ଥିଲା ତାଙ୍କର ଭାବନା ।

ଭାରତବର୍ଷରେ ସମତା ଆଣିବାକୁ ହେଲେ ଧର୍ମ, ଈଶ୍ୱର ଓ ବ୍ରାହ୍ମଣବାଦୀ ପ୍ରଭୁତ୍ୱର ବିଲୋପ ହେବା ଆବଶ୍ୟକ । ବିନା ପ୍ରୟାସ ଓ ବିନା ସଂଗ୍ରାମରେ ସାମ୍ୟବାଦର ପ୍ରତିଷ୍ଠା ସମ୍ଭବ ନୁହେଁ । କାରଣ ସାମ୍ୟବାଦ ବିରୁଦ୍ଧରେ ବହୁ ବିରୋଧ ରହିଛି । ପୁନଶ୍ଚ ବ୍ରାହ୍ମଣମାନେ କମ୍ୟୁନିଷ୍ଟ ପାର୍ଟି ଭିତରେ ପ୍ରଭାବ ବିସ୍ତାର କରି ରହିଛନ୍ତି । ସେମାନଙ୍କର ସେହି ଦଳ ଭିତରେ ଆଧିପତ୍ୟ ଥିବା ପର୍ଯ୍ୟନ୍ତ ସାମ୍ୟବାଦୀ ବିଚାର ଭାରତରେ ଆଗକୁ ଯାଇପାରିବ ନାହିଁ ।

ଏହି ସବୁ କାରଣ ଯୋଗୁ ପେରିୟାର ସାମ୍ୟବାଦୀ ଦଳରେ ଯୋଗଦେଇ ନଥିଲେ ।

ଯଦି କମ୍ୟୁନିଷ୍ଟମାନେ ଦ୍ରାବିଡମାନଙ୍କୁ ସମାଲୋଚନା କରିବେ ନାହିଁ ଏବଂ ବ୍ରାହ୍ମଣ ଓ କଂଗ୍ରେସ ଦଳକୁ ଅହେତୁକ ଭାବେ ସମର୍ଥନ କରିବା ବନ୍ଦ କରିବେ ତେବେ ସେମାନଙ୍କର କାର୍ଯ୍ୟକ୍ରମର ସଫଳ ପ୍ରୟୋଗ ପାଇଁ ଆମେ ସେମାନଙ୍କୁ ସମର୍ଥନ ଦେବୁ । ପୁନଶ୍ଚ ଈଶ୍ୱର, ଧର୍ମ, ବ୍ରାହ୍ମଣ, ଶାସ୍ତ୍ର, ମନ୍ଦିର ଓ ମନ୍ଦିରର ଖର୍ଚ୍ଚ ହେଉଥିବା ବିପୁଳ ଅର୍ଥ, ମଠାଧୀଶମାନଙ୍କର କାର୍ଯ୍ୟ ଓ ବ୍ରାହ୍ମଣମାନଙ୍କ ଦ୍ୱାରା କରାଯାଉଥିବା କର୍ମକାଣ୍ଡ ଇତ୍ୟାଦିକୁ ସାମ୍ୟବାଦୀ ମାନେ ସମାଲୋଚନା କରିବେ

ନାହିଁ ବୋଲି କହୁଛନ୍ତି । ଏହି ସବୁ କାରଣ ଯୋଗୁ ଆମେ କିପରି କମ୍ୟୁନିଷ୍ଟ ବା ସାମ୍ୟବାଦୀମାନଙ୍କୁ ନୀତିବାଦୀ କହିପାରିବା !

କମ୍ୟୁନିଷ୍ଟ ନୀତିରେ ସମାଜ ଶ୍ରମିକ ଓ ମାଲିକ ଦୁଇ ଶ୍ରେଣୀରେ ବିଭକ୍ତ ହୋଇ ରହିଛି । ମାଲିକମାନେ ଈଶ୍ୱର, ଧର୍ମ ଭାବନାକୁ ବିନିଯୋଗ କରି ସେମାନଙ୍କର ଆଧିପତ୍ୟ ଶ୍ରମିକମାନଙ୍କ ଉପରେ ପ୍ରତିଷ୍ଠା କରନ୍ତି । ସୁତରାଂ କମ୍ୟୁନିଷ୍ଟମାନେ ଚାହାନ୍ତି ଯେ ଶ୍ରମିକମାନେ ସଂଗଠିତ ହୋଇ ମାଲିକମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରନ୍ତୁ । ଏହାଦ୍ୱାରା ଗୋଟିଏ ସମତାଭିତ୍ତିକ ସମାଜର ଭିତ୍ତି ପଡିପାରିବ ବୋଲି ସେମାନେ ଭାବନ୍ତି । ତାହା ସମ୍ଭବ ହେଲେ ସମାଜରୁ ଜାତି, ଧର୍ମ ଓ ଈଶ୍ୱର ଭାବନାର ବିଲୁପ୍ତି ସମ୍ଭବ ହେବ ।

ପେରିୟାର ଭାବୁଥିଲେ ଯେ ଈଶ୍ୱର, ଧର୍ମର ପରିହାର ଦ୍ୱାରା ପରିବର୍ତ୍ତନ ସମ୍ଭବ ହେବ । ତାହାଦ୍ୱାରା ଆମେ ଲୋକମାନଙ୍କ ଭିତରେ ସମତା ପ୍ରତିଷ୍ଠା କରିପାରିବା । ବହୁ ଦେଶରେ ଯେଉଁମାନେ ବିପୁଳ ପୁଁଜିର ଅଧିକାରୀ ହୋଇରହିଛନ୍ତି ସେମାନେ ସଂପତ୍ତିଶୂନ୍ୟ ଲୋକମାନଙ୍କ ଉପରେ ନିଜର ଆଧିପତ୍ୟ ବିସ୍ତାର କରିଛନ୍ତି । ତାର ପ୍ରତିକ୍ରିୟାରେ ସାମ୍ୟବାଦୀ ଦଳର ବିକାଶ ହୋଇଛି କିନ୍ତୁ ଭାରତବର୍ଷର ଚିତ୍ର ଭିନ୍ନ । ଭାରତରେ ବିନା ସଂପତ୍ତିରେ ବି ଲୋକମାନଙ୍କୁ ଶୋଷଣ କରାଯାଇଛି । ଈଶ୍ୱର, ଧର୍ମ, ଶାସ୍ତ୍ର ଶୋଷଣର ମାଧ୍ୟମ ହୋଇଛନ୍ତି । ଏଠାରେ ମଧ୍ୟ ଶୋଷଣ ଅବ୍ୟାହତ ରହିଛି । ତେଣୁ ଭାରତରେ ପୁଁଜିପତିମାନଙ୍କୁ ବିତାଡିତ କରିବା ଆବଶ୍ୟକ ନାହିଁ । ପୁଂଜି, ଈଶ୍ୱର, ଧର୍ମ ଓ ଶାସ୍ତ୍ରକୁ ଧରି କିଛି ଲୋକ ଅଗଣିତ ଲୋକଙ୍କୁ ନ୍ୟୂନକରି ରଖିଛନ୍ତି, ତେଣୁ ତାହାକୁ ହିଁ ଦୂର କରିବାକୁ ହେବ । ଏହି କାରଣରୁ ପେରିୟାର ସାମ୍ୟବାଦୀଙ୍କଠାରୁ ଭିନ୍ନ ମତ ପୋଷଣ କରୁଥିଲେ ।

୧୯୪୮ରେ କଲିକତା ଠାରେ କମ୍ୟୁନିଷ୍ଟ ଦଳର ଦ୍ୱିତୀୟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ରାଷ୍ଟ୍ରର ନିରାପତ୍ତା ପାଇଁ ସେମାନଙ୍କର ନିଷ୍ପତ୍ତି ବିପଜ୍ଜନକ ହୋଇଥିବାରୁ ନେହେରୁ ସରକାର କମ୍ୟୁନିଷ୍ଟ ଦଳକୁ ଓ ସେମାନଙ୍କର ଶ୍ରମିକ ସଂଗଠନମାନଙ୍କୁ ବେଆଇନ ଘୋଷଣା କରିଥିଲେ । ଅନେକ କମ୍ୟୁନିଷ୍ଟମାନଙ୍କୁ ଗିରଫ କରାଯାଇ ଜେଲରେ ରଖାଯାଇଥିଲା ଓ ଜେଲରେ ନିର୍ଯ୍ୟାତନା ଦିଆଯାଇଥିଲା । ନେହେରୁଙ୍କର

ଏହି ନିଷ୍ପତ୍ତିକୁ ପେରିୟାର ସମାଲୋଚନା କରିଥିଲେ । ବିଦୁତଲାଇ ସମ୍ବାଦପତ୍ରରେ ସେ ନିଜର ସମାଲୋଚନାମୂଳକ ଲେଖା ଲେଖିଥିଲେ ।

୧୯୫୦ ଫେବୃୟାରୀ ୧୧ରେ ସେଲମ ଜେଲରେ ଯେଉଁ ଗୁଳିକାଣ୍ଡ ହୋଇଥିଲା ସେଥିରେ ୨୨ଜଣ କମ୍ୟୁନିଷ୍ଟଙ୍କର ମୃତ୍ୟୁ ହୋଇଥିଲା । ସେତେବେଳେ ସରକାରଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ସମସ୍ତେ ଭୟ କରୁଥିଲେ । କିନ୍ତୁ ପେରିୟାର ସରକାରଙ୍କ କାର୍ଯ୍ୟକୁ ନିନ୍ଦା କରି ଏକ ବକ୍ତବ୍ୟ ଦେଇଥିଲେ । ମାର୍ଚ୍ଚ ୫ରେ ସରକାରଙ୍କ କାର୍ଯ୍ୟକୁ ବିରୋଧକରି ଦ୍ରାବିଡ କାଜାଗମ ଦଳ ଏକ ଶୋଭାଯାତ୍ରାରେ ଯାଇ ସରକାରଙ୍କୁ ସମାଲୋଚନା କରିଥିଲେ ।

କମ୍ୟୁନିଷ୍ଟମାନେ ଜେଲରୁ ଖଲାସ ହେବାପରେ ସମସ୍ତ ପାର୍ଟି ଅଫିସମାନ ବିଭିନ୍ନ ସ୍ଥାନରେ ଖୋଲାଗଲା । ତିରୁଚିର ଗୋଲଡେନ ରକ୍‌ରେ ହୋଇଥିବା କମ୍ୟୁନିଷ୍ଟ ସଭାରେ ପେରିୟାର ଯୋଗ ଦେଇଥିଲେ । ୧୯୫୨ ସାଧାରଣ ନିର୍ବାଚନରେ ପେରିୟାର କଂଗ୍ରେସ ବିରୁଦ୍ଧରେ କମ୍ୟୁନିଷ୍ଟ ଦଳକୁ ସମର୍ଥନ କରିଥିଲେ । ସେସମୟରେ ପି.ରାମମୂର୍ତ୍ତି ଓ ଏ. ସୁବ୍ରମନିଅନ ବ୍ରାହ୍ମଣ ହେଲେ ବି ସେ ତାଙ୍କୁ ନିର୍ବାଚନରେ ସମର୍ଥନ କରିଥିଲେ ଓ ତାଙ୍କର ପୁରାତନ ବନ୍ଧୁ ପି.ଟି. ରାଜନଙ୍କ ବିରୁଦ୍ଧରେ ପ୍ରଚାର କରିଥିଲେ ।

୧୯୫୨ ରେ ପି. ରାମମୂର୍ତ୍ତି ଯେତେବେଳେ ଏକ ଅନ୍ତର୍ଜାତି ବିବାହ କଲେ ସେହି ବିବାହରେ ପେରିୟାର ଯୋଗ ଦେଇଥିଲେ । ଏହି ବିବାହ ଏକ ନିରାଡମ୍ବର ବିବାହ ଥିଲା ଯାହାକୁ ସେ ପସନ୍ଦ କରିଥିଲେ । ୧୯୫୪ରେ ସେ କମ୍ୟୁନିଷ୍ଟମାନଙ୍କ ସହ ନିଜର ସଂପର୍କକୁ କମାଇ କାମରାଜଙ୍କୁ ସମର୍ଥନ କରିଥିଲେ । କମ୍ୟୁନିଷ୍ଟ ଦଳର ମୁଖ୍ୟ ଜୀବାଙ୍କର ମୃତ୍ୟୁପରେ ତିରୁଚିଠାରେ ତାଙ୍କର କନ୍ୟାକୁ ପେରିୟାରି ବିବାହ କରାଇଥିଲେ ।

କମ୍ୟୁନିଷ୍ଟମାନଙ୍କର ପେରିୟାରଙ୍କ ପ୍ରତି ଯଥେଷ୍ଟ ସମ୍ମାନ ରହିଥିଲା । ପେରିୟାରଙ୍କ ଜନ୍ମ ଶତବାର୍ଷିକୀ ଅବସରରେ ଏମ.ଆର.ଭେଙ୍କଟରମଣ ସେମାନଙ୍କ ସମ୍ବାଦପତ୍ର "ତୀକାଦିର"ରେ ଲେଖିଥିଲେ "ପେରିୟାରଙ୍କ ହେତୁବାଦର ପ୍ରଚାର ଯୋଗୁ କମ୍ୟୁନିଷ୍ଟ ଦଳର ପ୍ରସାର ଭାରତରେ ସମ୍ଭବ ହୋଇଛି ।"

# ୨୬. ୟୁଏନେସ୍କୋ (UNSCO)ଦ୍ୱାରା ପେରିୟାରଙ୍କୁ ସମ୍ମାନ

ୟୁଏନୋସ୍କୋ ପେରିୟାରଙ୍କୁ ଏକ ମାନ ପତ୍ର ଦେଇ ସମ୍ମାନିତ କରିଥିଲେ, ଯାହା କୌଣସି ନେତାଙ୍କୁ ପୂର୍ବରୁ ଦିଆଯାଇନଥିଲା । ଏହି ମାନପତ୍ର ୨୭ଜୁନ ୧୯୭୦ ଦିନ କେନ୍ଦ୍ର ମନ୍ତ୍ରୀ ତ୍ରିଗୁଣା ସେନ ୟୁଏନେସ୍କୋ ତରଫରୁ ଡ. କେ. କରୁଣାନିଧିଙ୍କ ଉପସ୍ଥିତିରେ ପ୍ରଦାନ କରିଥିଲେ । ସେହି ମାନପତ୍ରରେ ଲେଖାଯାଇଥିଲା ।

ପେରିୟାର ନୂତନ ଯୁଗର ପ୍ରଫେଟ୍, ଦକ୍ଷିଣ ପୂର୍ବ ଏସିଆର ସକ୍ରେଟିସ୍, ସାମାଜିକ କ୍ରାନ୍ତି ଆନ୍ଦୋଳନର ଜନକ; ଓ ଅଜ୍ଞତା, କୁସଂସ୍କାର, ଅର୍ଥହୀନ ପରଂପରା ଏବଂ ନିକୃଷ୍ଟ ଆଚରଣର ତୀବ୍ର ସମାଲୋଚକ ।

## ଆଗାମୀ ବିଶ୍ୱର ଦୂରଦ୍ରଷ୍ଟା

ଭବିତବ୍ୟ କ'ଣ ହେବାକୁ ଯାଉଛି ପେରିୟାର ଥିଲେ ତାହାର ଦୂରଦ୍ରଷ୍ଟା । ଭବିଷ୍ୟତ କଣ ହେବ ସେ ତାହା ୧୯୩୦ରେ କଳ୍ପନା କରିଥିଲେ । ପୃଥିବୀରେ ଯେଉଁ ବିକାଶ ସାଧିତ ହୋଇଛି ତାହାର କାରଣ ହେଉଛି ଲୋକମାନେ ନୂତନତ୍ୱ ପାଇଁ ଆଗ୍ରହୀ ହୋଇଛନ୍ତି ଓ ନୂଆ ନୂଆ ବିଷୟ ଆବିଷ୍କାର କରିଛନ୍ତି । ଭବିଷ୍ୟତରେ କେଉଁଠି ହେଲେ ରାଜତନ୍ତ୍ର ରହିବ ନାହିଁ । କେଉଁଠି ଦାସତ୍ୱପ୍ରଥା ରହିବ ନାହିଁ । ଅନ୍ୟ ଉପରେ କାହାର ନିର୍ଭରଶୀଳତା ରହିବ ନାହିଁ । ମହିଳାମାନେ ଏକ ସୁଖପ୍ରଦ ଜୀବନ ଅତିବାହିତ କରିବା ପାଇଁ ସେମାନଙ୍କ ଗତିଶୀଳତା କ୍ଷେତ୍ରରେ କିଛି ପ୍ରତିବନ୍ଧକ ରହିବ ନାହିଁ । ଜଣେ ଦିନକୁ ଘଣ୍ଟେ ଦୁଇଘଣ୍ଟା କାର୍ଯ୍ୟ କରିବା ଯଥେଷ୍ଟ ହେବ । ସମସ୍ତଲୋକ କିଛି ସୁବିଧା ଉପଭୋଗ କରିବେ । ଦୀର୍ଘ ଜୀବନ ଅତିବାହିତ କରିବାକୁ ଓ ସୁଖରେ ରହିବାକୁ ଗବେଷଣା ହେବ ଓ ଏ କ୍ଷେତ୍ରରେ ବିକାଶ ସାଧିତ ହେବ । ଭବିଷ୍ୟତରେ ଅନେକ ଆଶ୍ଚର୍ଯ୍ୟଜନକ ଘଟଣା ଆସିବ । କୌଣସି କାର୍ଯ୍ୟକୁ

ଅସମ୍ମାନଜନକ ମନେ କରାଯିବ ନାହିଁ । ପାଇଖାନା ସଫା କରିବାକୁ ଓ ରାସ୍ତା ଝାଡୁ କରିବାକୁ ଯନ୍ତ୍ରର ପ୍ରୟୋଗ ହେବ । ଗମନାଗମନ ଆକାଶପଥରେ ହେବ । କାର୍‌ମାନେ ଅତି ଦ୍ରୁତଗତିରେ ଯାଇପାରିବେ । ମୋବାଇଲ ଫୋନ ବ୍ୟକ୍ତିର ପକେଟରେ ରହିବ ଓ ଜଣେ ଯାହାକୁ ଚାହିଁବ ତାଙ୍କ ସହ ସଂପର୍କ ଯୋଡିପାରିବ । ଜଣେ ଯେତେ ଦୂରରେ ଥିଲେ ମଧ୍ୟ ତାଙ୍କ ସହିତ କଥା ହେବା ଓ ତାଙ୍କ ମୁହଁକୁ ଦେଖିବା ଆଧୁନିକ ପ୍ରଯୁକ୍ତି ଦ୍ୱାରା ସମ୍ଭବ ହୋଇପାରିବ । ଖାଦ୍ୟ ଗୋଟିଏ କ୍ଷୁଦ୍ର ପାତ୍ରରେ ରହିବ ଯାହାକୁ ଜଣେ ସପ୍ତାହକୁ ଥରେ ଭୋଜନକଲେ ମଧ୍ୟ ଆବଶ୍ୟକୀୟ ପୋଷଣ ଶରୀର ପାଇପାରିବ । ମଣିଷମାନେ ୧୦୦ ବର୍ଷ ବା ତା ଠାରୁ ଅଧିକ ବର୍ଷ ବଞ୍ଚିପାରିବେ । ବିନା ଶାରୀରିକ ସଂପର୍କରେ ପୁରୁଷର ଶୁକ୍ରାଣୁ ଦିଆଯାଇ ଜଣେ ମହିଳା ଗର୍ଭଧାରଣ କରିପାରିବେ । ଜନସଂଖ୍ୟାକୁ ନିୟନ୍ତ୍ରଣ କରାଯାଇ ନିର୍ଦ୍ଦିଷ୍ଟ ସୀମା ଭିତରେ ରଖାଯାଇ ପାରିବ । ଯାନମାନଙ୍କର ଓଜନ କମାଯାଇ ପାରିବ । ବିନା ପେଟ୍ରୋଲରେ ବିଜୁଳିଶକ୍ତି ସାହାଯ୍ୟରେ ଗାଡି ଚଲାଇବା ସମ୍ଭବହେବ । ସାଂପ୍ରତିକ ଶାସନ ବ୍ୟବସ୍ଥା, ନ୍ୟାୟାଳୟ, ପ୍ରଶାସନ ଓ ଶିକ୍ଷା କ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନ ହେବ । ଆଗାମୀ ସମୟରେ ଈଶ୍ୱରଙ୍କ ବିଷୟରେ କହିବା ବା ପ୍ରଚାର କରିବାର ଆବଶ୍ୟକତା ପଡିବ ନାହିଁ । ସ୍ୱର୍ଗ, ନରକ ପରି ମିଥ୍ୟା ଭାବନାମାନ ନୂଆ ଦୁନିଆରେ ଅପାଂକ୍ତେୟ ମନେହେବ ।

## ଦକ୍ଷିଣ-ପୂର୍ବ ଏସିଆର ଜନକ

ପେରିୟାରଙ୍କୁ ସକ୍ରେଟିସ୍‌ଙ୍କ ସହ ତୁଳନା କରିବାର କାରଣ ରହିଛି । କାରଣ ଉଭୟ ସର୍ବଦା ଅନୁସନ୍ଧିତ୍ସୁ ହୋଇ କାହିଁକି, କିପରି, କ'ଣ ପାଇଁ ଇତ୍ୟାଦି ପ୍ରଶ୍ନମାନ ପଚାରୁଥିଲେ । ଏହା ମାଧ୍ୟମରେ ଲୋକମାନେ ସ୍ୱାଧୀନ ଭାବରେ ଚିନ୍ତାକରନ୍ତୁ ଏହା ସେମାନଙ୍କର ଲକ୍ଷ୍ୟ ରହିଥିଲା । ଚିନ୍ତାକ୍ଷେତ୍ରରେ ସେମାନଙ୍କ ମଧ୍ୟରେ ସାମଂଜସ୍ୟ ରହିଥିଲା ।

ଉଭୟ ଥିଲେ ସ୍ୱଚିନ୍ତକ । ସେମାନେ କେବେ କାହାର ଭାବନାକୁ ଉଦ୍ଧୃତ କରୁନଥିଲେ । ସେମାନେ ନିଜସ୍ୱ ଧାରାରେ ମୁକ୍ତ ଭାବରେ ଚିନ୍ତା କରୁଥିଲେ । ଗଭୀର ଭାବେ ଚିନ୍ତାକରି ଯାହା ଭାବୁଥିଲେ ତାହା ଅନ୍ୟପାଖରେ ପ୍ରକାଶ କରୁଥିଲେ ।

ଉଭୟ କେବଳ ନିଜ ଉପରେ ନିର୍ଭର କରୁଥିଲେ । ଅନ୍ୟ କେହି ତାଙ୍କର ସାହାଯ୍ୟରେ ଆସିବ ଏହା ତାଙ୍କର କଳ୍ପନା ନଥିଲା । ଯେଉଁ ବିଷୟରେ ଅନ୍ୟ କେହି ନିଜକୁ ସଂପୃକ୍ତ କରୁନଥିଲେ, ସେମାନେ ସାମାଜିକ ଗୁରୁତ୍ୱ ଥିବା ପ୍ରସଙ୍ଗ ଉପରେ ନିଜର ଚିନ୍ତା ବ୍ୟକ୍ତ କରୁଥିଲେ ।

ସେମାନଙ୍କର କାହା ସହିତ କୌଣସି ଶତ୍ରୁତା ନଥିଲା । କେବେଳ ନୀତିଗତ ପ୍ରସଙ୍ଗକୁ ନେଇ ସେମାନଙ୍କର ଅନ୍ୟମାନଙ୍କ ସହ ମତପାର୍ଥକ୍ୟ ଥିଲା । କାହା ସହିତ ବ୍ୟକ୍ତିଗତ ବିଷୟକୁ ନେଇ ସେମାନଙ୍କର ଶତ୍ରୁତା ନଥିଲା । କାହାର ଆଧିପତ୍ୟକୁ ସେମାନେ ସହ୍ୟ କରୁନଥିଲେ । ପ୍ରତ୍ୟେକ ବ୍ୟକ୍ତିର ଆତ୍ମମର୍ଯ୍ୟାଦା ରହୁ ଏହା ସେମାନଙ୍କର ଅଭିଳାଷ ରହିଥିଲା ।

କୌଣସି ନୀତିଗତ ପ୍ରସଙ୍ଗକୁ ନେଇ ଅନ୍ୟସହିତ ମତ ପାର୍ଥକ୍ୟ ଥିଲେ ମଧ୍ୟ ସେମାନେ ଅନ୍ୟମାନଙ୍କ ପ୍ରତି ସମ୍ମାନ ରଖିଥିଲେ । କୌଣସି ବ୍ୟକ୍ତିଙ୍କୁ ସେମାନେ କେବେ ଘୃଣା କରୁନଥିଲେ ବା କାହାକୁ ନ୍ୟୂନ ଦୃଷ୍ଟିରେ ଦେଖୁନଥିଲେ । ତେବେ ସେମାନେ ବିପକ୍ଷ ଲୋକମାନଙ୍କ ଦ୍ୱାରା ଆକ୍ରମଣର ସମ୍ମୁଖୀନ ହେଉଥିଲେ । ବିପକ୍ଷ ଲୋକମାନେ ସେମାନଙ୍କୁ ଅସମ୍ମାନ କରୁଥିଲେ । ସେମାନେ ସମାଜର ମଙ୍ଗଳକାମନା କରି ବନ୍ଦୀ ଜୀବନ ବିତାଇଥିଲେ ଓ ଦଣ୍ଡିତ ହୋଇଥିଲେ ।

ଉଭୟ ସରଳ ଜୀବନ ପ୍ରତି ଆନ୍ତରିକତା ରଖିଥିଲେ । ସବୁ କ୍ଷେତ୍ରରେ ଓ ବ୍ୟବହାରରେ ଅତ୍ୟନ୍ତ ସରଳ ଥିଲେ । ଉଭୟ ବିଚାରାଳୟରେ ବିଚାରପତିଙ୍କୁ ମଧ୍ୟ ବିରୋଧ କରିଥିଲେ । ସକ୍ରେଟିସ୍ ଯାହା କରିନଥିଲେ, ପେରିୟାର ତାହା କରିଥିଲେ । ସକ୍ରେଟିସ୍ ତାଙ୍କର ଭାବନାକୁ ଏକା ଏକା ବ୍ୟକ୍ତ କରିଥିଲେ । କିନ୍ତୁ ପେରିୟାର ଏକ ଦଳ ଗଠନ କରିଥିଲେ, ହଜାର ହଜାର ଲୋକଙ୍କୁ ସଂଗଠିତ କରିବାରେ ଭୂମିକା ନେଇଥିଲେ ଓ ଅନେକ ଆନ୍ଦୋଳନ ସଂଗଠିତ କରିଥିଲେ । ସକ୍ରେଟିସ୍ ତାଙ୍କ ଜୀବଦଦଶାରେ ତାଙ୍କ ବିଚାରର ସୁଫଳ ଦେଖିପାରି ନଥିଲେ, ହେଲେ ପେରିୟାର ତାଙ୍କ ଆଦର୍ଶର ପରିଣାମ ଜୀବନ କାଳରେ କିଛି ଦେଖିଥିଲେ ।

ବିଚାରାଳୟରେ ସକ୍ରେଟିସ୍ କହିଥିଲେ–"ଆପଣ ମୋତେ ଯେ କୌଣସି ଦଣ୍ଡବିଧାନ କରିପାରନ୍ତି । ବର୍ତ୍ତମାନର ସରକାର ଲୋକମାନଙ୍କର ସରକାର ନୁହେଁ । ଏହି ସରକାର କେତେକ ଧନୀଲୋକଙ୍କ ଦ୍ୱାରା ପରିଚାଳିତ ସରକାର । ଆପଣ ସେହି ସରକାରର ଅଙ୍ଗ ବିଶେଷ ।"

ବିଚାରଳୟରେ ପେରିୟାର ଯାହା କହିଥିଲେ– ଆପଣ କଂଗ୍ରେସ ସରକାରଙ୍କ ମନ୍ତ୍ରୀମାନଙ୍କ ଇଚ୍ଛା ବିରୁଦ୍ଧରେ କିଛି କରିପାରିବେ ନାହିଁ । ତେଣୁ ଆପଣ ମୋତେ ଯେତେ ଅଧିକ ଦଣ୍ଡ ଦେଇପାରନ୍ତି । ଆପଣ ମତେ ସବୁଠାରୁ ନିମ୍ନତମ ଜେଲ କକ୍ଷକୁ ପଠାଇ ଦେଇପାରନ୍ତି । ଆପଣ ଯେତେ ଶୀଘ୍ର ସମ୍ଭବ ଏହି ଅନୁସନ୍ଧାନ ଓ ବିଚାର ଶେଷ କରିପାରନ୍ତି । ବିଚାରାଳୟର ଅନୁସନ୍ଧାନ ହେଉଛି କ୍ଷମତାସୀନ ଦଳର ଉଦ୍ଦେଶ୍ୟ ପୂରଣ କରିବା । ଏହା ଏକ ନାଟକ । ଏଠାରେ ନ୍ୟାୟର ସ୍ଥାନ ନାହିଁ ।"

ସକ୍ରେଟିସ୍ ଓ ପେରିୟାରଙ୍କ ଭିତରେ ଏହି ପ୍ରସଙ୍ଗ ଉପରେ ସହମତି ଦେଖିବାକୁ ମିଳେ । ପେରିୟାରଙ୍କ ବିଷୟରେ ଏହା କନାଦାସନ ଉଲ୍ଲେଖ କରିଛନ୍ତି । ସେ· ବିଚାରାଳୟକୁ ନ୍ୟାୟ ବିଷୟରେ ଶୁଣାଇଛନ୍ତି । ସକ୍ରେଟିସ୍‌ଙ୍କ ବିଚାର ପେରିୟାରଙ୍କ ବିଚାରର କେବଳ ଏକ ଅଂଶ ମାତ୍ର ।

ପେରିୟାର ଥିଲେ ସାମାଜିକ ସଂସ୍କାରର ଜନକ । ଅନେକ ବ୍ୟକ୍ତି ସଂସ୍କାର ବିଷୟରେ କହିଛନ୍ତି, ତେବେ ପେରିୟାର ସଂସ୍କାରକୁ ଏକ ସଂଗଠିତ କାର୍ଯ୍ୟ ଭାବେ ଗ୍ରହଣ କରିଛନ୍ତି । ଏପରିକି ତାଙ୍କ ଦେହାନ୍ତ ପରେ ତାଙ୍କ ସଂସ୍କାରର କାର୍ଯ୍ୟ ଅବ୍ୟାହତ ରହିପାରିଛି ।

ଜନ୍ମଭିତ୍ତିକ ଭେଦଭାବ, ଅହେତୁକ ବିଶ୍ୱାସ, ମହିଳାମାନଙ୍କର ଦାସତ୍ୱ ପୂରାଭାବରେ ଦୂରୀଭୂତ ହେବା ଆବଶ୍ୟକ । ପେରିୟାରଙ୍କ ମତରେ ଏହି ପ୍ରଥାର ସଂସ୍କାର ନୁହେଁ, ଏସବୁର ନିରାକରଣ ଦରକାର । ସେ ଥିଲେ ଚରମପନ୍ଥୀ ସଂସ୍କାରକ । ପ୍ରାୟ ଦୁଇ ହଜାର ବର୍ଷର ଆର୍ଯ୍ୟମାନଙ୍କର ଆଧିପତ୍ୟକୁ ସେ ତୀବ୍ର ଭାବରେ

ବିରୋଧ କରିଥିଲେ । ସେହିପରି ମହିଳାମାନଙ୍କର ଦାସତ୍ୱ ବିରୁଦ୍ଧରେ ସେ ତୀବ୍ର ଭାବରେ ସ୍ୱର ଉତ୍ତୋଳନ କରିଥିଲେ । ବାଲ୍ୟବିବାହର ବିଲୋପ, ଜାତିପ୍ରଥାର ବିଲୋପ, ଯୌତୁକ ପ୍ରଥାର ନିରାକରଣ, ଦଳିତ ବର୍ଗର ଲୋକଙ୍କ ପାଇଁ ସ୍ଥାନ ସଂରକ୍ଷଣ, ସବୁ ଜାତିର ଲୋକମାନେ ପୂଜକ ହେବାର ସ୍ୱୀକୃତି, ବିଧବା ବିବାହ, ଅନ୍ତର୍ଜାତି ବିବାହ ତାଙ୍କ ସମାଜ ସଂସ୍କାରର କେତୋଟି ଦିଗ ମାତ୍ର । ଏହା ସହିତ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସଂସ୍କାର କ୍ଷେତ୍ରରେ ସେ ମଧ୍ୟ ନିଜର ସ୍ୱାକ୍ଷର ରଖିଛନ୍ତି । ଜୀବନର ଶେଷ ନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ସେ ସମାଜ ସଂସ୍କାରକୁ ପ୍ରାଧାନ୍ୟ ଦେଇଛନ୍ତି ।

ସେ ସମାଜରେ ଆମୂଳଚୂଳ ପରିବର୍ତ୍ତନ ବା ସଂସ୍କାରକୁ ପ୍ରାଧାନ୍ୟ ଦେଉଥିଲେ । ବିବାହ ସମୟରେ କନ୍ୟାଙ୍କ ବେକରେ ମଙ୍ଗଳସୂତ୍ର ବାନ୍ଧିବା, ମନ୍ତ୍ର ଉଚ୍ଚାରଣ କରିବା, ଜାତକ ମେଳ କରିବା, ଶୁଭ-ଅଶୁଭ ବେଳା ଖୋଜିବା ଇତ୍ୟାଦି ଭାବନାର ବିରୋଧୀ ଥିଲେ । ମହିଳାମାନେ ନିଜ ରୁଚି ମୁତାବକ ପୋଷାକ ପିନ୍ଧିବା, କରାଟେ ପରି ରେସଲିଂ ଶିକ୍ଷାକରିବା ଆଦିକୁ ସମର୍ଥନ କରୁଥିଲେ । ମହିଳାମାନେ ସୁନାଗହଣା ପିନ୍ଧିବାକୁ ବା ଓଷା, ବ୍ରତ ପାଳନ କରିବାକୁ ସେ ବିରୋଧ କରୁଥିଲେ ।

ସେ ଅହେତୁକ ବିଶ୍ୱାସ ଓ ଅର୍ଥହୀନ ଉତ୍ସବ ପାଳନର ବିରୋଧୀ ଥିଲେ । ଈଶ୍ୱର, ଭାଗ୍ୟ, ମନ୍ତ୍ର, ଜାତକ, ଶୁଭ-ଅଶୁଭ ବେଳା, ଶୁଭ-ଅଶୁଭ ମାସ, ରାଶି ଚକ୍ର, ବାସ୍ତୁ, ଭଲ-ମନ୍ଦ ନେଇ ଭବିଷ୍ୟ ବାଣୀ ଇତ୍ୟାଦି ଭାବନାମାନଙ୍କର ସେ ବିରୋଧୀ ଥିଲେ । ଏସବୁ ବିଶ୍ୱାସ ଅହେତୁକ ଓ ସେ ଏହି ସବୁ ବିଶ୍ୱାସ ବିରୁଦ୍ଧରେ ଯୁକ୍ତି ଦେଉଥିଲେ । ସେହିପରି ବାଲ୍ୟବିବାହ, ବିଧବାମାନଙ୍କ ପ୍ରତି କଟକଣାକୁ ଘୋର ବିରୋଧ କରୁଥିଲେ । ମନ୍ଦିର ଯିବା, ବିଭିନ୍ନ ଉତ୍ସବ ପାଳନକରି ଅର୍ଥ ଓ ସମୟ ବ୍ୟୟକରିବାକୁ ସେ ସମର୍ଥନ କରୁନଥିଲେ । ସଂକ୍ରାନ୍ତି, ଆମାବାସ୍ୟା, ଅମୃତ ବେଳା, ଇତ୍ୟାଦି ଭାବନା କିପରି ଅହେତୁକ ତାହା ଦର୍ଶାଉଥିଲେ । ସେ ତଥାକଥିତ ଅଶୁଭ ବେଳାରେ ବିବାହ ଆୟୋଜନ କରୁଥିଲେ ଓ ତାଙ୍କ କାର୍ଯ୍ୟଦ୍ୱାରା ଲୋକମାନେ କୁସଂସ୍କାରରୁ ମୁକ୍ତ ହେବା ଚାହୁଁଥିଲେ । ସେ ଜାତକ, ଜ୍ୟୋତିଷ

ବିଦ୍ୟାକୁ ପ୍ରତ୍ୟାଖ୍ୟାନ କରୁଥିଲେ । ଅବଶ୍ୟ ସେ ଏ ବିଷୟରେ ଗବେଷଣା କଲାପରେ ଏସବୁକୁ ପ୍ରତ୍ୟାଖ୍ୟାନ କରିଥିଲେ । ଆତ୍ମା, ସ୍ୱର୍ଗ, ନରକ, ମୁକ୍ତି ଏସବୁ କିପରି ଅହେତୁକ ବିଶ୍ୱାସ ତାହା ଲୋକମାନଙ୍କୁ ଦର୍ଶାଉଥିଲେ । ପୁରାଣରେ ବର୍ଣ୍ଣିତ କାହାଣୀମାନ କିପରି ଆଈ ମା କାହାଣୀ ତାହା ଲୋକମାନଙ୍କୁ ବୁଝାଉଥିଲେ । ତିନି ଶହ ଚାରି ଶହ ଟନ ଓଜନ ବିଶିଷ୍ଟ ଏକ ରଥରେ କେତେ କିଲୋଗ୍ରାମର ମୂର୍ତ୍ତିଟିଏ ରଖି ମନ୍ଦିରର ରଥ କହି ଟାଣିବା ନେଇ ଲୋକଙ୍କୁ ପ୍ରଶ୍ନ କରୁଥିଲେ । ଯଦି ଈଶ୍ୱର ଶକ୍ତିମାନ, ତେବେ ତାଙ୍କ ମନ୍ଦିରମାନଙ୍କୁ କାହିଁକି ତାଲା ଦିଆଯାଉଛି ? ମନ୍ଦିରମାନଙ୍କରେ ବିଜୁଳି-ଘଡଘଡି ପ୍ରତିରୋଧକ ବୈଜ୍ଞାନିକ ଯନ୍ତ୍ରମାନ କାହିଁକି ଲଗା ଯାଉଛି ।

ଏହିପରି ବହୁବିଧ କୁସଂସ୍କାର, ଅପବିଶ୍ୱାସମାନଙ୍କୁ ବିରୋଧ କରି ସେ ସବୁର ଦୂରୀକରଣ ପାଇଁ ଜୀବନସାରା ପ୍ରୟାସ କରିଥିଲେ ।

# ୨୭. ଆତ୍ମ-ମର୍ଯ୍ୟାଦା ବିବାହ

ବିବାହ ଦୁଇ ଜଣ ପ୍ରାପ୍ତ ବୟସ୍କ ବ୍ୟକ୍ତି ପୁଅ, ଝିଅ ମଧ୍ୟରେ ସଂପର୍କ । ଏଥିରେ ଅନ୍ୟମାନଙ୍କର ଭୂମିକା ନଥାଏ, ଏପରିକି ଉଭୟଙ୍କର ପିତା ମାତାଙ୍କର ମଧ୍ୟ ନୁହେଁ । ଏଥିରେ କୌଣସି ବାଧ ବାଧକତା ରହିବା ଆଦୌ ଉଚିତ ନୁହେଁ । ଦୁଇ ଜଣ ଜୀବନ-ସାଥୀ ହୋଇ ରହିବାକୁ ଏହା ଏକ ସମ୍ମତି । ଏହି ସମ୍ମତି ପାଇଁ ସେମାନେ ପଞ୍ଜୀକରଣ କରିପାରିବେ, ଏହାପେକ୍ଷା ଅଧିକ କିଛି ଆବଶ୍ୟକ ନାହିଁ । ଏଥି ପାଇଁ ଅର୍ଥ, ସମୟ ବ୍ୟୟ କରିବା ନିରର୍ଥକ । ବିବାହ ସ୍ଥାନରେ ଅଗ୍ନି କାହିଁକି ସୃଷ୍ଟି କରାଯିବ ଓ ସେଥିରେ ଘିଅ ଢଳାଯିବ ? ଏଥି ପାଇଁ ନାନା କର୍ମକାଣ୍ଡ ପାଳନ କରିବାର କିଛି ଅର୍ଥ ନଥାଏ । ବିବାହ ପାଇଁ ମନ୍ତ୍ର ସଂସ୍କୃତରେ ପଢ଼ିବାର କିଛି ଆବଶ୍ୟକତା ହିଁ ନାହିଁ, ସେହି ମନ୍ତ୍ରକୁ ବି ପୁଅ-ଝିଅ କିଛି ବୁଝନ୍ତି ନାହିଁ । ବିବାହ ଦିନରେ ଦୀପ ପ୍ରଜ୍ୱଳିତ କରି ରଖିବାର କଛି ଅର୍ଥ ହିଁ ନାହିଁ । ଯେଉଁ ଘିଅ ଆମେ ଖାଇପାରିବା, ତାକୁ ନିଆଁରେ ପୋଡିବାର କିଛି ଆବଶ୍ୟକତା ନାହିଁ , ବରଂ ଏହାଦ୍ୱାରା ବାୟୁ ପ୍ରଦୂଷଣ ହିଁ ହୋଇଥାଏ । ବିବାହ ସମୟରେ ଏତେ ଭୋଜିଭାତର କ'ଣ ଆବଶ୍ୟକତା ରହିଛି ? ସେହିପରି ଏତେ ନୂଆ ଲୁଗାପଟା, ଗହଣା ଗାଣ୍ଠି କାହିଁକି କିଣାଯିବ ? ଏସବୁ ବୃଥା ଖର୍ଚ୍ଚ ।

ଏସବୁ ଅର୍ଥକୁ ଏପରି ବୃଥା କାର୍ଯ୍ୟରେ ବ୍ୟୟ ନକରି ସେସବୁକୁ ବରଂ କନ୍ୟାଙ୍କ ନାମରେ ସଞ୍ଚିତ କରିରଖିବା ଆବଶ୍ୟକ । ସେହି ଅର୍ଥ ଭବିଷ୍ୟତରେ ପିଲାଙ୍କର ସ୍ୱାସ୍ଥ୍ୟ ଓ ଶିକ୍ଷା କ୍ଷେତ୍ରରେ ବିନିଯୋଗ ହୋଇପାରିବ ।

ବିବାହ ପର୍ଯ୍ୟନ୍ତ କନ୍ୟା ତାଙ୍କ ଭାବି ସ୍ୱାମୀଙ୍କୁ ଦେଖି ନଥିବେ, କିମ୍ବା ବର ତାଙ୍କ ଭାବି ପତ୍ନୀଙ୍କୁ ଦେଖିବାର ସୁଯୋଗ ପାଇନଥିବେ । ପ୍ରାୟ ଶତକଡା ୯୯ ଭାଗ ଘଟଣାରେ ପୁଅ ଝିଅ ନା ପରସ୍ପରକୁ ସାକ୍ଷାତ କରିଥିବେ ନା କିଛି ଆଲୋଚନା କରିଥିବେ । ବାପା, ମା କେବଳ ପୁଅ ଝିଅଙ୍କର ଜାତକ ମେଳ କରିଥାନ୍ତି । ଏହା ସହିତ ଯୌତୁକ, ଶିକ୍ଷା, ପରିବାରର ମର୍ଯ୍ୟାଦା, ସଂପତ୍ତି ଇତ୍ୟାଦି ବିଷୟକୁ ପ୍ରାଧାନ୍ୟ

ଦେଇଥାନ୍ତି । ଏହି ସବୁ ବ୍ୟବସ୍ଥା କେତେ ଆଦିମ ଓ ଅହେତୁକ ତାହା ପେରିୟାର ଉଠାଇଛନ୍ତି ।

ପରନ୍ତୁ ଆତ୍ମମର୍ଯ୍ୟାଦା ବିବାହରେ ପୁଅଝିଅ ପରସ୍ପରକୁ ବିବାହ ପୂର୍ବରୁ ସାକ୍ଷାତ କରି ପରସ୍ପରର ମନୋଭାବ ବୁଝିବାକୁ ପ୍ରୟାସ କରିଥାନ୍ତି । ଯଦି ସେମାନେ ଅନୁଭବ କରନ୍ତି ସେମାନଙ୍କ ମଧ୍ୟରେ ମାନସିକ ସଂଗତି ନାହଁ, ତେବେ ସେମାନେ ସେମାନଙ୍କ ସଂପର୍କରେ ପୂର୍ଣ୍ଣଚ୍ଛେଦ ପକାନ୍ତି ଓ ଆଉ କେବେ ସାକ୍ଷାତ କରନ୍ତି ନାହିଁ । ବିବାହ କ୍ଷେତ୍ରରେ କୌଣସି ବାଧବାଧକତା ନଥାଏ । କିନ୍ତୁ ବାପା, ମାଙ୍କଦ୍ୱାରା ପ୍ରସ୍ତାବିତ ବିବାହ କ୍ଷେତ୍ରରେ ସେମାନଙ୍କ ଭିତରେ ଯାହା ବି ଅସଂଗତି ଥାଉ ନା କାହିଁକି ସେମାନେ ଏକାଠି ରହିବାକୁ ବାଧ୍ୟ ହୁଅନ୍ତି । ଆତ୍ମମର୍ଯ୍ୟାଦା ବିବାହରେ କୌଣସି ପୁରୋହିତଙ୍କର ଆବଶ୍ୟକତା ପଡେ ନାହିଁ ଯିଏ ମନ୍ତ୍ର ପଢ଼ି ବିବାହ କରାନ୍ତି । ଏଥିରେ କେହି ଯୌତୁକ ଦିଅନ୍ତି ନାହିଁ ବା ନିଅନ୍ତି ନାହିଁ ବା ବିଶେଷ ଖର୍ଚ୍ଚ କରିବାକୁ ପଡେ ନାହିଁ । ଦଂପତି ପରସ୍ପରକୁ ଫୁଲମାଳ ଦିଅନ୍ତି, ଯଦି ସେମାନେ ଚାହିଁବେ ସେମାନେ ପରସ୍ପରକୁ ମୁଦି ଦେଇପାରନ୍ତି । କନ୍ୟାଙ୍କ ବେକରେ ମଙ୍ଗଳସୂତ୍ର ଚାହିଁଲେ ପିନ୍ଧି ପାରନ୍ତି, ଯଦି ଏହା ନଚାହାନ୍ତି ଏହା ପିନ୍ଧିବା ଆବଶ୍ୟକ ନାହିଁ । ଏହା ଇଚ୍ଛାଧୀନ ବିଷୟ, ଏଥିରେ କିଛି ବାଧ ବାଧକତା ନଥାଏ ।

ଆତ୍ମମର୍ଯ୍ୟାଦା ବିବାହରେ ପୁଅ ଝିଅ ଏକ ସହମତି ପତ୍ରରେ ନିଜର ଦସ୍ତଖତ କରି ନିଜର ସମ୍ମତି ଜଣାନ୍ତି । ସେମାନେ ପରସ୍ପରର ଜୀବନ-ସାଥୀ ହୋଇ ରହିବାକୁ ସମ୍ମତି ପତ୍ରରେ ଦସ୍ତଖତ କରନ୍ତି । ପରସ୍ପର ସହ ଏକାଠି ରହିବାର ସମ୍ମତି ହିଁ ବିବାହ ବନ୍ଧନର ଉଦ୍ଦେଶ୍ୟ । ସେମାନେ ପରସ୍ପରକୁ ବୁଝିବାକୁ ପ୍ରୟାସ କରିବେ, ସହଯୋଗୀ ହୋଇ ଜୀବନ ଅତିବାହିତ କରିବେ, ସୁବିଧା ଅସୁବିଧାକୁ ଏକାଠି ସମ୍ମୁଖୀନ ହେବେ । ଏହି ଲକ୍ଷ୍ୟ ପାଇଁ ହିଁ ବିବାହ ବ୍ୟବସ୍ଥା ସୃଷ୍ଟି ହୋଇଛି, ଏହି କଥା ଅନେକ ବ୍ୟକ୍ତି ବୁଝିପାରନ୍ତି ନାହିଁ ।

ଲୋକମାନଙ୍କୁ କୁହାଯାଇଛି ଯେ ବିବାହ ସ୍ୱର୍ଗରେ ନିର୍ଦ୍ଧାରିତ ହୋଇଥାଏ ଓ ଈଶ୍ୱର କାହାର କିଏ ଜୀବନ ସାଥୀ ହେବ ତାହା ସ୍ଥିର କରିଥାନ୍ତି । ଲୋକମାନେ

ଏହି କାହାଣୀକୁ ବିଶ୍ୱାସ କରନ୍ତି । ପୁଅ ଝିଅଙ୍କ ଭିତରେ ମାନସିକ ସଂଗତି ରହିଛି କି ନାହିଁ ତାହା ବିଚାରକୁ ନନେଇ ସେମାନଙ୍କୁ ବିବାହ ବନ୍ଧନରେ ଆବଦ୍ଧ କରନ୍ତି । ବିବାହରେ ପୁରୋହିତର କ'ଣ ଆବଶ୍ୟକତା ରହିଛି ? ପୁରୋହିତ କିଏ ? ପ୍ରଥମ ସର୍ତ୍ତ ହେଉଛି ସେ ଜଣେ ଉଚ୍ଚଜାତିର ବ୍ୟକ୍ତି ଅର୍ଥାତ୍ ବ୍ରାହ୍ମଣ ହୋଇଥିବେ । ପୁରୋହିତର ଚରିତ୍ର ବା ବ୍ୟବହାର ସଂପର୍କରେ କାହାର କିଛି ଜାଣିବା ଆବଶ୍ୟକ ପଡ଼େ ନାହିଁ । ସେ ମନ୍ତ୍ର ସଂସ୍କୃତରେ ପଢ଼ନ୍ତି, ସେହି ମନ୍ତ୍ରର ଅର୍ଥ କେହି ବୁଝନ୍ତି ନାହିଁ । ସେ ଯାହା କରନ୍ତି କେହି ବୁଝନ୍ତି ନାହିଁ ତେବେ ତାଙ୍କର କାର୍ଯ୍ୟ ପାଇଁ ଅର୍ଥ ଓ ଅନ୍ୟାନ୍ୟ ସାମଗ୍ରୀ ଦାବି କରନ୍ତି । ଏହା ହିଁ ପୁରୋହିତମାନଙ୍କର କାର୍ଯ୍ୟ ।

ଆମେ ଜଣେ ପୁରୋହିତଙ୍କୁ ଡାକୁ କାରଣ ସେ ଜଣେ ଉଚ୍ଚଜାତିର ବ୍ୟକ୍ତି । ସେ ଜଣେ ବିଜ୍ଞ ବା ଶିକ୍ଷିତ ବ୍ୟକ୍ତି ବୋଲି ଆମେ ତାଙ୍କୁ ଡାକିନଥାଉ । ଆମ ଘରେ ରନ୍ଧା ହୋଇଥିବା ଖାଦ୍ୟ ସେ ଖାଇବେ ନାହିଁ । ତେଣୁ ଆମେ ତାଙ୍କୁ ଅନ୍ୟାନ୍ୟ ଖାଦ୍ୟ ପଦାର୍ଥ ଦେଉ । ଏହା ଦ୍ୱାରା ଆମେ ନିଜକୁ ନ୍ୟୁନ କରୁନାହେଁ କି ? ଆମେ ଭାବୁ ଯେ ସେ ଯେଉଁ ମନ୍ତ୍ର ପଢ଼ନ୍ତି, ତାର କିଛି ସ୍ୱତନ୍ତ୍ର ଶକ୍ତି ରହିଛି ଓ ତାହା ଦ୍ୱାରା ଆମର ମଙ୍ଗଳ ହେବ । ମନ୍ତ୍ରର କୌଣସି ସ୍ୱତନ୍ତ୍ର କ୍ଷମତା ନାହିଁ । ଏହା ଦ୍ୱାରା ଆମେ କେବଳ ଆମର ଆତ୍ମସମ୍ମାନ ହରାଉଛେ ।

କେବଳ ସେତିକି ନୁହେଁ, ନବ ଦଂପତି ପୁରୋହିତଙ୍କର ପାଦତଳେ ପଡ଼ିବେ ଓ ତାଙ୍କର ଆଶୀର୍ବାଦ ନେବେ । ଆମେ ପୁରୋହିତଙ୍କୁ ଅର୍ଥ, ବସ୍ତ୍ର, ଖାଦ୍ୟ ଦେଉ । ସେ ବରକୁ ଜଣେ ଦେହଜୀବୀଙ୍କର ସନ୍ତାନ ଓ କନ୍ୟାକୁ ଦେହଜୀବୀ ବୋଲି ବିଚାର କରନ୍ତି । ଆର୍ଯ୍ୟମାନଙ୍କର ତାମିଲନାଡୁକୁ ଆଗମନ ପୂର୍ବରୁ ବିବାହ କୌଣସି ପୁରୋହିତଦ୍ୱାରା ସମାପନ କରାଯାଉନଥିଲା । ପୁରୋହିତ ମନ୍ତ୍ର ଆମର ପରଂପରା ନୁହେଁ । ଆମେ ଯେତେବେଳେ ଏ ସଂପର୍କରେ ପ୍ରଶ୍ନ ଉଠାଇଲୁ ନାହିଁ, ପୁରୋହିତ ଓ ମନ୍ତ୍ର ପ୍ରଥାର ପ୍ରଚଳନ ହେଲା । ଏସବୁର କିଛି ଆବଶ୍ୟକତା ନାହିଁ ।

ଆମ ମନରେ ଧାରଣା ସୃଷ୍ଟି କରାଗଲା ଯେ ଏକ ବିବାହ ଜଣେ ବ୍ରହ୍ମଣଦ୍ୱାରା କରାଗଲେ ଏହା ପବିତ୍ର ହେବ । ବ୍ରାହ୍ମଣଦ୍ୱାରା ମନ୍ତ୍ର ପଢ଼ାଯାଇ ଯଜ୍ଞ କରାଯାଇ

ବିବାହ କଲେ ବୈବାହିକ ଜୀବନ ମଙ୍ଗଳପ୍ରଦ ହେବ । ଏହି କାର୍ଯ୍ୟ ଆମର ଆତ୍ମସମ୍ମାନକୁ ନ୍ୟୂନ ବା ପରାହତ କରିଛି ।

ବିବାହ ସହିତ ଈଶ୍ୱରବାଦ ବା ନିରୀଶ୍ୱରବାଦର ସମ୍ବନ୍ଧ ନାହିଁ । ନିରୀଶ୍ୱରବାଦ ହେଉଛି ଏକ ବୈଇରିକ ମନୋଭାବ । ଏହା କୌଣସି ଧର୍ମ ନୁହେଁ । ଈଶ୍ୱରଙ୍କ ନାମରେ ଲୋକମାନେ ବହୁ କଥା ଅହେତୁକ ଭାବେ ବିଶ୍ୱାସ କରନ୍ତି । ଏହା ଫଳରେ ଆମେ ଅର୍ଥ ହରାଇବା ସହ ଆମର ଆତ୍ମସମ୍ମାନ ହରାଇଥାଉ ।

ସ୍ୱାମୀ ସ୍ତ୍ରୀ ମଧ୍ୟରେ ଥିବା ମାନବିକ ସଂପର୍କକୁ ପୁରାଣ ନଷ୍ଟ କରିବା ଯଥାର୍ଥ ନୁହେଁ । କେଉଁ ବାପା ତାଙ୍କର ଝିଅ ନିଜ କୁଷ୍ଠରୋଗାକ୍ରାନ୍ତ ସ୍ୱାମୀଙ୍କୁ ଏକ ଝୁଡିରେ ତାଙ୍କ ଦେହଜୀବୀଙ୍କ ପାଖକୁ ନେବାକୁ ଚାହିଁବେ ! ନାଲାୟିନୀ କାହାଣୀରେ ଏହାର ବର୍ଣ୍ଣନା ରହିଛି । ହରିଶ୍ଚନ୍ଦ୍ର କାହାଣୀରେ ହରିଶ୍ଚନ୍ଦ୍ର ନିଜ ପତ୍ନୀ ଚନ୍ଦ୍ରମତୀଙ୍କୁ ତାଙ୍କ ଋଣ ପରିଶୋଧ କରିବା ପାଇଁ ଅନ୍ୟକୁ ବିକ୍ରି କଲେ । କେଉଁ ବାପା ନିଜ ଝିଅକୁ ଅନ୍ୟ ଜଣେ ପୁରୁଷଙ୍କୁ ତାଙ୍କ ଜ୍ୱାଇଁ ବିକ୍ରିକରିବା ଚାହିଁବେ ! ମହାଭାରତରେ ପାଂଚାଳି ପାଞ୍ଚ ଜଣ ପତିଙ୍କ ସହ ରହିବାର ବର୍ଣ୍ଣନା ରହିଛି । କେଉଁ ବାପା ତାଙ୍କ ଝିଅ ପାଞ୍ଚ ଜଣ ସ୍ୱାମୀଙ୍କ ସହ ରହିବାକୁ ଅନୁମତି ଦେବେ ! ଆମର ପୁରାଣମାନ ଗୁଡିଏ ବାଜେ କଥାରେ ଭରପୁର । ସେ ସବୁକୁ ପ୍ରତ୍ୟାଖ୍ୟାନ କରିବା ବା ଅଗ୍ନିସଂଯୋଗ କରିବା ଦରକାର । କିନ୍ତୁ ଆମର ଲୋକମାନେ ଏସବୁ କାହାଣୀକୁ ପଢିବାରେ ଆଗ୍ରହ ଦେଖାନ୍ତି ଓ ତାକୁ ସ୍ମୃତିରେ ରଖନ୍ତି । ଏହି ସବୁ କାହାଣୀରୁ ଆମେ କ'ଣ ନୀତି ଶିକ୍ଷା ପାଇବା ?

ପେରିୟାର ବିବାହ ବ୍ୟବସ୍ଥାରେ ଏକ ବଡ ସଂସ୍କାର ଆଣିବାକୁ ପ୍ରୟାସ କରିଥିଲେ ଯାହାଦ୍ୱାରା ଲୋକମାନେ କୌଣସି ଖର୍ଚ୍ଚାନ୍ତ ହେବେ ନାହିଁ । ସେ ଯୁଆଡେ ଯାଉଥିଲେ ଏ ବିଷୟରେ ଲୋକମାନଙ୍କୁ ସଚେତନ କରାଉଥିଲେ । ପ୍ରାୟ ଶତକଡା ନବେ ଭାଗ ଘଟଣାରେ ଲୋକମାନେ ବିବାହ ବେଳେ ନାନା ଧାର ଉଧାର ବା କରଜ କରିଥାନ୍ତି । ଆମର ଲୋକମାନେ ବିବାହ ଉତ୍ସବରେ

ନିଜର ଗୌରବ ଦେଖାଇବାକୁ ଚାହାନ୍ତି ଓ ଅନ୍ୟମାନଙ୍କୁ ଭୋଜି ଦେଇ ଖୁସି କରିବାକୁ ଇଚ୍ଛାକରନ୍ତି । ଅନେକ ପରିବାର ଝିଅ ବିବାହପରେ ବହୁ ବର୍ଷ ପର୍ଯ୍ୟନ୍ତ ଅଭାବ ଅସୁବିଧା ଭିତରେ ରହି ଋଣ ସୁଝିବାରେ ବ୍ୟସ୍ତ ରହନ୍ତି । ବିବାହ ବେଳେ ଆପଣ ଯାହା ଖାଦ୍ୟ ପରିବେଷଣ କରନ୍ତୁ ବା ଯେପରି ଆଡମ୍ବରରେ ଏହା ପାଳନ କରନ୍ତୁ ଲୋକମାନେ ଏ ବିଷୟରେ ମାତ୍ର ଚାରିଦିନ ଆଲୋଚନା କରିବେ । ଏହାପରେ ଆପଣ ଏ ସଂକ୍ରାନ୍ତରେ କିଛି ଶୁଣିବେ ନାହିଁ । ଏଥିପାଇଁ କାହିଁକି ଏତେ ଖର୍ଚ୍ଚ କରିବେ ? ଆପଣ କେବଳ ନିଜ ପାଇଁ ସମସ୍ୟା ଡାକି ଆଣୁଛନ୍ତି । ବିବାହର ଖର୍ଚ୍ଚ ଅନେକ ପରିବାରକୁ ଆର୍ଥିକ ସ୍ତରରେ ତଳିତଳାନ୍ତ କରିଦେଉଛି । ଯେଉଁ କରଜ ହୋଇଥାଏ ବହୁ ବର୍ଷ ପର୍ଯ୍ୟନ୍ତ ତାକୁ ପରିଶୋଧ କରିବାକୁ ପଡେ । ଲୋକମାନେ କାହିଁକି ଏତେ ଟଙ୍କା କରଜ କରି ବିବାହରେ ଖର୍ଚ୍ଚ କରିବେ ତାହା ବୁଝିପାରନ୍ତି ନାହିଁ । ଏ ପ୍ରକାର ଖର୍ଚ୍ଚକୁ ପେରିୟାର ସମାଲୋଚନା କରିଛନ୍ତି ।

ଆତ୍ମମର୍ଯ୍ୟାଦା ବିବାହରେ ଜାତି, ଗୋତ୍ର ବିଷୟରେ ଆମେ କେବେ କିଛି ପ୍ରଶ୍ନ କରିନଥାଏ । ପୁଅ ଝିଅ କେବଳ ସେମାନଙ୍କର ସଙ୍ଗତିକୁ ଦେଖିଥାନ୍ତି । ଆତ୍ମମର୍ଯ୍ୟାଦା ବା ବିବାହରେ ଶୁଭକାଳ, ଶୁଭ ସମୟ ଇତ୍ୟାଦି ବିଷୟରେ ଗୁରୁତ୍ୱ ଦିଆଯାଉନଥିବାରୁ ଏଥିରେ ବହୁ ଲୋକ ଯୋଗଦେଇ ପାରନ୍ତି । ପୁରୋହିତ ପରିଚାଳିତ ବିବାହରେ ସେ ଶୁଭ ବେଳାକୁ ପ୍ରାୟ ୪.୩୦ ରୁ ୬.୩୦ ଭିତରେ ପ୍ରାତଃକାଳରେ ସ୍ଥିରକରିବେ । ଫଳରେ ବାହାରୁ ଆସୁଥିବା ଲୋକମାନଙ୍କୁ ରାତିସାରା ଉଜାଗର ରହିବାକୁ ହେବ । ସେହି ସମୟରେ ବିନା ସ୍ନାନରେ ସେମାନଙ୍କୁ ଏଥି ପାଇଁ ପ୍ରସ୍ତୁତ ରହିବାକୁ ହେବ । ଏ ସବୁ ପୁରୋହିତ ଆୟୋଜିତ ବିବାହରେ ବାସ୍ତବ ଅସୁବିଧା । ଏସବୁକୁ ପେରିୟାର ବିଭିନ୍ନ ସ୍ଥାନରେ ଲୋକମାନଙ୍କୁ ବୁଝାଇଥାନ୍ତି ।

ଆତ୍ମମର୍ଯ୍ୟାଦା ବିବାହରେ ମହିଳାମାନଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯାଏ । କିନ୍ତୁ ରକ୍ଷଣଶୀଳ ବିବାହରେ ମହିଳାମାନଙ୍କୁ 'ଦାସୀ' (slave) ଭାବରେ ଗ୍ରହଣ କରାଯାଏ । ପାରଂପରିକ ରକ୍ଷଣଶୀଳ ବିବାହରେ ଥରେ ଜଣେ ଝିଅ ବିବାହ କରିଗଲା ପରେ ସେ ନିଜ ସ୍ୱାମୀକୁ ଛାଡପତ୍ର ଦେଇପାରିବ ନାହିଁ, ଅନ୍ୟ ଜଣଙ୍କୁ ଛାଡପତ୍ର ଦେଇ

ବିବାହ କରିପାରିବ ନାହିଁ, ନିଜର ରୁଚି ଅନୁସାରେ ସ୍ୱାଧୀନ ଭାବେ ବା ଆତ୍ମମର୍ଯ୍ୟାଦାର ସହ ବଞ୍ଚିପାରିବ ନାହିଁ । ରକ୍ଷଣଶିଳ ପାରଂପରିକ ବିବାହରେ ପୁରୁଷ ହେଉଛି ପ୍ରଭୁ, ନାରୀ ହେଉଛି ଚାକରାଣୀ । ଏହି ବ୍ୟବସ୍ଥାର ପରିବର୍ତ୍ତନ କରିବା ପାଇଁ ପେରିୟାର ଆତ୍ମମର୍ଯ୍ୟାଦା ବିବାହକୁ ପ୍ରାଧାନ୍ୟ ଦେଇଥିଲେ । ଏହି ବିବାହରେ ମହିଳାମାନଙ୍କର ସ୍ୱାଧୀନତା ରହିବ ଓ ସେମାନେ ନିଜର ଚିନ୍ତାରେ, କାର୍ଯ୍ୟରେ ମୁକ୍ତ ରହିବେ ।

ପାରଂପରିକ ବିବାହରେ ମହିଳାଙ୍କ ବେକରେ ଏକ ମଙ୍ଗଳସୂତ୍ର ବନ୍ଧାଯାଏ ଯାହା ତାଙ୍କୁ ତାଙ୍କ ସ୍ୱାମୀଙ୍କ ପାଖରେ ସବୁଦିନ ପାଇଁ ପଘାରେ ବାନ୍ଧିକରି ରଖିବା ସଦୃଶ ଘଟଣା ଆଟେ । କେତେକ ବ୍ୟକ୍ତିଙ୍କର ଯୁକ୍ତି ହେଉଛି ଯେ ମଙ୍ଗଳ ସୂତ୍ର ବେକରେ ଲଗାଇବାର ଅର୍ଥ ହେଉଛି ମଙ୍ଗଳସୂତ୍ର ମହିଳାଙ୍କର ବିବାହର ସୂଚନା ଦିଏ ଓ ସେ ଯେ ଜଣେ ବ୍ୟକ୍ତିଙ୍କର ପତ୍ନୀ ଏହା ଦର୍ଶାଏ । ଯଦି ଏହା କାରଣ ହୁଏ ତେବେ ପୁରୁଷଙ୍କ ବେକରେ ଏକ ମାଳି ପିନ୍ଧିବା ଦରକାର ଯେଉଁଥିରୁ ସେ ବିବାହିତ ଓ ତାଙ୍କର ଯେ ଜଣେ ପତ୍ନୀ ରହିଛନ୍ତି ତାହାର ସୂଚନା ମିଳିବ । ଜଣେ ପୁରୁଷ ତାଙ୍କ ସ୍ତ୍ରୀଙ୍କର ଦେହାନ୍ତ ପରେ ଆଉ ଜଣେ ମହିଳାଙ୍କୁ ବିବାହ କରିପାରୁଛନ୍ତି । ତେବେ ଜଣେ ମହିଳାଙ୍କ ସ୍ୱାମୀଙ୍କର କୌଣସି କାରଣରୁ ମୃତ୍ୟୁ ହେଲେ, ମହିଳା ଜଣଙ୍କ ବିବାହ କରିବା ପାଇଁ ଏହି ସୁଯୋଗ ପାଉନାହାନ୍ତି । ସୁତରାଂ ମଙ୍ଗଳ ସୂତ୍ର ହେଉଛି ଏକ ଦାସତ୍ୱର ପ୍ରତୀକ । ଆତ୍ମମର୍ଯ୍ୟାଦା ବିବାହ କ୍ଷେତ୍ରରେ ମଙ୍ଗଳସୂତ୍ରକୁ ବାଦ୍ ଦିଆଯାଇଛି । ମହିଳାଙ୍କ ବେକରେ ମଙ୍ଗଳସୂତ୍ର ବାନ୍ଧିବା ଭାବଧାରକୁ ପେରିୟାର ସର୍ବଦା ବିରୋଧ କରିଛନ୍ତି ।

ବିବାହ କ୍ଷେତ୍ରରେ ସହମତି ଆବଶ୍ୟକ ଓ ଏହାର ପଂଜୀକରଣ ଦରକାର । ବିବାହ ହେଉଛି ଏକ ଶପଥ ଯେଉଁଠି ଦୁଇ ଜଣ ପ୍ରାପ୍ତବୟସ୍କ ପୁରୁଷ ମହିଳା ଜୀବନ ସାଥୀ ହୋଇ ରହିବାକୁ ନିଷ୍ପତ୍ତି କରିଥାନ୍ତି । ଏଥିରେ କୌଣସି ଈଶ୍ୱରୀୟ ବ୍ୟବସ୍ଥା ସଂପୃକ୍ତ ନୁହେଁ । ଏହାକୁ ପଂଜୀକରଣ କରିବା ଦ୍ୱାରା ଏହା ଆଇନଗତ ଦୃଷ୍ଟିରୁ ବୈଧ ହୋଇଥାଏ । ଆତ୍ମମର୍ଯ୍ୟାଦା ବିବାହଦ୍ୱାରା ମହିଳା ବା ପୁରୁଷ କେହି

କାହାର ଦାସ ହୁଅନ୍ତି ନାହିଁ । ଏଥିରେ କେହି ଅନ୍ୟଠାରୁ ଅର୍ଥ ବା ଅଳଙ୍କାର ଆଶାକରି ନଥାନ୍ତି । ଲୋକମାନେ ଯେତେବେଳେ ବିବାହରେ ପୁରୋହିତ ବ୍ୟବସ୍ଥାର ଉଚ୍ଛେଦ କରିବେ, ବିବାହ ସହିତ ସଂପୃକ୍ତ ଅନେକ ଗୁଡିଏ ମନ୍ଦ ପ୍ରଥାର ମଧ୍ୟ ବିଲୋପ ହେବ । ତେବେ ଆତ୍ମମର୍ଯ୍ୟାଦା ବିବାହ ୧୯୬୮ ପର୍ଯ୍ୟନ୍ତ ବୈଧାନିକ ସ୍ୱୀକୃତି ପାଇନଥିଲା । ଏହା ସତ୍ତ୍ୱେ ଲୋକମାନେ କିଛି ଆତ୍ମମର୍ଯ୍ୟାଦା ବିବାହ କରୁଥିଲେ ।

## ଆତ୍ମମର୍ଯ୍ୟାଦା ବିବାହ ଆଇନ

୧୯୬୭ ମସିହା ନିର୍ବାଚନରେ ଡିଏମକେ ରାଜନୈତିକ ଦଳଟି ବହୁମତ ପାଇ ନିର୍ବାଚିତ ହେଲା । ତାମିଲନାଡୁର ମୁଖ୍ୟମନ୍ତ୍ରୀ ଆନା ଦୁରାଇ ହେଲେ । ମୁଖ୍ୟମନ୍ତ୍ରୀ ଆତ୍ମମର୍ଯ୍ୟାଦା ବିବାହକୁ ବୈଧାନିକ ସ୍ୱୀକୃତି ଦେଇ ଏହାକୁ ପେରିୟାରଙ୍କୁ ଭେଟି ଦେବାକୁ ନିଷ୍ପତ୍ତି କରିଥିଲେ । ମୁଖ୍ୟମନ୍ତ୍ରୀ ହେବା ପରେ ସେ ତାଙ୍କର ନିଷ୍ପତ୍ତିକୁ କାର୍ଯ୍ୟକାରୀ କଲେ ।

ଆତ୍ମମର୍ଯ୍ୟାଦା ବିବାହଜନିତ ଆଇନଟିର ଚିଠାଟି ସେ ହାଇକୋର୍ଟର ବିଚାରପତି ଓ କେତେକ ଆଇନ ବିଶାରଦଙ୍କ ସାହାଯ୍ୟରେ ପ୍ରସ୍ତୁତ କରିଥିଲେ । ସମସ୍ତେ ସେହି ଡ୍ରାଫ୍‌ଟଟିକୁ ସ୍ୱୀକୃତି ଦେଇଥିଲେ । କେ. ବୀରମଣି ସେହି ଚିଠା ବିଲ୍‌ଟିକୁ ନେଇ ପେରିୟାରଙ୍କ ପାଖକୁ ଗଲେ । ସେତେବେଳେ ପେରିୟାର ଚେନାଇଠାରେ ଏକ ସାଧାରଣ ହସ୍ପିଟାଲରେ ଚିକିତ୍ସିତ ହେଉଥିଲେ । ପେରିୟାର ଚିଠା ବିଲଟିକୁ ଧୀରେ ଧୀରେ ତାଙ୍କ ପାଖରେ ପଢ଼ିବାକୁ ବୀରମଣିଙ୍କୁ କହିଲେ । ସେଥିରେ ଉଲ୍ଲେଖ ଥିଲା – "ଫୁଲମାଳ ଆଦାନ ପ୍ରଦାନ ଓ ମଙ୍ଗଳସୂତ୍ର ପିନ୍ଧାଇ ବିବାହ ସଂପନ୍ନ କରାଯିବ ।" ପେରିୟାର ସେଥିରେ ଏକ ସଂଶୋଧନ କଲେ । ସେ କହିଲେ – "ଫୁଲମାଳ ଆଦାନପ୍ରଦାନ କିମ୍ବା ମଙ୍ଗଳସୂତ୍ର ପିନ୍ଧାଇ ବିବାହ ସମାପ୍ତ ହେବ ।" ବୀରମଣି ଡ୍ରାଫ୍ଟଟିକୁ ପେରିୟାରଙ୍କୁ ଦେଖାଇ ଓ ତାଙ୍କ ମତ ନେଇ ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ବାସଭବନରେ ଦେଖାଇଲେ । ଆନା ପଚାରିଲେ –

ଚିଠାରେ ସେ କିଛି ପରିବର୍ତ୍ତନ କରିଛନ୍ତି କି ? ବୀରମଣି କହିଲେ – ପେରିୟାର 'ଓ' ସ୍ଥାନରେ 'କିମ୍ବା' ଉଲ୍ଲେଖ କରିଛନ୍ତି ।

ଏହା ଶୁଣି ଆନାଦୁରାଇ କହିଲେ – ଆପଣ ଏମ୍. ଏ., ଏଲ.ଏଲ.ବି । ମୁଁ ହେଉଛି ଏମ. ଏ. । ଏସବୁ ଡିଗ୍ରୀ ସତ୍ତ୍ୱେ ଆମେ ଏହି ପରିବର୍ତ୍ତନଟିକୁ ଧରିପାରି ନଥିଲେ । କିନ୍ତୁ ପେରିୟାର ତାଙ୍କର ସାଧାରଣ ଜ୍ଞାନ ପ୍ରୟୋଗକରି ଏହି ପରି ଏକ ବଡ ପରିବର୍ତ୍ତନ କଲେ ।

ବିଧାନ ସଭାରେ ଏହି ବିଲ୍‌ର ଚିଠାଟି ଆଲୋଚନା ପରେ ୧୭.୧.୧୯୬୮ରେ ଗୃହୀତ ହୋଇଥିଲା । ଏହା ପରେ ଏହାକୁ ରାଷ୍ଟ୍ରପତିଙ୍କ ପାଖକୁ ପଠାଯାଇଥିଲା । ଏଥିରେ ରାଷ୍ଟ୍ରପତିଙ୍କର ଦସ୍ତଖତ ପରେ ଏହା ସରକାରଙ୍କ ଗେଜେଟରେ ୨୦ ମାର୍ଚ୍ଚ ୧୯୬୮ରେ ପ୍ରକାଶିତ ହୋଇ ସରକାରୀ ନିୟମ ହେଲା । ଏହି ଆଇନଟିକୁ ଅତୀତରୁ କାର୍ଯ୍ୟକାରୀ କରିବା ନେଇ ବିଲ୍‌ରେ ବିଧାନ ଥିବା ପୂର୍ବର ସମସ୍ତ ଆତ୍ମମର୍ଯ୍ୟାଦା ବିବାହ ଆଇନ ଦୃଷ୍ଟିରେ ବୈଧ ବିବେଚିତ ହେଲା ।

## ଅନ୍ତର୍ଜାତି ବିବାହ

ହିନ୍ଦୁ ଦେବତାମାନଙ୍କ ମଧ୍ୟରେ ଅନ୍ତର୍ଜାତି ବିବାହ ଥିଲା ବୋଲି ପୁରାଣମାନଙ୍କରୁ ଜଣାପଡେ । ପୂର୍ବରୁ ଋଷି ଓ ସନ୍ଥମାନେ ମଧ୍ୟ ଅନ୍ତର୍ଜାତି ବିବାହ କରିବା ସାଧାରଣ ଘଟଣା ଥିଲା । ତେଣୁ ଅନ୍ତର୍ଜାତି ବିବାହ ବ୍ୟବସ୍ଥା ଆମ ପୁରାଣରେ ରହିଥିବା ଜଣାଯାଏ ।

ଯେତେବେଳେ ଡ.ପି. ସୁବାରାୟନ ମୁଖ୍ୟମନ୍ତ୍ରୀ ଥିଲେ ତାଙ୍କର ଜଣେ ମନ୍ତ୍ରୀ ବେଲାଲର ଜାତିର ଲୋକ ଥିଲେ । ସେ ଜଣେ ବ୍ରାହ୍ମଣ ଜାତିର ମହିଳାଙ୍କୁ ୧୯୧୫ରେ ବିବାହ କରିଥିଲେ । ପି.ରାଜଗୋପାଳଚାରୀ ଆଇ.ସି.ଏସ୍. ଅଧିକାରୀ ଥିଲେ ବ୍ରାହ୍ମଣ । ସେ ଜଣେ ନାୟାର ଜାତିର ମହିଳାଙ୍କୁ ବିବାହ କରିଥିଲେ । ହିନ୍ଦୁ ଧର୍ମ ଦେବୋତ୍ତର ବୋର୍ଡର ଚେୟାରମାନ ସୂର୍ଯ୍ୟ ରାଓ ନାଇଡୁଙ୍କ କନ୍ୟା ଆର.

ଲକ୍ଷ୍ମୀ ଦେବୀ ପୋଲିସ ବିଭାଗ ଡେପୁଟି କମିସନର ଥିବା ମୁସଲିମ ଯୁବକ ଜଇନୁଦ୍ଦିନଙ୍କୁ ବିବାହ କରିଥିଲେ । ନୀଳଗନ ଶାସ୍ତ୍ରୀଙ୍କ ଝିଅ ରୁକ୍ମଣୀ ଜଣେ ଇଉରୋପୀୟଙ୍କୁ ବିବାହ କରିଥିଲେ । ବ୍ରାହ୍ମଣ ମହିଳା ସରୋଜିନୀ ଦେବୀ ଡ. ଗୋବିନ୍ଦରାଜୁଲୁ ନାଇଡଙ୍କୁ ୧୯୦୦ ରେ ବିବାହ କରିଥିଲେ । ଏହିପରି ସମାଜର ଉଚ୍ଚ ବର୍ଗର ପରିବାରମାନଙ୍କରେ ପୂର୍ବରୁ ଅନ୍ତର୍ଜାତି ବିବାହମାନ ଅନୁଷ୍ଠିତ ହୋଇଥିଲା ।

## ଯୌତୁକ :

ବ୍ରାହ୍ମଣମାନଙ୍କଠାରୁ କେତେ ଗୁଡିଏ ମନ୍ଦ ଅଭ୍ୟାସ ତାମିଲମାନଙ୍କ ପାଖକୁ ଆସିଛି । ତାମିଲମାନେ ପୁଷ୍ଟିକର ରାଗି ଓ ବାଜ୍ରା ନ ଖାଇ ପୁଷ୍ଟିହୀନ ପାଲିସ ଚାଉଳର ଭାତ ଖାଇଲେ । ପୂର୍ବରୁ ତାମିଲମାନେ ବହୁତ ଶାରୀରିକ ଶ୍ରମ କରୁଥିଲେ, ସଂପ୍ରତି ସେମାନେ ଶରୀର -ଶ୍ରମକୁ ନ୍ୟୂନ ଦୃଷ୍ଟିରେ ଦେଖୁଛନ୍ତି । ତେବେ ବ୍ରାହ୍ମଣମାନଙ୍କର କେତେକ ସୁଅଭ୍ୟାସ ମଧ୍ୟ ରହିଛି । ପ୍ରାତଃକାଳରେ ଶଯ୍ୟା ତ୍ୟାଗ କରିବା, ଶିକ୍ଷାଲାଭ ପାଇଁ ଆଗ୍ରହ ରଖିବା ଇତ୍ୟାଦି ସେମାନଙ୍କର କେତେକ ସୁଅଭ୍ୟାସ । ସେମାନଙ୍କର ଏହି ଭଲ କଥାକୁ ସମସ୍ତେ ଅନୁକରଣ କରିନାହାନ୍ତି , ମାତ୍ର କିଛି ଲୋକ ଅନୁକରଣ କରିଛନ୍ତି ।

ବ୍ରାହ୍ମଣମାନଙ୍କଠାରୁ ଆସିଥିବା ଏକ ମନ୍ଦ ପ୍ରଥା ହେଉଛି ଯୌତୁକ ପ୍ରଥା । ଯଦି ଜଣେ ବ୍ୟକ୍ତି କିଛି ଲକ୍ଷ ଟଙ୍କା ସଂଚୟକରି ରଖିଛନ୍ତି ଓ ତାଙ୍କର ତିନିଟି ଝିଅ ରହିଛନ୍ତି ତେବେ ଝିଅମାନଙ୍କର ବିବାହ ସାରିଲାପରେ ତଙ୍କ ପାଖରେ ଯୌତୁକ ଦେଇ ଆଉ କିଛି ସଂଞ୍ଚୟ ନଥିବ । ସରକାର ଯୌତୁକ ସଂପର୍କୀୟ କେତେକ ଆଇନ କରିଛନ୍ତି । ଯୌତୁକ ଦେବା ବା ନେବାକୁ ଦୋଷାବହ କରାଯାଇଛି । ଏଥିପାଇଁ ଯୌତୁକ ନିରୋଧ ଆଇନ ରହିଛି । ତେବେ ସେହି ଆଇନକୁ ସମସ୍ତେ ମାନନ୍ତି ନାହିଁ, ଯୌତୁକ ନେବା ଏକ ସାଧାରଣ ଧାରାରେ ପଡିଯାଇଛି । ଆତ୍ମସମ୍ମାନ ଥିବା ଯୁବବର୍ଗ ଯୌତୁକ ନେବାକୁ ମନାକରିବା ଆବଶ୍ୟକ । ଯେଉଁମାନେ ଯୌତୁକ ଦାବି କରୁଛନ୍ତି ସେମାନଙ୍କୁ ଶ୍ୱଶୁରଘର ଭିକାରି ମନେକରନ୍ତି । ଯୁବକମାନେ ବାପା

ମା'ଙ୍କର ଦେହାନ୍ତ ପର୍ଯ୍ୟନ୍ତ ମଧ୍ୟ କୌଣସି ସଂପତ୍ତି ଆଶାକରିବା ଠିକ୍ ନୁହେଁ। ସେ ପର୍ଯ୍ୟନ୍ତ ସେମାନେ ନିଜ ରୋଜଗାର ଭିତରେ ନିଜ ଜୀବନ ନିର୍ବାହକରିବା ଦରକାର । ସେହିପରି ଶ୍ୱଶୁରଘର ଠାରୁ ଯୌତୁକ ଆଶାକରିବା ମଧ୍ୟ ଏକ ଗର୍ହିତ କାର୍ଯ୍ୟ ।

ଉତ୍ତରାଧିକାର ନିୟମାନୁଯାୟୀ ମହିଳାମାନେ ବାପା ମାଙ୍କର ସଂପତ୍ତିରୁ ମଧ୍ୟ ଭାଗ ପାଇବେ । ଜଣେ ମହିଳା ଯେଉଁ ଭାଗ ପାଇବେ ତାହା ତାଙ୍କ ସ୍ୱାମୀ ମଧ୍ୟ ଉପଭୋଗ କରିପାରିବେ। ଏହା ଜାଣିବାପରେ ଜଣେ କାହିଁକି ଶ୍ୱଶୁରଘରୁ ଯୌତୁକ ଆଶାକରିବେ । ବିବାହ ସମୟରେ ଶ୍ୱଶୁର ଘରୁ ଟଙ୍କା, ସୁନା, ଗାଡି ଓ ଅନ୍ୟାନ୍ୟ ଜିନିଷ ଆଶାକରିବା ଜଣେ ବ୍ୟକ୍ତିଙ୍କ ପାଇଁ ଅସମ୍ମାନଜନକ । ଜଣେ ମହିଳାଙ୍କୁ ବିବାହ କରିବା ଯୋଗୁଁ ଜଣେ ଶ୍ୱଶୁର ଘରଠାରୁ ଯୌତୁକ ନେବା ବା ଦାବିକରିବା ଯଥାର୍ଥ ନୁହେଁ । ଏହା ସମ୍ମାନଜନକ କାର୍ଯ୍ୟ ନୁହେଁ । ଯୌତୁକ କାରଣ ଯୋଗୁ ହଜାର ହଜାର ଝିଅ ବିବାହ କରିପାରୁ ନାହାନ୍ତି । ଜାତି, ଧର୍ମ ବାହାରକୁ ଯାଇ ବିବାହ କରିବା ଯୁବକମାନେ ସହଜ ମନେକରୁ ନାହାନ୍ତି । ତେବେ ଯୌତୁକ ଦାବି ନକରିବା ସେମାନଙ୍କର ନିୟନ୍ତ୍ରଣର ବିଷୟ । ପିଲାମାନଙ୍କର ଜୀବନରେ ଭଲ କାର୍ଯ୍ୟ କରିବା ପାଇଁ ସାହସ ରହିବା ଆବଶ୍ୟକ । ବିଚାରଶୀଳ ହୋଇ କାର୍ଯ୍ୟ କରିବା ଦରକାର । ସେମାନେ ଭୀରୁ ନହୋଇ ଭଲ କାର୍ଯ୍ୟରେ ନିଜର ସାହସ ବ୍ୟକ୍ତକରିବା ଆବଶ୍ୟକ ।

# ୨୮. ଶ୍ରେଣୀଗତ ସରକାରୀ ନିର୍ଦ୍ଦେଶର ପଥ ପ୍ରଦର୍ଶକ

ଦକ୍ଷିଣ ଭାରତୀୟ ବିକାଶ ସଂଘ (South Indian Welfare Association)ଗଠନ ପୂର୍ବରୁ ଜଷ୍ଟିସ ପାର୍ଟିର ଏହା ହିଁ ଆଭିମୁଖ୍ୟ ରହିଥିଲା । ସମସ୍ତ ସରକାରୀ କର୍ମସଂସ୍ଥାନ କ୍ଷେତ୍ରରେ କେବଳ ବ୍ରାହ୍ମଣମାନେ ହିଁ ରହିଥିଲେ । ଏହାର କାରଣ ହେଉଛି ସେମାନେ ଶିକ୍ଷା କ୍ଷେତ୍ରରେ ଅଗ୍ରଗାମୀ ଥିଲେ ଓ ଆବଶ୍ୟକୀୟ ଯୋଗ୍ୟତାର ଅଧିକାରୀ ଥିଲେ । ଏହି ସ୍ଥିତିରେ ପରିବର୍ତ୍ତନ ଆଣିବାକୁ ଜଷ୍ଟିସପାର୍ଟି ଅନେକ ଉଦ୍ୟମ କରିଥିଲା । ପେରିୟାର କଂଗ୍ରେସ ଦଳରୁ ଇସ୍ତଫା ଦେବାପରେ ସେ ଶ୍ରେଣୀଗତ ସରକାରୀ ନିର୍ଦ୍ଦେଶନାମା (Communal Government Order) ପାରିତ କରିବାକୁ ଉଦ୍ୟମ କରିଥିଲେ । ଏପରିକି ବ୍ରିଟିଶ ପ୍ରଶାସନିକ ଅଧିକାରୀମାନେ ଏହାର ଆବଶ୍ୟକତାକୁ ମଧ୍ୟ ଉପଲବ୍ଧି କରିଥିଲେ । ଏହି ସରକାରୀ ନିର୍ଦ୍ଦେଶନାମା ପାଇଁ ସେମାନେ ଭିତ୍ତି ପକାଇଥିଲେ । ୧୮୮୪ରେ ରେଭିନିଉ ବୋର୍ଡ ସମସ୍ତ ଜିଲ୍ଲାପାଳମାନଙ୍କୁ ଏକ ସରକାରୀ ନିର୍ଦ୍ଦେଶ ପଠାଇଥିଲେ । ସେଥିରେ ସଂଖ୍ୟାଗରିଷ୍ଠ ଜାତିର ଲୋକମାନଙ୍କୁ କର୍ମକ୍ଷେତ୍ରରେ ସୁଯୋଗ ଦେବାକୁ ପରାମର୍ଶ ରହିଥିଲା । କେତେକ ପ୍ରଭାବଶାଳୀ ବ୍ୟକ୍ତି ସମସ୍ତ ସରକାରୀ କର୍ମକ୍ଷେତ୍ର ନିଜ ଜାତିର ଲୋକମାନଙ୍କୁ ଦେଉଥିଲେ ଯାହାକୁ ବିରୋଧ କରାଯାଇଥିଲା । କିନ୍ତୁ ବାସ୍ତବରେ ଅନ୍ୟ ଜାତିର ଲୋକମାନେ କର୍ମକ୍ଷେତ୍ରକୁ ଆସିପାରୁ ନଥିଲେ । ପଛୁଆ ଶ୍ରେଣୀର ଲୋକଙ୍କ ଭିତରେ ଶିକ୍ଷିତ ଲୋକଙ୍କ ସଂଖ୍ୟା ବହୁତ ସୀମିତ ଥିଲା । ସରକାରଙ୍କ ଏହି ସାର୍କୁଲାର ଯୋଗୁ ପଛୁଆ ବର୍ଗର ଲୋକମାନେ କିଛି ସରକାରୀ କର୍ମସଂସ୍ଥାନ ପାଇବାର ସମ୍ଭାବନା ସୃଷ୍ଟି ହେଲା ।  ଅବ୍ରାହ୍ମଣ ସଂଘ ଗଠିତ ହେବାର ଚାଳିଶ ବର୍ଷ ପୂର୍ବରୁ ବ୍ରିଟିଶ ସରକାର ଏଥି ପାଇଁ କିଛି ସୁଯୋଗ ସୃଷ୍ଟି କରିଥିଲେ । ଏହାକୁ ନେଇ ଜଷ୍ଟିସ ପାର୍ଟି ସରକାରୀ କର୍ମ କ୍ଷେତ୍ରରେ ଅବ୍ରାହ୍ମଣମାନଙ୍କୁ ନିଯୁକ୍ତି ଦେବାକୁ ଉଦ୍ୟମ କଲା । ୧୯୨୮ରେ କଂଗ୍ରେସ ଦଳର ସମ୍ମିଳନୀ କାଂଚିପୁରମଠାରେ ଅନୁଷ୍ଠିତ ହୋଇଥିଲା । ସେହି ସମ୍ମିଳନୀରେ ଶ୍ରେଣୀଗତ ସଂରକ୍ଷଣ ପାଇଁ ପେରିୟାର କିଛି ପ୍ରସ୍ତାବ ଆଣିଥିଲେ । ଯେହେତୁ ତାଙ୍କର ପ୍ରସ୍ତାବ କାଟ ଖାଇଥିଲା ସେ କଂଗ୍ରେସ ଦଳରେ ଥିବା ତାଙ୍କ ପଦବୀରୁ ଇସ୍ତଫା ଦେଇଥିଲେ । ଏହାପରେ ସେ ଜଷ୍ଟିସ

ପାର୍ଟିରେ ଯୋଗଦେଇଥିଲେ । ସଂରକ୍ଷଣକୁ ସେ ଏକ ବଡ ପ୍ରସଙ୍ଗ କଲେ । ୧୯୨୮ରେ ମନ୍ତ୍ରୀ ମୁତାୟା ମୁଦାଲିୟର ପ୍ରଥମ ଶ୍ରେଣୀଭିତ୍ତିକ ସରକାରୀ ନିର୍ଦ୍ଦେଶନାମାର (Communal Government Order ବା କମ୍ୟୁନାଲ ଜିଓ) ଅବତାରଣା କଲେ । ପେରିୟାର ଏହାକୁ ସ୍ୱାଗତ କରିଥିଲେ । ସେ କୁଦି ଅରସୁ ସମ୍ବାଦପତ୍ରରେ ଏହାକୁ ପ୍ରଶଂସା କରି ଲେଖିଥିଲେ ।

ସ୍ୱଦେଶମିତ୍ରାନ ସମ୍ବାଦ ପତ୍ର ତାର ସଂପାଦକୀୟରେ ୮.୧୧.୧୯୨୮ ଦିନ କମ୍ୟୁନାଲ ଜି.ଓ.କୁ ସମାଲୋଚନା କରିଥିଲା । ସେହି ସଂପାଦକୀୟକୁ ପଢ଼ି ପେରିୟାର ଉତ୍ତର ଦେଇଥିଲେ – "ଜାତି ବ୍ୟବସ୍ଥା ଥିବାରୁ ଜାତିମାନଙ୍କ ଭିତରେ ବିବାଦ ସୃଷ୍ଟି ହେଉଛି । ଆପଣ ଜାତିକୁ ପରିହାର କରିବାକୁ ପ୍ରସ୍ତୁତ କି ? ଆପଣ ଯେତେବେଳ ପର୍ଯ୍ୟନ୍ତ ଜାତିକୁ ପରିହାର କରିନାହାନ୍ତି, ସେ ପର୍ଯ୍ୟନ୍ତ କେତେକ ଲୋକଙ୍କୁ କିଛି ନିରାପତ୍ତା ଦେବା ଆବଶ୍ୟକ । ଏଥିପାଇଁ ଆପଣ କାହିଁକି ବିରୋଧ ଓ ଅସନ୍ତୋଷ ବ୍ୟକ୍ତ କରୁଛନ୍ତି ?" ସେ ଏହା ମଧ୍ୟ କହିଥିଲେ ଯେ ଯିଏ ବି କ୍ଷମତାକୁ ଆସନ୍ତୁ ସିଏ ମୁତାୟା ମୁଦାଲିୟାରଙ୍କ ପ୍ରସ୍ତାବ ଗ୍ରହଣ କରିବେ ।

୧୯୪୭ରେ ଦେଶର ସ୍ୱାଧୀନତା ପରେ ନୂତନ ସରକାରୀ ନିୟମ କାର୍ଯ୍ୟକାରୀ ହେଲା । ୧୯୫୦ରେ କେହି ବ୍ୟକ୍ତି ମାଡ୍ରାସ ହାଇକୋର୍ଟରେ ଏକ ପିଟିସନ ଦେଇ କମ୍ୟୁନାଲ ଜିଓ ଯେ ଆଇନ ବିରୋଧୀ ଏହା ଦର୍ଶାଇଲେ । ସେହି ବ୍ୟକ୍ତି ଏହି ଯୁକ୍ତି ରଖିଥିଲେ: ମୋ ପିଲାମାନେ ଏଂଟ୍ରାନ୍ସ ପରୀକ୍ଷାରେ ଭଲ ନମ୍ବର ରଖିଥିଲେ । ତେବେ କମ୍ୟୁନାଲ ଜି.ଓ କାର୍ଯ୍ୟକାରୀ ହେଉଥିବା ଯୋଗୁ ସେମାନେ ଇଂଜିନିୟରିଂ କଲେଜରେ ସ୍ଥାନ ପାଇପାରିଲେ ନାହିଁ । ମାଡ୍ରାସ ହାଇକୋର୍ଟ ସେହି ପିଟିସନକୁ ଗ୍ରହଣକରି ରାୟ ଦେଲେ ଯେ କମ୍ୟୁନାଲ ଜି.ଓ. ବେଆଇନ । ଏହି ରାୟ ପ୍ରକାଶ ପାଇଲାପରେ ମାଡ୍ରାସ ସରକାର ସୁପ୍ରିମ କୋଟରେ ଏହି ରାୟ ବିରୁଦ୍ଧରେ ଆବେଦନ କଲେ । କମ୍ୟୁନାଲ ଜି.ଓ. ଉପରେ ହାଇକୋର୍ଟର ରାୟ ଦେଖିବା ପରେ ପେରିୟାର ବହୁ ଅଶାନ୍ତ ହେଲେ । ସେ ମାଡ୍ରାସ ହାଇକୋର୍ଟ ରାୟ ବିରୁଦ୍ଧରେ ଏକ ଆନ୍ଦୋଳନ ଆରମ୍ଭ କଲେ । ସେ ଲୋକମାନଙ୍କୁ ନିବେଦନ କରି ୧୪ ଅଗଷ୍ଟକୁ କମ୍ୟୁନାଲ ଜି.ଓ. ଅଧିକାର ଦିବସ ଭାବେ ପାଳନ କରିବାକୁ ନିବେଦନ କଲେ । ଆତ୍ମମର୍ଯ୍ୟାଦା ଆନ୍ଦୋଳନ ତରଫରୁ "କମ୍ୟୁନାଲ ଜି.ଓ. କାହିଁକି"

ଶିରୋନାମାରେ ଏକ କ୍ଷୁଦ୍ର ପୁସ୍ତିକା ପ୍ରକାଶ ପାଇଲା । ଏହି ଅବସ୍‌ରରେ କଂଗ୍ରେସ ନେତା କାମରାଜ ସୁପ୍ରିମ କୋର୍ଟ ରାୟ ପ୍ରକାଶ ପାଇବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପେରିୟାରଙ୍କୁ ଅନୁରୋଧ କଲେ । ଏହା ଭିତରେ ସୁପ୍ରିମ କୋର୍ଟର ରାୟ ପ୍ରକାଶ ପାଇଲା । ସୁପ୍ରିମ କୋର୍ଟ ବି ମାଡ୍ରାସ ହାଇକୋଟ ରାୟକୁ କାଏମ ରଖିଲେ ।

ପେରିୟାର ଖୁବ୍ ଅଶାନ୍ତ ହେଲେ । ସେ ଭାବିଲେ ଯେ ଏଥିପାଇଁ ଜନ ଆନ୍ଦୋଳନ ନହେଲେ ସଂରକ୍ଷଣ ନୀତି ରହିବ ନାହିଁ ଯାହାକୁ ପୂର୍ବରୁ ଜଷ୍ଟିସ ପାର୍ଟି କାର୍ଯ୍ୟକାରୀ କରିଥିଲା । ପେରିୟାର ତ୍ରିଚିଠାରେ ୩ ଡିସେମ୍ବର ୧୯୫୦ ଦିନ ଏକ ସଭା ଆହୂତ କଲେ । ସେ ସମସ୍ତ ବିରୋଧୀ ଦଳ ନେତାମାନଙ୍କୁ ଏହି ସଭାରେ ଯୋଗଦେବାକୁ ଆମନ୍ତ୍ରଣ କଲେ । ସେଠାରେ ଏକ ପ୍ରସ୍ତାବ ସର୍ବସମ୍ମତି କ୍ରମେ ଗ୍ରହଣ କରାଗଲା । ପ୍ରସ୍ତାବରେ ସରକାର ସଂରକ୍ଷଣ ପଲିସକୁ ଗ୍ରହଣ କରିବାକୁ କୁହାଗଲା ଯାହା ପୂର୍ବରୁ କମୁନାଲ ଜି.ଓ. ରେ ରହିଥିଲା ।

ପେରିୟାର ଯେଉଁ ଆଲୋଡନ ସୃଷ୍ଟି କଲେ ତାହା ଦିଲ୍ଲୀରେ ମଧ୍ୟ ଆଲୋଚ୍ୟ ପ୍ରସଙ୍ଗ ହେଲା । ମାଡ୍ରାସ ରାଜ୍ୟର ଘଟଣାବଳୀ ବିଷୟରେ ଉପର ମହଲରେ ଆଲୋଚନା ହେଲା । ସରକାର ଯଦି ସଂରକ୍ଷଣକୁ ମନାକରିବେ, ତେବେ ମାଡ୍ରାସ ରାଜ୍ୟରେ ପ୍ରବଳ ଜନଅଶାନ୍ତି ସୃଷ୍ଟି ହେବ । ଫଳରେ ଏହାକୁ ନିୟନ୍ତ୍ରଣ କରିବା ଅସମ୍ଭବ ହେବ । ଏହି ସ୍ଥିତିରେ ପ୍ରଧାନମନ୍ତ୍ରୀ ନେହେରୁ ମନ୍ତ୍ରିମଣ୍ଡଳର ଜଣେ ସଦସ୍ୟଙ୍କୁ ଅବସ୍ଥା ଅନୁଧ୍ୟାନ କରିବାକୁ ମାଡ୍ରାସ ପଠାଇଲେ । ସେ ଦିଲ୍ଲୀ ଫେରି ଏ ସଂପର୍କରେ ସରକାରଙ୍କୁ ଯେଉଁ ରିପୋର୍ଟ ଦେଲେ ସରକାର ତାରି ଆଧାରରେ ସମ୍ବିଧାନରେ ଏକ ସଂଶୋଧନ ଆଣିଲେ । ଶିକ୍ଷାନୁଷ୍ଠାନରେ ଓ ସରକାରୀ କର୍ମକ୍ଷେତ୍ରରେ କେତେକ ସ୍ଥାନ ଅନଗ୍ରସର ଶ୍ରେଣୀ ପାଇଁ ସଂରକ୍ଷିତ ରହିଲା । ସଂସଦର ଉଭୟ ଗୃହରେ ସମ୍ବିଧାନ ସଂଶୋଧନ ବିଲ୍‌ଟି ଗୃହିତ ହେଲା । ଏହା ପେରିୟାରଙ୍କ ଯୋଗୁ ସମ୍ଭବ ହେଲା । ସଂପ୍ରତି ଅନଗ୍ରସର ଶ୍ରେଣୀର ବହୁ ବ୍ୟକ୍ତି ସରକାରୀ ସ୍ତରରେ ବହୁ ଉଚ୍ଚ ପଦପଦବୀରେ ଅବସ୍ଥାପିତ ହୋଇପାରୁଛନ୍ତି । ଏହା ପେରିୟାରଙ୍କ କାର୍ଯ୍ୟ ଯୋଗୁ ସମ୍ଭବ ହୋଇପାରିଛି ।



# ୭୯. ଦାବି ପୁରଣ ପର୍ଯ୍ୟନ୍ତ ଆନ୍ଦୋଳନ

୧୯୫୨ରେ ବର୍ମାଠାରେ ବିଶ୍ୱ ବୌଦ୍ଧ ସମ୍ମିଳନୀରେ ପେରିୟାର ଯୋଗ ଦେଇଥିଲେ । ତାଙ୍କର ସେଠାରେ ଅମ୍ବେଦକରଙ୍କ ସହ ୫ ଡିସେମ୍ବର ୧୯୫୪ ଦିନ ସାକ୍ଷାତ ହେଲା । ଆମ୍ବେଦକର ପେରିୟାରଙ୍କୁ ବୌଦ୍ଧଧର୍ମ ଗ୍ରହଣ କରିବା ପାଇଁ ପରାମର୍ଶ ଦେଲେ । ପେରିୟାର ଏହାକୁ ଗ୍ରହଣ କଲେ ନାହିଁ । ପେରିୟାର କହିଲେ ଯେ ହିନ୍ଦୁଧର୍ମ ଭିତରୁ ସମସ୍ତ ଭେଦଭାବ ଓ କୁସଂସ୍କାର ଦୂର ନହେବା ପର୍ଯ୍ୟନ୍ତ ସେ ହିନ୍ଦୁ ହୋଇ ରହିବେ । ଲୋକମାନଙ୍କୁ ଧର୍ମ ନାମରେ ଯେପରି ଅଜ୍ଞ କରି ରଖାଯାଇଛି ତାହା ଦୂର ହେବା ସେ ଚାହାନ୍ତି ।

୧୯୫୨ ରୁ ୧୯୫୪ ପର୍ଯ୍ୟନ୍ତ ସେ ପାରିବାରିକ ବୃତ୍ତି ଶିକ୍ଷା ପରିକଳ୍ପନାକୁ ବିରୋଧକରି ଆନ୍ଦୋଳନ କରିଥିଲେ । ସରକାର ନିୟମ କଲେ ଯେ ସ୍କୁଲ ଦିନର ଅଧା ସମୟ ଚାଲିବ, ସେଠାରେ ପିଲାମାନେ ପାଠପଢ଼ିବେ, ବାକି ଅଧା ସମୟ ନିଜ ନିଜ ପରିବାରର କୌଳିକ ବୃତ୍ତିବିଷୟ ଶିକ୍ଷାକରିବେ । ସେ ଏହି ବ୍ୟବସ୍ଥାର ତୀବ୍ର ବିରୋଧ କରିଥିଲେ । କାମରାଜ ପଛୁଆ ବର୍ଗ ଲୋକଙ୍କର ବିକାଶ ପାଇଁ ଓ ଶିକ୍ଷାର ପ୍ରସାର ପାଇଁ ଯେଉଁ ପଦକ୍ଷେପ ନେଇଥିଲେ ତାହାକୁ ସେ ସମର୍ଥନ କରୁଥିଲେ ।

ରାମଚନ୍ଦ୍ରଙ୍କ ବିଷୟରେ ପେରିୟାର ମତ ରଖୁଥିଲେ ଯେ ସେ ହେଉଛନ୍ତି ଜଣେ ଆର୍ଯ୍ୟ ଓ ଦ୍ରାବିଡ ବିରୋଧୀ । ଦ୍ରାବିଡ ବିରୋଧୀ ବ୍ୟକ୍ତିଙ୍କୁ ସମ୍ମାନ ବା ପୂଜା ନକରିବା ପାଇଁ ସେ ଲୋକମାନଙ୍କ ଭିତରେ ଜାଗରଣ ସୃଷ୍ଟି କରିଥିଲେ ।

୧୯୫୭ରେ ବ୍ରାହ୍ମଣବାଦୀ ମାନସିକତା ବିରୁଦ୍ଧରେ ସେ ଆନ୍ଦୋଳନ କରିଥିଲେ । ହୋଟେଲ ଆଗରେ ଲେଖା ଯାଉଥିବା ବୋର୍ଡରେ ‘କେବଳ ବ୍ରାହ୍ମଣମାନଙ୍କ ପାଇଁ’ ହଟାଇବା ପାଇଁ ସେ ଲୋକମାନଙ୍କ ଭିତରେ ଚେତନା ପ୍ରସାର କରିଥିଲେ । ଜାତିପ୍ରଥାକୁ ସମର୍ଥନ କରୁଥିବା ଶାସ୍ତ୍ରମାନଙ୍କୁ ସେ ସାଧାରଣରେ ପୋଡୁଥିଲେ । ପେରିୟାରଙ୍କ ଦଳର ଅନେକ କର୍ମୀ ସେ ସମୟରେ ଗିରଫ ହୋଇଥିଲେ । ପେରିୟାର ଗିରଫ ହୋଇ ଛ’ ମାସ ଜେଲରେ ରହିଥିଲେ ।

ଜେଲରେ ଥିବା ସମୟରେ ସମାଜବାଦୀ ନେତା ରାମମନୋହର ଲୋହିଆ ୨୩ ଜାନୁଆରୀ ୧୯୫୬ ଦିନ ସରକାରଙ୍କଠାରୁ ଅନୁମତି ନେଇ ତାଙ୍କୁ ଜେଲରେ ସାକ୍ଷାତ କରିଥିଲେ ।

୧୯୫୯ରେ ପେରିୟାର ଅନେକ ଉତ୍ତର ଭାରତର ସହରରେ ସଭାକରି ଜାତିପ୍ରଥା ବିରୁଦ୍ଧରେ ଭାଷଣ ଦେଇଥିଲେ । ଉତ୍ତର ଭାରତରେ ଜାତିଗତ ଭେଦଭାବ ପ୍ରବଳ ଥିବାରୁ ସେ ସଭାକରି ଜାତିବ୍ୟବସ୍ଥାର ଦୂରୀକରଣ ପାଇଁ ପ୍ରୟାସ କରିଥିଲେ ।

୧୯୬୪ରେ ସୁପ୍ରିମ କୋର୍ଟ ଲାଣ୍ଡ ସିଲିଂ ଆଇନକୁ ଅବୈଧ ଘୋଷଣା କଲେ । ତାହା ବିରୁଦ୍ଧରେ ସେ ଆନ୍ଦୋଳନ କରି ଏଥି ପାଇଁ ଜନଜାଗରଣ ସୃଷ୍ଟି କରିଥିଲେ । ୧୯୬୫ରେ ସେ କେତେକ ପୁରାଣ ମାନଙ୍କୁ ପୋଡିଥିଲେ, ଯେଉଁମାନେ ଜାତିପ୍ରଥା, ଅସ୍ପୃଶ୍ୟତାକୁ ସମର୍ଥନ କରନ୍ତି, ମହିଳାମାନଙ୍କୁ ନ୍ୟୂନ କରି ରଖିବାକୁ ଚାହାନ୍ତି ।

୧୯୬୭ରେ କଂଗ୍ରେସ ତାମିଲନାଡୁରେ କ୍ଷମତା ହରାଇଲା । ସାଧାରଣ ନିର୍ବାଚନରେ ଡିଏମ୍‌କେ କ୍ଷମତାକୁ ଆସିଲା ଓ ସି.ଏନ. ଆନାଦୁରାଇ ମୁଖ୍ୟମନ୍ତ୍ରୀ ହେଲେ । ପୂର୍ବରୁ ପେରିୟାର ଯାହା ଘୋଷଣା କରିଥିଲେ ଆନା ତାହାକୁ କାର୍ଯ୍ୟକାରୀ କରାଇଲେ । ଫଳରେ ପେରିୟାରଙ୍କର ଡିମେକେ ସହ ଯେଉଁ ମତଭେଦ ପୂର୍ବରୁ ସୃଷ୍ଟି ହୋଇଥିଲା ତାହା ଦୂର ହେଲା । ପେରିୟାର ଏହାପରେ ସରକାରଙ୍କ ବିରୁଦ୍ଧରେ କିଛି ଆନ୍ଦୋଳନ କଲେ ନାହିଁ । ତେବେ ୧୯୬୯ରେ ମନ୍ଦିରମାନଙ୍କରେ ସବୁ ଜାତିର ଭକ୍ତମାନଙ୍କୁ ପ୍ରବେଶ କରିବାର ଅଧିକାର ଦେବା ପାଇଁ ସେ ଆନ୍ଦୋଳନ କରିଥିଲେ ।

୧୯୭୦ ଜାନୁଆରୀରୁ ସେ ତାମିଲ ଭାଷାରେ ଏକ ମାଗାଜିନ 'ଉନାମି' ପ୍ରକାଶ କଲେ । ୧୯୭୩ରେ ସେ ସ୍ୱତନ୍ତ୍ର ତାମିଲନାଡୁ ପାଇଁ ଦାବି ଉଠାଇଥିଲେ । ସେ ' କଳାକାମିଜ' ପିନ୍ଧି ପ୍ରତିବାଦ କରିବାକୁ ତାଙ୍କ ଅନୁଗାମୀମାନଙ୍କୁ ନିବେଦନ କରିଥିଲେ । ସମସ୍ତ ପାର୍ଟିର ଅନୁଗାମୀମାନେ କଳାଶାର୍ଟ ପିନ୍ଧିବାକୁ ସେ ଆହ୍ୱାନ ଦେଇଥିଲେ । 'କଳାକାମିଜ' ତ୍ୟାଗର ଏକ ନିଦର୍ଶନ ବୋଲି ସେ ଗ୍ରହଣ କରିଥିଲେ । ତାଙ୍କ ଦେହାନ୍ତ ପୂର୍ବରୁ ଏହା ତାଙ୍କର ଶେଷ ଆନ୍ଦୋଳନ ଥିଲା । ସାମାଜିକ ସଂସ୍କାର, ସମତା ଓ ମାନବିକ ମର୍ଯ୍ୟାଦା ପାଇଁ ସେ ସ୍ୱର ଉଠାଇଥିଲେ ।



# ୩୦. ତିରୁକ୍କୁରାଲରେ ସଂଶୋଧନ

ବ୍ରାହ୍ମଣମାନେ ଲୋକଙ୍କ ମଧ୍ୟରେ ଏକ ଧାରଣା ସୃଷ୍ଟି କଲେ ଯେ ପେରିୟାର ଈଶ୍ୱର ବିରୋଧୀ ଓ ବ୍ରାହ୍ମଣ ବିରୋଧୀ । ଏହାଦ୍ୱାରା ସେମାନେ ପେରିୟାରଙ୍କୁ ଲୋକମାନଙ୍କ ପାଖରେ ନ୍ୟୂନ କରିବାକୁ ଚାହିଁଲେ । ପରନ୍ତୁ ପେରିୟାରଙ୍କ ଜୀବନ ଥିଲା ଏକ ବିଶ୍ୱବିଦ୍ୟାଳୟ । ସେ ଥିଲେ ଜଣେ ଚିନ୍ତକ, ବିପ୍ଳବୀ, ଗବେଷକ, ଭବିଷ୍ୟ ଦ୍ରଷ୍ଟା, ବିଚାରଶୀଳ ବ୍ୟକ୍ତି, ମାନବବାଦୀ, ପ୍ରଶସ୍ତ-ମନା ଓ ବିଶ୍ୱ କଲ୍ୟାଣକାରୀ ବ୍ୟକ୍ତି । ଆମେ ଯେତେବେଳେ ତାଙ୍କ ସଂପର୍କରେ ଗବେଷଣା କରିବା ଆମେ ତାଙ୍କ ପ୍ରତିଭାରେ ଆଶ୍ଚର୍ଯ୍ୟ ହେବା । ସେ ତାଙ୍କ ସମୟରେ ଯେଉଁ ଭବିତବ୍ୟର ପରିକଳ୍ପନା କରିଥିଲେ ତାହା ଏବେ ବାସ୍ତବତାରେ ପରିଣତ ହେଉଛି । ଆଗାମୀ ବିଶ୍ୱ ଶହେ ବର୍ଷରେ କ'ଣ ହେବାକୁ ଯାଉଛି ଯାହା ସେ ଅଶୀ ବର୍ଷ ତଳେ ଅନୁମାନ କରିଥିଲେ ତାହା ସଫଳ ହେବାରେ ଲାଗିଛି । ସ୍ଥାନ ସଂରକ୍ଷଣ ନେଇ ସେ ଯେଉଁ ଭାବନା ବ୍ୟକ୍ତ କରିଥିଲେ ତାହା ଏବେ ସମଗ୍ର ଦେଶରେ ପ୍ରତିଧ୍ୱନିତ ହେଉଛି ।

ଈଶ୍ୱର ସମ୍ବନ୍ଧରେ ସେ ଯାହା ମନ୍ତବ୍ୟ ରଖିଥିଲେ ତାହା ଏକ ଦାର୍ଶନିକ ସିଦ୍ଧାନ୍ତ ଥିଲା । ସେହିପରି ତାଙ୍କ ପତ୍ନୀ ନାଗମଲଙ୍କ ଦେହାନ୍ତ ପରେ ସେ ଯେଉଁ ଶ୍ରଦ୍ଧାଞ୍ଜଳି ଲେଖିଥିଲେ, ତାହା ବି ବେଶ୍ ଭାବଗର୍ଭକ ଥିଲା । ତିରୁକୁରାଳ ଉପରେ ସେ ବେଶ୍ ସୁନ୍ଦର ବିଶ୍ଳେଷଣାତ୍ମକ ବ୍ୟାଖ୍ୟାନ ଦେଇଥିଲେ । ତିରୁକୁରାଳ ଉପରେ କେତେକ ଗବେଷକ ଗବେଷଣାମୂଳକ ନିବନ୍ଧ ରଚନା କରିଛନ୍ତି । ତେବେ ଏକ୍ଷେତ୍ରରେ ପେରିୟାରଙ୍କର ବ୍ୟାଖ୍ୟା ବେଶ୍ ଚିନ୍ତାଦ୍ୟୋତକ ଥିଲା । ସେ ତିରୁକୁରାଳର କେତେକ ତ୍ରୁଟି ମଧ୍ୟ ଦର୍ଶାଇଥିଲେ ଏବଂ ସେସବୁ କ'ଣ ହୋଇଥିଲେ ଭଲ ହୋଇଥାନ୍ତା ତାହା ବ୍ୟକ୍ତ କରିଛନ୍ତି । ଏହି ଅଭିବ୍ୟକ୍ତି କେତେକଙ୍କ ପାଇଁ ବେଶ୍ ଭାବଗର୍ଭକ ଥିଲା । ଏଥିରୁ ତାଙ୍କ ବୁଦ୍ଧିଦୀପ୍ତ ବିଚାରର ସୂଚନା ମିଳେ । ଏହିପରି ଅନେକ କ୍ଷେତ୍ରରୁ ତାଙ୍କ ବୁଦ୍ଧିମତାର ପରିଚୟ ମିଳିଥାଏ, ଯେଉଁଥି ପାଇଁ ତାଙ୍କ ଜୀବନକୁ ଏକ ବିଶ୍ୱବିଦ୍ୟାଳୟ କୁହାଯାଏ ।

ତେବେ ତିରୁକୁରାଳରେ ସେ କ'ଣ କ'ଣ ତ୍ରୁଟି ଦର୍ଶାଇଛନ୍ତି ତାହା ଲେଖକ ଏଠାରେ ବ୍ୟକ୍ତ କରିନାହାନ୍ତି । ଯେହେତୁ ସେସବୁ ତାମିଲ ଭାଷାରେ, ଅଣତାମିଲ ପାଠକଙ୍କୁ ତାହା ବୋଧଗମ୍ୟ ହେବ ନାହିଁ ବୋଲି ଲେଖକ ସୂଚନା ଦେଇଛନ୍ତି ।

# ୩୧. ପେରିୟାରଙ୍କ ଉଦାହରଣର ବିକଳ୍ପ ନାହିଁ

ପେରିୟାର ବହୁ ଆନ୍ଦୋଳନ, ପ୍ରତିବାଦ, ବିରୋଧ ଆଦି କରିଛନ୍ତି ଯାହା ସରକାରୀ ନିୟମର ପ୍ରତିକୂଳ ଯାତ୍ରାପରି ମନେହୁଏ ବହୁ ବିରୋଧ ବ୍ୟତୀତ ସେ ଅନେକ ଅସମ୍ମାନ, ଆକ୍ରମଣର ମଧ୍ୟ ସମ୍ମୁଖୀନ ହୋଇଛନ୍ତି । ତାହାର କାରଣ ସେ ଯେଉଁ ବିଚାରମାନଙ୍କର ଅବତାରଣା କରୁଥିଲେ ତାହା ସମାଜରେ ଆଲୋଡନ ସୃଷ୍ଟି କରୁଥିଲା ।

ସମାଜର ପ୍ରଚଳିତ ବିଶ୍ୱାସ, ଭାବଧାରା ଓ ପରମ୍ପରାକୁ ସେ ପ୍ରଶ୍ନ କରୁଥିଲେ ଓ କେତେକ ବ୍ୟବସ୍ଥାକୁ ବିରୋଧ କରୁଥିଲେ । ତେବେ ତାଙ୍କର ଭାଷଣମାନଙ୍କୁ ଅନ୍ୟମାନେ ଓ ଏପରିକି ତାଙ୍କର ବିରୋଧୀମାନେ ଉପଭୋଗ କରୁଥିଲେ । ସେ ସୁନ୍ଦର ଭାଷଣ ଦେଇପାରୁଥିଲେ, ତାଙ୍କ ଭାଷଣରେ ଚମତ୍କାର ବ୍ୟଙ୍ଗ ଓ ସୁନ୍ଦର ଉଦାହରଣ ମାନ ରହିଥିଲା । ତାଙ୍କ ଭାଷଣକୁ ସମସ୍ତେ ବୁଝି ପାରୁଥିଲେ କାରଣ ତାଙ୍କର ଉଦାହରଣ ଗୁଡିକ ଲୋକଙ୍କୁ ଛୁଇଁ ପାରୁଥିଲା ।

(i) ଧର୍ମନିରପେକ୍ଷତା କହିଲେ କ'ଣ ବୁଝାଏ ? ସେ କହିଲେ - "ଏହାର ତାତ୍ପର୍ଯ୍ୟ ନୁହେଁ ଯେ ସରକାର ସମସ୍ତ ଧର୍ମକୁ ସମାନ ଭାବରେ ଗ୍ରହଣ କରିବେ । ସରକାର ଏହା ବିଷୟରେ ଭାବିବେ ନାହିଁ ବା ଧର୍ମକୁ ସ୍ପର୍ଶକରିବେ ନାହିଁ । ଜଣେ କୁମାରୀ (Virgin) ହେଉଛି ଯାହାର କୌଣସି ଶାରୀରିକ ସଂପର୍କ କୌଣସି ପୁରୁଷ ସହିତ ହୋଇନଥିବ । ଏହାର ତାତ୍ପର୍ଯ୍ୟ ନୁହେଁ ଯେ କୁମାରୀଙ୍କର କେତେକଙ୍କ ସହ ସମାନ ସଂପର୍କ ରହିଥିବ । ଧର୍ମ ନିରପେକ୍ଷତା ମାନେ ସରକାର ହେଉଛନ୍ତି ଜଣେ କୁମାରୀ । ଏହିପରି ସୁନ୍ଦର ବ୍ୟଙ୍ଗ ମାଧ୍ୟମରେ ସେ ଲୋକମାନଙ୍କୁ ଜଟିଳ ବିଷୟକୁ ବୁଝାଇ ପାରୁଥିଲେ ।

(ii) ବିଧବାଙ୍କ ଦୁଃଖ ବିଷୟରେ ସେ ଲୋକମାନଙ୍କୁ କହିଲେ - କୌଣସି ଗାଈର ଯୌନ ଆବେଗ ଆସିଲେ ସେ ଗାଁରେ ସେଥିପାଇଁ ଥିବା ପଥର

ପାଖକୁ ଯାଇ ସେଠାରେ ଘସି ହୋଇଥାଏ । ହିନ୍ଦୁମାନେ ଗାଈଗୋରୁଙ୍କ ଯୌନ ଆବେଗକୁ ଚରିତାର୍ଥ କରିବାକୁ ସେ ପାଇଁ ପଥର ତିଆରି କରିଛନ୍ତି ଯାହା ପାଖକୁ ଗାଈମାନେ ଯାଇ ଘଷି ହୁଅନ୍ତି । କିନ୍ତୁ ଲୋକମାନେ ବିଧବାମାନଙ୍କ ଯୌନ ଆବେଗ ପ୍ରତି ଉଦାସୀନତା ଦେଖାନ୍ତି ।

(iii) ରକ୍ଷିତା ହିଁ ଦେହଜୀବୀ । ଗୋଟିଏ ପଞ୍ଚାୟତ କିମ୍ବା ମୁନିସିପାଲିଟିରେ ସେମାନେ ଲାଂଚ ନେବେ, ଟଙ୍କା ହଡପ କରିବେ ଓ ଲୋକମାନଙ୍କୁ ଓଜନରେ ଠକିବେ । ପ୍ରଶାସନ ଏସବୁ ଯେତେ ଅସାଧୁ କାର୍ଯ୍ୟ ହେଲେ ମଧ୍ୟ ଏହାକୁ ବନ୍ଦକରି ପାରୁନାହିଁ । ଜଣେ ରକ୍ଷିତାକୁ ଏହା ଦେହଜୀବୀ କହିବା ସଦୃଶ ।

ଶ୍ରମିକ ସଂଗଠନରେ ସାମ୍ୟବାଦୀମାନଙ୍କ ସ୍ଥାନରେ ସମାଜବାଦୀ ମାନଙ୍କୁ ପୂରାଇବାରେ କଂଗ୍ରେସ ଉଦ୍ୟମ କରିଛି । କଂଗ୍ରେସର ଏହି କାର୍ଯ୍ୟକୁ ପେରିୟାର ସମାଲୋଚନା କରିଛନ୍ତି ।

ଭାରତରେ କୋଟି କୋଟି ଲୋକ ନିରକ୍ଷର, ଗରିବ ଓ ଦିନ ମଜୁରିଆ ଭାବରେ ଜୀବନ ବଞ୍ଚୁଛନ୍ତି । ଏହି ସ୍ଥିତିରେ ରାଜନୈତିକ ସ୍ୱାଧୀନତାର କୌଣସି ମୂଲ୍ୟ ନାହିଁ । ପ୍ରଥମେ ସାମାଜିକ ସ୍ୱାଧୀନତା ଆବଶ୍ୟକ । ଭାରତରୁ ଜାତିଗତ ଭେଦଭାବ ପ୍ରଥମେ ଦୂରହେବା ଦରକାର । ସାମାଜିକ ଭେଦଭାବ ଦୂରନହେଲେ ରାଜନୈତିକ ସ୍ୱାଧୀନତାର କିଛି ମୂଲ୍ୟ ରହିବ ନାହିଁ ।

ବ୍ରାହ୍ମଣମାନେ ଭାରତରେ ଆର୍ଯ୍ୟ ଭାବେ ପ୍ରବେଶ କଲେ । ସେମାନେ କାଳକ୍ରମେ ଏଠିକାର ଅଧିବାସୀମାନଙ୍କୁ ଦାସ କଲେ ଓ ସେମାନଙ୍କୁ ଶୂଦ୍ର କହିଲେ । ସେମାନଙ୍କୁ କୁକୁର, ଘୁଷୁରିଠାରୁ ଆହୁରି ନ୍ୟୁନ ଦୃଷ୍ଟିରେ ଦେଖିଲେ । ପେରିୟାର ପ୍ରଶ୍ନ ଉଠାଇଲେ "ବ୍ରାହ୍ମଣମାନଙ୍କ ସହ ଶୂଦ୍ରମାନଙ୍କର ସମ୍ବନ୍ଧ କ'ଣ ? ଯେଉଁମାନେ ଏଠାକୁ ଭିକାରି ସଦୃଶ ଆସିଥିଲେ ସେମାନେ ଏଠିକାର ଜନଗଣଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିପାରିବେ ନାହିଁ ।

ସ୍ୱାଧୀନତା ପୂର୍ବରୁ ଯେତେବେଳେ ହିନ୍ଦୁ ଓ ମୁସଲମାନଙ୍କ ଭିତରେ ସାଂପ୍ରଦାୟିକ ଦଙ୍ଗା ସୃଷ୍ଟି ହେଲା ପେରିୟାର ସେ ସଂପର୍କରେ ମତ ରଖିଥିଲେ । ଯେତେବେଳେ ସ୍ୱାଧୀନତା ସଂଗ୍ରାମୀ ମାନେ ଦେଶର ସ୍ୱାଧୀନତା ପାଇଁ ବ୍ରିଟିଶ ସହ ଲଢୁଥିଲେ, ସେତେବେଳେ ବେଙ୍ଗଲ, ବିହାର, ମହାରାଷ୍ଟ୍ର ଓ ପଞ୍ଜାବ ପରି ରାଜ୍ୟ ମାନଙ୍କରେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ସାଂପ୍ରଦାୟିକ ଉତ୍ତେଜନା ପ୍ରକାଶ ପାଇଥିଲା । ଏହି ପରିସ୍ଥିତିକୁ ଦେଖି ନେତାମାନଙ୍କର ଉପଲବ୍ଧି ହେଲା ଯେ ଆମେ ପ୍ରଥମେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ରହୁଁ । ପେରିୟାରଙ୍କର ମତ ଥିଲା ଯେ ସାଂପ୍ରଦାୟିକ ଦଙ୍ଗା ଆମ ଲୋକଙ୍କ ଭିତରର ସମସ୍ୟା, କିନ୍ତୁ ସ୍ୱାଧୀନତା ପାଇଁ ଦାବି ଏକ ଭିନ୍ନ ସମସ୍ୟା । ସାଂପ୍ରଦାୟିକ ସଦ୍‌ଭାବ ପାଇଁ ରାଜନୈତିକ ସ୍ୱାଧୀନତାର ଦାବିକୁ ଘୁଂଚାଯାଇ ନପାରେ ।

ଉଭୟ ଆନାଦୁରାଇ ଓ କରୁଣାନିଧି ତାମିଲନାଡୁର ମୁଖ୍ୟମନ୍ତ୍ରୀ ହେବାପରେ ପେରିୟାରଙ୍କର ଅନେକ ନୀତିକୁ କାର୍ଯ୍ୟକାରୀ କରିବାକୁ ପ୍ରୟାସ କରିଥିଲେ । କିନ୍ତୁ ପେରିୟାରଙ୍କ ଯୋଜନାକୁ ଅଳ୍ପଦିନରେ କାର୍ଯ୍ୟକାରୀ କରିବା ସମ୍ଭବ ନଥିଲା । ଦ୍ରାବିଡ କାଜାଗମ ବା ଡିକେର କେତେକ ନିୟମକୁ ପ୍ରୟୋଗକରି କୁସଂସ୍କାର ଦୂରୀକରଣ ପାଇଁ ଉଦ୍ୟମ କରିଥିଲେ । ତେବେ କରୁଣାନିଧି ପେରିୟାରଙ୍କ ନୀତିର ସମର୍ଥକ ଥିଲେ ମଧ୍ୟ ସେ ସବୁର ବାସ୍ତବ ପ୍ରୟୋଗ ନେଇ ବେଳକେ ଅସହାୟ ହେଉଥିଲେ । ସାଧାରଣ ଲୋକମାନେ ଉତ୍ତମ ଜୀବନ ମର୍ଯ୍ୟାଦାର ସହ ବଞ୍ଚିବା ଥିଲା ପେରିୟାରଙ୍କର ଲକ୍ଷ୍ୟ । ସେ ସେମାନଙ୍କର ନ୍ୟାୟୋଚିତ ଅଧିକାର ପାଇଁ ସର୍ବଦା ସ୍ୱର ଉଠାଇ ଆସିଥିଲେ ।

ସାମାଜିକ ସଂସ୍କାର ଆଣିବାକୁ ବେଳେବେଳେ କିଛି ଅପ୍ରୀତିକର ପଦକ୍ଷେପ ନେବାକୁ ପଡିଥାଏ । ସମାଜରେ ସମତା ପ୍ରତିଷ୍ଠା କରିବା ଏକ ଜଟିଳ କାର୍ଯ୍ୟ । ହିନ୍ଦୁ ଧର୍ମ ନାମରେ ଏକ କ୍ଷୁଦ୍ର ଗୋଷ୍ଠୀ ସଂଖ୍ୟାଗରିଷ୍ଠ ଲୋକମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରି ଆସିଛନ୍ତି । ଫଳରେ ଆମକୁ ଏପରି ଏକ ଭେଦଭାବମୂଳକ ଧର୍ମ ପରିତ୍ୟାଗ କରିବାକୁ ହେବ । ଯେତେବେଳେ ଜଣେ

ବ୍ୟକ୍ତିଙ୍କର ଜୀବନ ରକ୍ଷା ପାଇଁ ତାଙ୍କର ଗୋଡକୁ କାଟିବାକୁ ହେଉଛି, ଜଣେ ଡାକ୍ତର ତାହା କରିଥାନ୍ତି । ସେହିପରି ଏକ ବୃହତ୍ତର ଲକ୍ଷ୍ୟ ସାଧନ ପାଇଁ ବେଳକେ କଷ୍ଟଦାୟକ ନିଷ୍ପତ୍ତି ନେବାକୁ ହୋଇଥାଏ । ସେହିପରି ଲୋକମାନଙ୍କ ଭିତରେ ସାମାଜିକ ସମତା ପ୍ରତିଷ୍ଠା କରିବାକୁ ହେଲେ ଜନଗଣଙ୍କୁ ଧର୍ମ ଛାଡିବାକୁ ହେବ ।

ବ୍ରାହ୍ମଣମାନେ ସେମାନଙ୍କ କାନ୍ଧରେ ପଇତା ପିନ୍ଧି ନିଜର ସାମାଜିକ ଅସ୍ମିତା ବ୍ୟକ୍ତ କରିଥାନ୍ତି । ଏହାଦ୍ୱାରା ସେମାନେ ନିଜର ସାମାଜିକ ଶ୍ରେଷ୍ଠତା ଦେଖାନ୍ତି ଓ ଅନ୍ୟମାନେ ଯେ ସେମାନଙ୍କ ଠାରୁ ନ୍ୟୂନ ଏହି ଭାବନାକୁ ବିଶ୍ୱାସ କରନ୍ତି । ରାସ୍ତାରେ କେତେକ ହୋଟେଲ ସାମ୍ନାରେ ନିଜର ପ୍ରଭୁତ୍ୱ ପାଇଁ "କେବଳ ବ୍ରାହ୍ମଣ ମାନଙ୍କ ପାଇଁ" ବୋର୍ଡରେ ଉଲ୍ଲେଖକରି ଅନ୍ୟମାନଙ୍କୁ ନିମ୍ନ ଦୃଷ୍ଟିରେ ଦେଖିଥାନ୍ତି ।

# ୩୭. ପେରିୟାର : ଭବିଷ୍ୟ ଦ୍ରଷ୍ଟା

ସଂପ୍ରତି ପେରିୟାରଙ୍କର ବିଚାରମାନ ସାର୍ବଜନୀନ ଭାବରେ ଗୃହୀତ ହେଉଛି । ସେ ଯେଉଁ ବିଷୟକୁ ସତ୍ୟ ବୋଲି ଭାବୁଥିଲେ ବିନା ଭୟରେ ଆଗ୍ରହର ସହ ପ୍ରକାଶ କରୁଥିଲେ ।

ସେ କୌଣସି ଭାଷା, ଜାତି ବା ରାଜ୍ୟର ପରିସର ଭିତରେ ନିଜକୁ ସୀମାବଦ୍ଧ କରିନଥିଲେ । ଯାହା ମାନବ ସମାଜ ପାଇଁ ମଙ୍ଗଳକର ବୋଲି ସେ ଭାବୁଥିଲେ ତାହା ସେ ବ୍ୟକ୍ତ କରୁଥିଲେ । ସେ ଯାହାକୁ ସତ୍ୟ ଓ ନ୍ୟାୟ ମନେକରୁଥିଲେ ତାହାକୁ ପ୍ରକାଶ କରିବାରେ କୁଣ୍ଠାବୋଧ କରୁନଥିଲେ । କୌଣସି ବିଷୟକୁ ସେ ଲୁଚାଇ ରଖୁନଥିଲେ । ଅନ୍ୟମାନଙ୍କର ମନୋଭାବକୁ ସେ ସମ୍ମାନ କରୁଥିଲେ, ଓ ତାଙ୍କର ଏକ ମାନବବାଦୀ ଦୃଷ୍ଟିଭଙ୍ଗୀ ରହିଥିଲା । ତାଙ୍କର କେତୋଟି ଭବିଷ୍ୟତ ପରିକଳ୍ପନାର ସୂଚନା ଦିଆଯାଇପାରେ । ଭବିଷ୍ୟତରେ ଟେଷ୍ଟ ଟ୍ୟୁବ୍ ମାଧ୍ୟମରେ ପିଲା ଜନ୍ମ କରାଯାଇପାରିବ । ଲୋକମାନେ ଦୂର ଦୂରାନ୍ତର ଲୋକମାନଙ୍କ ସହ କଥାହେବା ବେଳେ ପରସ୍ପରର ମୁହଁ ଦେଖିପାରିବେ । ସେ ଏସବୁକୁ ଅଶୀ ବର୍ଷ ତଳେ ପରିକଳ୍ପନା କରିଥିଲେ । ଏହିପରି ବହୁ ବିଷୟରେ ସେ ଭବିଷ୍ୟବାଣୀ କରିଛନ୍ତି । ଏହା ଅନେକଙ୍କୁ ଆଶ୍ଚର୍ଯ୍ୟ କରିଥାଏ । ତାଙ୍କର ବହୁ ଭବିଷ୍ୟ ଉକ୍ତିମାନ ଏବେ ବାସ୍ତବତାରେ ରୂପାନ୍ତରିତ ହୋଇପାରିଛି । ଏହା ଅନେକଙ୍କୁ ଆଶ୍ଚର୍ଯ୍ୟ କରିଥାଏ ।

(i) ଅନେକ ନେତା ବିଶ୍ୱାସ କରୁଥିଲେ ଯେ ଭାରତର ରାଜନୈତିକ ସ୍ୱାଧୀନତା ସହ ଭାରତୀୟମାନେ ନିଜକୁ ନିଜେ ଶାସନ କରିପାରିବେ ଓ ସବୁ ସ୍ତରରେ ସ୍ୱାଧୀନତା ଓ ସମତା ପ୍ରତିଷ୍ଠା ହୋଇପାରିବ । ପେରିୟାରଙ୍କର ବିଚାର ଥିଲା ଯେ ଯେତେବେଳେ ଲୋକମାନଙ୍କର ଆତ୍ମ ମର୍ଯ୍ୟାଦା, ଶିକ୍ଷା, ସଚେତନତା ଓ ସମାନତାର ଭାବନା ନାହିଁ, ଏହାକୁ କିପରି ବାସ୍ତବ ସ୍ୱାଧୀନତା କୁହାଯାଇ ପାରିବ ! ଆମେ ବ୍ରିଟିଶ ନିୟନ୍ତ୍ରଣରୁ ମୁକ୍ତ ହେଲେ ମଧ୍ୟ ଆମେ ଉଚ୍ଚ ଜାତି

ଲୋକଙ୍କର ଶାସନ ଓ ନିୟନ୍ତ୍ରଣ ଭିତରେ ରହିବା । ଜାତିବାଦୀ ବ୍ୟବସ୍ଥାରୁ ମୁକ୍ତ ହେବା ପାଇଁ ଆମର ସଂଗ୍ରାମ ଅବ୍ୟାହତ ରହିବ । ତାହେଲେ ଯାଇ ଆମେ ସମ୍ମାନର ସହ ସ୍ୱାଧୀନତା ପାଇପାରିବା । ତାହା ହିଁ ହେବ ପ୍ରକୃତ ସ୍ୱାଧୀନତା ।

ସାଂପ୍ରତିକ ସମାଜରେ ଖାଦ୍ୟ, ଭାଷା, ପୋଷାକ, ଶିକ୍ଷା ଭାବ ପ୍ରକାଶ ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ଆମ ଉପରେ ନିୟନ୍ତ୍ରଣ ରଖାଯାଉଛି । ଲୋକଙ୍କର ଅନେକ ଅଧିକାର ଉପରେ ଉଚ୍ଚଜାତିର ଲୋକମାନେ ନିୟନ୍ତ୍ରଣ ସ୍ଥାପନ କରିଛନ୍ତି । ସେମାନଙ୍କ ବିଚାରଧାରାକୁ ସେମାନେ ସମାଜ ଉପରେ ଲଦି ଦେବାରେ ସମର୍ଥ ହୋଇଛନ୍ତି । ପେରିୟାର ଯାହା ଶହେ ବର୍ଷ ତଳେ ପରିକଳ୍ପନା କରିଥିଲେ ତାହା ସଂପ୍ରତି ଦେଖାଯାଉଛି ।

(ii) ହିନ୍ଦୀ ଭାଷାକୁ ବାଧ୍ୟତାମୂଳକ କରିବା ପ୍ରସ୍ତାବକୁ ପେରିୟାର ବିରୋଧ କରୁଥିଲେ । ଯଦି ହିନ୍ଦୀ ଭାଷାକୁ ଗ୍ରହଣ କରାଯାଏ ତେବେ ସଂସ୍କୃତପରି ଏକ ମୃତ ଭାଷାକୁ ପୁନଶ୍ଚ ପ୍ରାଧାନ୍ୟ ଦିଆଯିବ । ଏବେ ସେଦିଗରେ ମଧ୍ୟ ପ୍ରୟାସ ହୋଇଛି । ସରକାର ଓ ବ୍ରାହ୍ମଣବାଦୀ ଗୋଷ୍ଠୀ ସଂସ୍କୃତ ଭାଷାକୁ ବ୍ୟାପକ କରିବା ପାଇଁ ପ୍ରୟାସ କରୁଛନ୍ତି । ହିନ୍ଦୀର ପ୍ରଚଳନ ଏକ ମଧ୍ୟବର୍ତ୍ତୀ ବ୍ୟବସ୍ଥା, ଏହା ମାଧ୍ୟମରେ ସଂସ୍କୃତ ଭାଷାକୁ ପ୍ରସାର କରାଯିବ । ତାହା ହିଁ ବ୍ରାହ୍ମଣବାଦୀ ଆରଏସଏସ ଗୋଷ୍ଠୀରେ ଆଭିମୁଖ୍ୟ ହୋଇରହିଛି ।

(iii) ଯଦି ସମାଜରେ ହିନ୍ଦୁ ଧର୍ମର ପ୍ରାଧାନ୍ୟ ବୃଦ୍ଧିପାଏ, ତେବେ ଆମେ ସମସ୍ତେ ଶୂଦ୍ର ହୋଇରହିବା । ଆମେ ଅବ୍ରାହ୍ମଣମାନେ ଯଦି ଆତ୍ମମର୍ଯ୍ୟାଦା, ସ୍ୱାଧୀନତା ଓ ସମତାର ସହ ବଞ୍ଚିବାକୁ ଚାହିଁବା, ତେବେ ଆମକୁ ଧର୍ମ, ଶାସ୍ତ୍ର, ପୁରାଣକୁ ନଷ୍ଟ କରିବାକୁ ହେବ । ଏସବୁର ପ୍ରଭାବ ଯଦି ସମାଜରେ ରହେ ଆମେ ଶୂଦ୍ର ଭାବେ ନ୍ୟୂନ ହୋଇ ବଞ୍ଚିବା । ସାଂପ୍ରତିକ ସ୍ଥିତ ସେହିଦିଗକୁ ଯିବା ମନେହେଉଛି । ହିନ୍ଦୁତ୍ୱକୁ ନେଇ ବିଚାରବୋଧର ବିକାଶ ଫଳରେ ଆମେମାନେ ଶୂଦ୍ର ସ୍ତରରେ ନ୍ୟୂନ ବିବେଚିତ ହେଉଛେ । ଆମର ତାମିଲ

ଭାଷାକୁ ଅବମୂଲ୍ୟାୟନ କରାଯାଉଛି । ଆମର ପ୍ରାଚୀନ ସଂସ୍କୃତି ଓ ପରଂପରାକୁ ଅନ୍ୟମାନେ ନ୍ୟୁନ କରିବାକୁ ପ୍ରୟାସ କରୁଛନ୍ତି ।

ନୂତନ ଶିକ୍ଷାନୀତି ଆଧାରରେ ଜାତିଭିତ୍ତିକ ବୃତ୍ତିର ପ୍ରବର୍ତ୍ତନ ପାଇଁ ପ୍ରୟାସ କରାଯାଉଛି । ନିଟ୍ ପରୀକ୍ଷା ମାଧ୍ୟମରେ ଅନଗ୍ରସର ଶ୍ରେଣୀର ଛାତ୍ରମାନଙ୍କୁ ସେମାନେ ଡାକ୍ତରୀ ଶିକ୍ଷାରୁ ବଞ୍ଚିତ କରୁଛନ୍ତି । ସେହିପରି ଆମର କଳା, ସଂସ୍କୃତି ଇତ୍ୟାଦି ଉପରେ ମଧ୍ୟ ଆକ୍ରମଣ ହେଉଛି । କରୁଣାନିଧି ମୁଖ୍ୟମନ୍ତ୍ରୀ ଥିବା ସମୟରେ ବହୁ ପ୍ରୟାସ ଫଳରେ ତାମିଲ ଭାଷାକୁ ଏକ ଶାସ୍ତ୍ରୀୟ ଭାଷା ଭାବରେ ସ୍ୱୀକୃତି ମିଳିପାରିଛି । ତେବେ ଏବେ ତାମିଲ ଭାଷାର ସେହି ମହତ୍ତ୍ୱକୁ ନଷ୍ଟ କରିବାକୁ ଉଦ୍ୟମ କରାଯାଉଛି । ତାମିଲ ଭାଷାର ମହତ୍ତ୍ୱ କିପରି ନ୍ୟୁନ ହେଉ ଏଥି ପାଇଁ କେତେକ ତାମିଲ କାର୍ଯ୍ୟାଳୟକୁ ବନ୍ଦ କରିବାକୁ ଉଦ୍ୟମ ହେଉଛି । ସେହିପରି ତାମିଲ ସଂସ୍କୃତିର ମହତ୍ତ୍ୱକୁ ମଧ୍ୟ ଦବାଇବାକୁ ଚେଷ୍ଟା ହେଉଛି । କିଲାଡେ ଠାରେ ହୋଇଥିବା ପ୍ରତ୍ନତାତ୍ତ୍ୱିକ ଖନନରୁ ଦ୍ରାବିଡ ସଂସ୍କୃତିର ବହୁ ପ୍ରାଚୀନତାର ପ୍ରମାଣ ମିଳିଥିଲା । ତେବେ ଉଦ୍ଦେଶ୍ୟମୂଳକ ଭାବେ ସେହି ପ୍ରତ୍ନତାତ୍ତ୍ୱିକ କାର୍ଯ୍ୟକ୍ରମକୁ ବନ୍ଦ କରି ଦିଆଗଲା ।

ପେରିୟାର ବହୁ ପୂର୍ବରୁ ପରିକଳ୍ପନା କରିଥିଲେ ଯେ ଯଦି ଧର୍ମର ପ୍ରାଧାନ୍ୟ ବୃଦ୍ଧି ପାଏ ତେବେ ସମାଜର ଅବକ୍ଷୟ ହେବ । ଯେତେବେଳେ ଧର୍ମ ସହ ରାଜନୀତି ମିଶିଯିବ, ସେତେବେଳେ ବହୁଜନ ଲୋକଙ୍କର ସ୍ଥାନ ନ୍ୟୁନ ହୋଇଚାଲିବ ଓ ସେମାନଙ୍କର ସ୍ୱାର୍ଥରେ ଆଘାତ ଆସିବ । ବ୍ରାହ୍ମଣମାନଙ୍କର ସଂଖ୍ୟା ଶତକଡା ତିନି ଭାଗ ହେଲେ ମଧ୍ୟ ସେମାନେ ସମାଜର ସବୁ ସ୍ତରରେ କ୍ଷମତା ଓ ପ୍ରତିପତି ବିସ୍ତାର କରିବେ । ଯାହା ବ୍ରିଟିଶ ସରକାରରେ ହେଉଥିଲା ତାହା ମଧ୍ୟ ସ୍ୱାଧୀନ ଭାରତରେ ଅବ୍ୟାହତ ରହିବ ।

ପେରିୟାରଙ୍କ ଉପଲବ୍ଧି ଥିଲା ଯେ ଯଦି ଏକ ଭାଷାରେ ସମୟର ପରିବର୍ତ୍ତନ ସହ ନୂଆ ନୂଆ ଭାବଧାରା ସ୍ଥାନ ନ ପାଏ ତେବେ ସେ ଭାଷା ମୃତ ଭାଷାରେ ପରିଣତ ହୋଇଯିବ । ବହୁ ଅତୀତରେ ଯେତେବେଳେ ଲୋକମାନେ ଆଦିମ ସ୍ତରରେ ରହିଥିଲେ ସେହି ସମୟରେ ତାମିଲ ଭାଷା ଯେଉଁ ସ୍ଥିତିରେ ରହିଥିଲା,

ଏହା ସେହି ସ୍ଥିତିରେ ରହିବା ଯଥାର୍ଥ ନୁହେଁ । ଏବେ ବିଜ୍ଞାନ, ପ୍ରଯୁକ୍ତି ଓ ଜୀବନଧାରାରେ ଯେଉଁ ସବୁ ପରିବର୍ତ୍ତନ ମାନ ହୋଇଛି ସେସବୁର ଆଧାର ଭାଷାରେ ପ୍ରତିଫଳିତ ହେଉଥିବା ଦରକାର । ଅଶୀ ବର୍ଷ ତଳେ କମ୍ବ ରାମାୟଣ, ଶିବଙ୍କ କାହାଣୀ ଇତ୍ୟାଦି ଯେଉଁ ଆଦୃତି ଭାଷାରେ ଲାଭ କରିଥିଲା, ଭାଷା ସେହି ସ୍ତରରେ ରହିଗଲେ ଭାଷାର ବିକାଶ ସମ୍ଭବ ହେବ ନାହିଁ । ବରଂ ସକଳ ବୈଜ୍ଞାନିକ ବିକାଶ ନେଇ ଅନୁବାଦ ତାମିଲ ଭାଷାରେ ହେବା ଦରକାର, ତାହାହେଲେ ଭାଷା ଋଦ୍ଧିମନ୍ତ ହେବା ସହ ଏହା ଜୀବନ୍ତ ହୋଇ ରହିବ । ଏବେ ତାମିଲ ଭାଷାକୁ ଜ୍ଞାନ ବିଜ୍ଞାନର ଭାଷା କରିବାକୁ ଯେଉଁ ପ୍ରୟାସ ହୋଇଛି ସେହି ସ୍ୱପ୍ନ ଅଶୀବର୍ଷ ପୂର୍ବେ ପେରିୟାର ପ୍ରକାଶ କରିଥିଲେ । ସ୍କୁଲରେ ମାଟ୍ରିକ ପାସ କରିବା ପର୍ଯ୍ୟନ୍ତ ପିଲାମାନେ ତାମିଲ ଭାଷାରେ ସବୁ ଅଧ୍ୟୟନ କରୁଥିଲେ । କିନ୍ତୁ କଲେଜ ସ୍ତରରେ ବା ଉଚ୍ଚ ଶିକ୍ଷା କ୍ଷେତ୍ରରେ ତାମିଲରେ ପଢ଼ିବାପରି କୌଣସି ପୁସ୍ତକ ନଥିଲା । ତେଣୁ ବିଭିନ୍ନ ବହି ତାମିଲ ଭାଷାରେ ଅନୁବାଦିତ ହେବାକୁ ଭାଷାର ପରିଭାଷା ବୃଦ୍ଧି କରିବାକୁ ହେବ, ଯାହା ପେରିୟାର ବହୁଦିନ ତଳେ କଳ୍ପନା କରିଥିଲେ । ବିଶେଷକରି ହିନ୍ଦୀ ଭାଷା ଓ କେତେକ ପୌରାଣିକ ବିଷୟକୁ ଲୋକଙ୍କ ଉପରେ ଭବିଷ୍ୟତରେ ଲଦିଦେବାକୁ ଉଦ୍ୟମ ହେବ ବୋଲି ସେ ପରିକଳ୍ପନା କରିଥିଲେ, ଯାହା ଏବେ ରୂପରେଖ ନେଉଛି ।।

## ଭବିଷ୍ୟତ ନେଇ ପେରିୟାରଙ୍କ କଳ୍ପନା

ନାରୀ ପୁରୁଷଙ୍କ ପରି ସମାନ ହୋଇ ବଞ୍ଚିବା ଦରକାର । ସମସ୍ତ ପ୍ରାଥମିକ ବିଦ୍ୟାଳୟରେ ମହିଳାମାନଙ୍କୁ ଶିକ୍ଷୟିତ୍ରୀ ଭାବେ ନିଯୁକ୍ତ କରାଯିବା ଆବଶ୍ୟକ । ପିଲାର ପ୍ରଥମ ଶିକ୍ଷାଦାତା ହେଉଛନ୍ତି ମା । ସମସ୍ତ ମହିଳାମାନେ ଶିକ୍ଷାଲାଭ କରିବାକୁ ଯତ୍ନ ଦିଆଯିବ । ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ବିଦ୍ୟାଳୟରେ କେବଳ ମହିଳାମାନେ ଶିକ୍ଷୟିତ୍ରୀ ରହିପାରିବେ । ଝିଅମାନେ ନିଜର ସୁରକ୍ଷା ପାଇଁ କରାଟେ ରେସିଲିଂ ଇତ୍ୟାଦି ଶିକ୍ଷାକରିବା ଉଚିତ । ସେହିପରି ଝିଅମାନେ ତାଙ୍କର ପୋଷାକ ଇତ୍ୟାଦିରେ ନିଜ ରୁଚିର ବା ପୁଅଙ୍କ ପରି ପୋଷାକ ପିନ୍ଧିବା ଦରକାର । ପେରିୟାର ଯାହା ସତୁରୀ ଅଶୀ ବର୍ଷ ତଳେ ଚିନ୍ତା କରିଥିଲେ ତାହା ଏବେ କାର୍ଯ୍ୟକାରୀ ହେଉଛି ।

ଗାଡିମାନେ ପେଟ୍ରୋଲ, ଡିଜେଲ ଇତ୍ୟାଦି ପରିବର୍ତ୍ତେ ବ୍ୟାଟେରିରେ ଭବିଷ୍ୟତରେ ଚାଲିବ । ଚୀନରେ ବହୁ କାରମାନ ବ୍ୟାଟେରି ସାହାଯ୍ୟରେ ଚାଲୁଛି । ଭାରତରେ ମଧ୍ୟ ଏହି ପ୍ରକ୍ରିୟା ଆରମ୍ଭ ହୋଇଛି । ବେଟାରିମାନଙ୍କୁ ଚାର୍ଜ କରି ସେଥିରେ ଗାଡି ଚଳାଯିବ, ଫଳରେ ପେଟ୍ରୋଲ ବା ଡିଜେଲ ପୋଡି ପରିବେଶକୁ ପ୍ରଦୂଷିତ କରାଯିବ ନାହିଁ । ଯେଉଁମାନେ ଆମିଷ ଖାନ୍ତି ସେମାନେ ସ୍ୱାସ୍ଥ୍ୟ ଉପଯୋଗୀ ଯେକୌଣସି ମାଂସ ଖାଇପାରିବେ । ମାଂସସେବନ ସହ ଧାର୍ମିକ କଟକଣା ରହିବା ଯଥାର୍ଥ ନୁହେଁ ।

ମହାତ୍ମା ଗାନ୍ଧୀ ଟ୍ରାକ୍ଟରକୁ ମନ୍ଦ କହୁଥିଲେ । ପେରିୟାର ଚାଷ କାର୍ଯ୍ୟରେ ଟ୍ରାକ୍ଟରମାନଙ୍କୁ ବିନିଯୋଗ କରିବାକୁ ପ୍ରାଧାନ୍ୟ ଦେଉଥିଲେ । ଶିଳ୍ପବିକାଶ ପାଇଁ ଯନ୍ତ୍ରଶିଳ୍ପର ବିରୋଧ କରିବା ଅର୍ଥ ଆମେ ଲୋକମାନଙ୍କର ବିକାଶ ଓ ଆର୍ଥିକ ପ୍ରଗତି କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟିକରିବା

ମନୁଷ୍ୟ ପକ୍ଷୀପରି ଆକାଶରେ ବିମାନ ଯାତ୍ରା କରିପାରିବ । ଏକବିଂଶ ଶତାବ୍ଦୀର ବିକାଶ କ୍ଷେତ୍ରରେ ପେରିୟାର ବିଂଶଶତାବ୍ଦୀର ମଧ୍ୟ ଭାଗରେ ବିଭିନ୍ନ ପରିକଳ୍ପନାମାନ କରିଥିଲେ । ଏକବିଂଶ ଶତାବ୍ଦୀରେ ଲୋକମାନଙ୍କର ହାରାହାରି ବୟସ ଶହେ ବର୍ଷ ହୋଇପାରିବ । ଆଗକୁ କ୍ଷୁଦ୍ର ଏୟାରବସ ବାହାରିବ, ଯେଉଁଥିରେ ଜଣେ ବ୍ୟକ୍ତି ଇଚ୍ଛାନୁସାରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇପାରିବ । ସିଙ୍ଗାପୁରସ୍ଥିତ ଜାତୀୟ ବିଶ୍ୱବିଦ୍ୟାଳୟର ଛାତ୍ରମାନେ ଏଥିପାଇଁ ୭୦ କି.ଗ୍ରା.ର ବିମାନର ମଡେଲ ପ୍ରସ୍ତୁତ କରିଛନ୍ତି । ଏଥିରେ ଜଣେ ଆକାଶ ମାର୍ଗରେ ଯାତ୍ରା କରି ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିପାରିବ । ଡ. ଜିର୍ଗଙ୍କ ତତ୍ତ୍ୱାବଧାନରେ ଛାତ୍ର ମାନେ ଏହିପରି ବିମାନର ମଡେଲ ପ୍ରସ୍ତୁତ କରିଛନ୍ତି । ଏହି ମଡେଲରେ ୨୪ଟି ମଟର ଲାଗିଛି । ପ୍ରତ୍ୟେକ ମଟର କାର୍ଯ୍ୟ କରିଥାଏ । ଏହି ଯାନର ପରମାନ ଆଲୁମିନିୟମରେ ନିର୍ମାଣ କରାଯାଇଛି । ଏହାର ନିର୍ମାଣ କ୍ଷେତ୍ରରେ ପ୍ରୟୋଗ ହୋଇଥିବା ଯାନ୍ତ୍ରିକ କୌଶଳର ବିବରଣୀ ଟାଇମ୍ସ ଅଫ୍ ଇଣ୍ଡିଆରେ ୮ ଡିସେମ୍ବର ୨୦୧୫ରେ ପ୍ରକାଶ ପାଇଥିଲା । ବହୁ ଦିନ ତଳେ ପେରିୟାର ଯାହା ପରିକଳ୍ପନା କରିଥିଲେ ତାହା ଏବେ ବାସ୍ତବତାର ରୂପ ନେଇଛି ।

ବ୍ରାହ୍ମଣମାନେ ଯେ ଦିନେ ମହାତ୍ମାଗାନ୍ଧୀଙ୍କୁ ହତ୍ୟା କରିବେ ଏହା ପେରିୟାର ଗାନ୍ଧୀଙ୍କ ହତ୍ୟାର ପୂର୍ବରୁ ପ୍ରକାଶ କରିଥିଲେ । ଏକଦା ଗାନ୍ଧୀଜୀ ଈଶ୍ୱର, ଧର୍ମ, ଶାସ୍ତ୍ର, ବ୍ରାହ୍ମଣମାନଙ୍କ ସଂପର୍କରେ ଆର. କେ ଶନ୍ମୁଗମ ଚେଟିୟାରଙ୍କ ସହ ଆଲୋଚନା କରୁଥିଲେ । ଚେଟିୟାରଙ୍କର ଯୁକ୍ତିସଂଗତ ଉପସ୍ଥାପନ ଗାନ୍ଧୀଙ୍କୁ ଆଶ୍ଚର୍ଯ୍ୟ କରିଥିଲା । ଗାନ୍ଧୀଜୀ ଚେଟିୟାରଙ୍କୁ ପ୍ରଶ୍ନ କଲେ – ଆପଣ ଏତେ ସୁନ୍ଦର ଓ ଯୁକ୍ତି ସଂଗତ ବିଷୟ କିପରି କହିପାରୁଛନ୍ତି ? ଆପଣ କାହାଠାରୁ ଏସବୁ ଶିକ୍ଷା କରିଛନ୍ତି ?

ଚେଟିୟାର କହିଲେ – ମୋର ଗୁରୁ ହେଉଛନ୍ତି ଅତୀତରେ ଆପଣଙ୍କର ଅନୁଗାମୀ ଥିବା ଏରୋଡର ରାମସାମୀ ନାଇକର ।

ଗାନ୍ଧୀ ଏଥିରେ ଆଶ୍ଚର୍ଯ୍ୟ ହୋଇ କହିଲେ – ନାଇକର ଆପଣଙ୍କର ଗୁରୁ ? ସେ ଏହି ସବୁ ମତପୋଷଣ କରନ୍ତି ବୋଲି ମୁଁ ଏପର୍ଯ୍ୟନ୍ତ ଜାଣି ନାହିଁ । ଆମେ ଉଭୟ ପରସ୍ପରକୁ ସାକ୍ଷାତକରି ଏହି ବିଷୟରେ ଆଲୋଚନା କରିବୁ ଓ ସମାଧାନ ବାହାର କରିବୁ । ଆପଣ ଏଥି ପାଇଁ ସମୟ ସ୍ଥିର କରନ୍ତୁ ।

ଚେଟିୟାର ଗାନ୍ଧୀଜୀଙ୍କୁ ସମ୍ମତି ଦେଇ ଫେରିଆସିଲେ । ତାଙ୍କର ଗାନ୍ଧୀଜୀଙ୍କ ସହ ଯାହା ଆଲୋଚନା ହୋଇଥିଲା ତାହା ସେ ପେରିୟାରଙ୍କୁ ଜଣାଇଲେ । ୧୯୨୭ରେ ଗାନ୍ଧୀଜୀ ବାଙ୍ଗାଲୋର ଟିକିଏ ବିଶ୍ରାମ ନେବାକୁ ଆସିଲେ । ସେ ମହିଶୂର ମହାରାଜାଙ୍କର ଅତିଥି ହୋଇଥିଲେ । ପେରିୟାରଙ୍କୁ ଡାକିବା ପାଇଁ ସେ ଏସ. ରାମନାଥନଙ୍କୁ ପଠାଇଲେ । ପେରିୟାର ରାମନାଥନଙ୍କ ସହ ବାଙ୍ଗାଲୋର ଆସିଲେ । ରାଜାଜୀ ଓ ଦେବଦାସ ଗାନ୍ଧୀ ପେରିୟାରଙ୍କୁ ଗେଟରେ ସ୍ୱାଗତକରି ତାଙ୍କୁ ଗାନ୍ଧୀଜୀଙ୍କ ପାଖକୁ ନେଇଗଲେ । ଗାନ୍ଧୀଜୀ ଓ ପେରିୟାରଙ୍କ ଭିତରେ ଏହି ଆଲୋଚନା ହୋଇଥିଲା ।

ଗାନ୍ଧୀ     ଆପଣ କ'ଣ କୌଣସି ବ୍ରାହ୍ମଣଙ୍କୁ ବିଶ୍ୱାସ କରନ୍ତି ନାହିଁ ।

ପେରିୟାର :   ନା, ମୁଁ କରେ ନାହିଁ ।

ଗାନ୍ଧୀ ଆପଣ ରାଜାଜୀଙ୍କୁ ବିଶ୍ୱାସ କରନ୍ତି ନାହିଁ ?

ପେରିୟାର : ସେ ବହୁତ ଭଲ ଲୋକ । ସେ ସତ୍ୟବାଦୀ ଓ ନିଃସ୍ୱାର୍ଥପର । ତେବେ ସେ ତାଙ୍କ ଜାତିର ଲୋକଙ୍କ ପ୍ରତି ସମର୍ପିତ । ସେ ଅନେକ କିଛି ତ୍ୟାଗ କରିଛନ୍ତି । ତେବେ ସବୁ ଜାତିର ଲୋକଙ୍କ ସୁବିଧାକୁ ସେ ସୁରକ୍ଷା ଦିଅନ୍ତି ନାହିଁ ।

ଗାନ୍ଧୀ ଏହା ମୋ ପାଇଁ ଆଶ୍ଚର୍ଯ୍ୟ । ଆପଣ କ'ଣ କହିବାକୁ ଚାହାନ୍ତି ଯେ ଜଣେ ବି ବ୍ରାହ୍ମଣ ବିଶ୍ୱାସଯୋଗ୍ୟ ନୁହନ୍ତି ?

ପେରିୟାର : ଥାଇପାରନ୍ତି । କିନ୍ତୁ ମୁଁ ସେପରି କୌଣସି ବ୍ୟକ୍ତିଙ୍କ ସଂପର୍କରେ ଆସି ନାହିଁ ।

ଗାନ୍ଧୀ ସେପରି କୁହନ୍ତୁ ନାହିଁ । ମୁଁ ଜଣେ ବ୍ରାହ୍ମଣଙ୍କୁ ଜାଣେ ଯେ ସେ ବହୁତ ଭଲ । ସେ କିଏ ଜାଣନ୍ତି ? ସେ ହେଉଛନ୍ତି ଗୋପାଳକୃଷ୍ଣ ଗୋଖଲେ ।

ପେରିୟାର : ଆଶ୍ଚର୍ଯ୍ୟ । ଆପଣଙ୍କ ପରି ଜଣେ ମହାତ୍ମା ମାତ୍ର ଜଣେ ବ୍ରାହ୍ମଣଙ୍କୁ ଦେଖିଛନ୍ତି ଯେ ଦୁନିଆରେ ବହୁତ ଭଲ ଲୋକ । ଆମ ପରି ସାଧାରଣ ମଣିଷ କିପରି ଭଲ ବ୍ରାହ୍ମଣ ଦେଖିବାକୁ ପାଇବୁ ?

ଗାନ୍ଧୀ ଆପଣଙ୍କ ମତରେ ହିନ୍ଦୁଧର୍ମର ବିଲୋପ ଦରକାର ଓ ବ୍ରାହ୍ମଣମାନଙ୍କର ବିଲୋପ ମଧ୍ୟ ଆବଶ୍ୟକ । ଏହା ଠିକ୍ କି ?

ପେରିୟାର : ହିନ୍ଦୁଧର୍ମର ବିଲୋପଦ୍ୱାରା ବ୍ରାହ୍ମଣବାଦ ବିଲୋପ ଘଟିବ । କାରଣ ହିନ୍ଦୁଧର୍ମ ରହିଛି ବୋଲି ବ୍ରାହ୍ମଣବାଦ ରହିଛି । ହିନ୍ଦୁଧର୍ମ ଅନୁଯାୟୀ ଆପଣ, ମୁଁ ହେଉଛେ ଶୂଦ୍ର । ହିନ୍ଦୁ ବିଧାନ ଅନୁଯାୟୀ ସମସ୍ତ କ୍ଷମତା ବ୍ରାହ୍ମଣଙ୍କ ଉପରେ ନ୍ୟସ୍ତ ହୋଇରହିଛି ।

ଗାନ୍ଧୀ ଆପଣଙ୍କ ମତ ଠିକ୍ ନୁହେଁ । ମୁଁ ଯାହା କହେ, ବ୍ରାହ୍ମଣମାନେ ଶୁଣନ୍ତି । ଆପଣ ଯେଉଁ ସବୁ ଦୁର୍ବଳତା ହିନ୍ଦୁଧର୍ମରେ ଦର୍ଶାଉଛନ୍ତି, ତାହାର ସଂଶୋଧନ ହୋଇପାରିବ ।

ପେରିୟାର : ମୋ ମତରେ ଆପଣଙ୍କ ପକ୍ଷରେ ଏହା ସମ୍ଭବ ନୁହେଁ । ଯଦି ବି ଆପଣ ହିନ୍ଦୁ ଧର୍ମରେ କିଛି ସଂସ୍କାର ଆଣନ୍ତି ଆପଣଙ୍କ ପରେ ଅନ୍ୟ କେହି ମହାତ୍ମା ଆସି ପୁଣି ପୂର୍ବ ସ୍ଥିତି ଆଣିପାରନ୍ତି, ଯାହା ବର୍ତ୍ତମାନ ରହିଛି ।

ଗାନ୍ଧୀ ଭବିଷ୍ୟତରେ ସେପରି କିଛି ସହଜରେ କେହି କରିବା ସମ୍ଭବ ନୁହେଁ ।

ପେରିୟାର : ମୁଁ ଏହା ବିଶ୍ୱାସ କରୁଛି । ଆପଣ ମୋତେ ଏଥି ପାଇଁ କ୍ଷମାକରନ୍ତୁ । ହିନ୍ଦୁ ଧର୍ମକୁ ସ୍ଥିତା ବସ୍ଥାରେ ରଖିଲେ ସେଥିରେ କୌଣସି ସ୍ଥାୟୀ ପରିବର୍ତ୍ତନ ଆପଣ ଆଣି ପାରିବେ ନାହିଁ । ଯେଉଁ ମୁହୂର୍ତ୍ତରେ ସେମାନେ ଜାଣିବେ ଯେ ଆପଣଙ୍କ ମତ ସେମାନଙ୍କ ସ୍ୱାର୍ଥର ପରିପନ୍ଥୀ, ସେମାନେ ଆପଣଙ୍କୁ ବିରୋଧ କରିବେ ।

ବର୍ତ୍ତମାନ ସୁଦ୍ଧା କୌଣସି ମହାତ୍ମା ଭାରତୀୟ ସମାଜକୁ ପରିବର୍ତ୍ତନ କରିପାରି ନାହାନ୍ତି । ପରିବର୍ତ୍ତନ ଚାହୁଁଥିବା ଲୋକମାନଙ୍କୁ ବ୍ରାହ୍ମଣମାନେ ସହ୍ୟକରି ପାରନ୍ତି ନାହିଁ ।

ଗାନ୍ଧୀ ଆପଣ ବ୍ରାହ୍ମଣମାନଙ୍କ ବିଷୟରେ ଏକ ଭୁଲ ଧାରଣା ପୋଷଣ କରୁଛନ୍ତି । ତାହା ଆପଣଙ୍କର ମାନସିକତାକୁ ପ୍ରଭାବିତ କରିରଖିଛି । ଆମେ ଏ ବିଷୟରେ ଆଲୋଚନା ପୂର୍ବରୁ କରିଥିଲେ ମଧ୍ୟ ଆମେ କୌଣସି ସିଦ୍ଧାନ୍ତକୁ ଆସିପାରୁ ନାହେଁ । ଆମେ ଆଗକୁ ଦୁଇ ତିନି ଥର ଏକାଠି ଆଲୋଚନା କରିବା, ଫଳରେ ଆମେ ଏକ ସିଦ୍ଧାନ୍ତରେ ଉପନୀତ ହୋଇପାରିବା ।

**(କୁଦି ଅରସୁ, ୧୯୨୭, ଉନମାଇ ୧୪.୯.୭୦)**

ପେରିୟାର ରାଜାଜୀଙ୍କ ମତକୁ ଅସ୍ୱୀକାର କରିଥିଲେ । ପେରିୟାରଙ୍କ ଅନୁଷ୍ଠାନ"ଆତ୍ମମର୍ଯ୍ୟାଦା ସଂଗଠନ" ଭଲଭାବେ କାର୍ଯ୍ୟକରୁଛି ।

ପେରିୟାର ନିଜ ହାତଲେଖା ଅଟୋଗ୍ରାଫ ଦେବାବେଳେ ପ୍ରତ୍ୟେକ ବ୍ୟକ୍ତିଠାରୁ ଚାରି ଅଣା ଲେଖାଏଁ ସଂଗ୍ରହ କରୁଥିଲେ । ସେହି ଟଙ୍କା ସର୍ବ ସାଧାରଣଙ୍କ ହିତ ପାଇଁ ସେ ବିନିଯୋଗ କରୁଥିଲେ । ସର୍ବସାଧାରଣଙ୍କ ଉପକାର ପାଇଁ ପେରିୟାର ଯେଉଁ ସଂପତ୍ତି ଦାନ କରିଥିଲେ ତାହାର ରକ୍ଷଣାବେକ୍ଷଣ ପାଇଁ ଧ୍ୟାନ ଦେଇଥିଲେ । ସେହି ଉଦ୍ଦେଶ୍ୟରେ ସେ ମାନିଆମାଇଙ୍କୁ ବିବାହ କଲେ । ପେରିୟାର ଯେଉଁ ଟ୍ରଷ୍ଟ କରିଥିଲେ ସେଥିରେ ମାନିଆମାଇଙ୍କୁ ମୁଖ୍ୟକରି ରଖିଲେ । ଆନାଦୁରାଇ ଓ କେତେକ ମତପୋଷଣ କଲେ ଯେ ସେ ମାନିଆମାଇଙ୍କୁ ବିବାହ କରିବାରୁ ସେମାନେ ଦ୍ରାବିଡ କାଜାଗମ ଦଳ ଛାଡିଛନ୍ତି । ଏହାପରେ ସେମାନେ ଡିମେକେ ଦଳ ଗଠନ କଲେ ।

ରାଜାଜୀ ପେରିୟାରଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ ଓ ସେ ପେରିୟାରଙ୍କ ବାପାଙ୍କ ପାଇଁ ଟ୍ରଷ୍ଟର ଚିଠା ପ୍ରସ୍ତୁତ କରିଥିଲେ । ରାଜାଜୀ ସେଲମ ମୁନସିପାଲିଟିର ଚେୟାରମାନ ଥିବା ବେଳେ ପେରିୟାର ଏରୋଡ ମୁନସିପାଲିଟିର ଚେୟାରମାନ ରହିଥିଲେ ।

ପରେ ରାଜାଜୀ ଗର୍ଭର୍ଣ୍ଣର ଜେନେରାଲ ହୋଇଥିଲେ । ପେରିୟାର ମାନିଆମାଇଙ୍କୁ ବିବାହ କରିବା ନେଇ ରାଜାଜୀଙ୍କର ମତାମତ ଲୋଡିଲେ । ରାଜାଜୀ ତାଙ୍କର ମତାମତ ପେରିୟାରଙ୍କୁ ଜଣାଇଲେ । ପେରିୟାର ରାଜାଜୀ କ'ଣ ଲେଖିଥିଲେ ତାହା ପ୍ରକାଶ କଲେ ନାହିଁ । ଲୋକମାନେ ଧାରଣା କଲେ ଯେ ରାଜାଜୀ ସମ୍ଭବତଃ ପେରିୟାର ମାନିଆମାଇଙ୍କୁ ବିବାହ କରିବାକୁ ପରାମର୍ଶ ଦେଇଛନ୍ତି ।

ପେରିୟାରଙ୍କ ମୃତ୍ୟୁପରେ ରାଜାଜୀଙ୍କ ପତ୍ରଟି ସର୍ବସାଧାରଣରେ ପ୍ରକାଶିତ ହେଲା । ସେ ଲେଖିଥିଲେ –

**ପ୍ରିୟ ବନ୍ଧୁ,**

ମୁଁ ମୋର ଗସ୍ତ କାର୍ଯ୍ୟକ୍ରମ ସାରି ଫେରିବା ପରେ ଆଜି ଆପଣଙ୍କର ପତ୍ର ପାଇଲି । ଆପଣ ମୋ ପାଇଁ ଯେଉଁ ଆନ୍ତରିକତା ବ୍ୟକ୍ତ କରିଛନ୍ତି ସେ ପାଇଁ ମୁଁ ଅତ୍ୟନ୍ତ ଆନନ୍ଦିତ । ଆମ ଭିତରର ଏହି ଆନ୍ତରିକତା ଦେଶ ପାଇଁ ମଙ୍ଗଳକର ହେବ ।

ଆପଣ ପତ୍ରରେ ଯାହା ଲେଖିଛନ୍ତି, ସେଥିରେ କେତେକ ଅସୁବିଧା ରହିଛି । ମୁଁ ବର୍ତ୍ତମାନ ଯେଉଁ ପଦବୀରେ (ଗଭର୍ଣ୍ଣର ଜେନେରାଲ) ରହିଛି ସେଥିରେ କେତେକ ଅଧିକାରୀଙ୍କ ସମ୍ମୁଖରେ ଛିଡା ହୋଇ ଆପଣଙ୍କ ବିବାହ ପଂଜୀକରଣ ପତ୍ରରେ ଦସ୍ତଖତ କରିବା ମୋ ପାଇଁ ସମ୍ମାନଜନକ ନୁହେଁ । ଏହା ହିଁ ମୋର କାର୍ଯ୍ୟାଳୟର ଅଧିକାରୀଙ୍କର ମତ । ମୁଁ ଶ୍ରଦ୍ଧାର ସହ ଆପଣଙ୍କ ପାଇଁ ଅନ୍ୟଯାହା କରିପାରେ, କିନ୍ତୁ ଜଣେ ସାକ୍ଷୀ ହୋଇ ବିବାହ ପତ୍ରରେ ଦସ୍ତଖତ କରିବା ସମ୍ଭବ ନୁହେଁ ।

ଆପଣଙ୍କର ସାଂସାରିକ ଜୀବନ ବିଷୟରେ ମୋ ଅପେକ୍ଷା ଅଧିକ ଅନୁଭୂତି ରହିଛି । ଯେଉଁ ମହିଳାଙ୍କର ବୟସ ବର୍ତ୍ତମାନ ୩୨, ଆପଣଙ୍କ ପରେ ସେ କିପରି ଆପଣଙ୍କ ସଂପତ୍ତିର ରକ୍ଷଣା ବେକ୍ଷଣ ଦାୟିତ୍ୱ ନେଇପାରିବେ ତାହା ଏକ ପ୍ରଶ୍ନବାଚୀ । ଏଥିପାଇଁ ଯଦି ବି ଏକ ଟ୍ରଷ୍ଟ ଗଠନ କରାଯାଏ ଓ ଏଥିରେ ବିଭିନ୍ନ ସର୍ତ୍ତ ରଖାଯାଏ ତଥାପି ସେଥିରେ କନ୍ଦଳ, ବିବାଦ ଦେଖାଦେଇ ପାରେ । ଆପଣ ଏସବୁ ବିଷୟରେ ଚିନ୍ତାକରିବେ ଓ ଯାହା ନିଜେ ନିଷ୍ପତ୍ତି ନେବେ ।

ଆପଣଙ୍କ ବୟସ ଓ ମୋର ଆପଣଙ୍କ ପ୍ରତି ରହିଥିବା ଶ୍ରଦ୍ଧାକୁ ଆଧାରକରି ମୋର କିଛି ମତଦେବାକୁ ଚାହୁଁଛି । ଆପଣଙ୍କ ବୟସ ଦୃଷ୍ଟିରୁ ଆପଣଙ୍କର ବିବାହ ଯଥାର୍ଥ ନୁହେଁ ବୋଲି ମୁଁ ଅନୁଭବ କରୁଛି । ଗୋଟିଏ ବର୍ଷ ପାଇଁ ଏହା ସ୍ଥଗିତ ରଖନ୍ତୁ । ବର୍ଷଟିଏ ପରେ ଆପଣଙ୍କର ମାନସିକ ଅବସ୍ଥାକୁ ବିଚାରକରି ଯାହା ନିଷ୍ପତ୍ତି ନେବେ । ମୁଁ ଯାହା ଉଚିତ ମନେ କରୁଛି ତାହା ଆପଣଙ୍କୁ ଜଣାଇଲି । ଶ୍ରଦ୍ଧାର ସହ ରହୁଛି ।

## ରାଜଗୋପାଳଚାରୀ

ପେରିୟାରଙ୍କର ମାନିଆମାଇଙ୍କ ଉପରେ ଗଭୀର ବିଶ୍ୱାସ ରହିଥିଲା । ତାଙ୍କର ମାନିଆମାଇଙ୍କୁ ବିବାହଦ୍ୱାରା ପାର୍ଟିର ବିକାଶ ସମ୍ଭବ ହୋଇଥିଲା ।

ରାଜାଜୀ ଯେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ ସେ ହିନ୍ଦୀ ଭାଷାକୁ ବିଦ୍ୟାଳୟ ସ୍ତରରେ ପ୍ରବର୍ତ୍ତନ କଲେ । ପେରିୟାର ଏହି ନିଷ୍ପତ୍ତିକୁ ସାରା ରାଜ୍ୟରେ ବିରୋଧ

କଲେ । ହଜାର ହଜାର ଲୋକ ଏଥିପାଇଁ ଗିରଫ ହୋଇ ଜେଲରେ ରହିଲେ । ଫଳରେ ରାଜାଜୀ ତାଙ୍କର ନିଷ୍ପତ୍ତିରେ ପରିବର୍ତ୍ତନ କରିଥିଲେ ।

ପେରିୟାର ସିଙ୍ଗାପୁର ଓ ମାଲେସିୟାକୁ ୧୯୨୯ ଓ ୧୯୫୩ରେ ଯାଇଥିଲେ । ସେ ବର୍ମା (ସଂପ୍ରତି ମିଆଁମାର) ମଧ୍ୟ ଯାଇଥିଲେ । ସେ ସେଠାରେ ଭାରତୀୟ ମାନଙ୍କୁ କେତେକ ପରାମର୍ଶ ଦେଇଥିଲେ ।

ଆପଣମାନେ ଭାରତକୁ ଫେରି ଭାରତୀୟ ନାଗରିକ ହୋଇ ପୁଣି ରହିବାକୁ ଭାବନ୍ତୁ ନାହିଁ । ଏଠାରେ ଆପଣମାନେ ସମ୍ମାନର ସହ ରୁହନ୍ତୁ । ଯେଉଁଠି ରହିଛନ୍ତି ସେଠିକାର ନାଗରିକ ହୋଇ ଭଲରେ ରହିଥାନ୍ତୁ । ଏଠାକୁ ଚୀନର ଲୋକମାନେ ଆସି ଏଠାରେ ନାଗରିକ ହୋଇ ରହିଛନ୍ତି । ସେହିପରି ଆପଣମାନେ ନାଗରିକ ହୋଇ ରହନ୍ତୁ । ପେରିୟାର ତାଙ୍କର ଅନୁଗାମୀମାନଙ୍କୁ ଏହା ଭାରତୀୟଙ୍କ ଭିତରେ ପ୍ରସାର କରିବାକୁ ପରାମର୍ଶ ଦେଇଥିଲେ । ସେଠିକାର ଚ’ ବଗିଚ୍ଛ ଓ ଚିନିକଳ ମାନଙ୍କରେ କାର୍ଯ୍ୟରତ ଭାରତୀୟମାନଙ୍କୁ ଏହି ପରାମର୍ଶ ଦେଇଥିଲେ । ଯେଉଁମାନେ ତାଙ୍କର ପରାମର୍ଶ ସେଠାରେ ଗ୍ରହଣ କରିଥିଲେ ସେମାନେ ପ୍ରାୟ ଭଲରେ ରହିଛନ୍ତି । ଯେଉଁମାନେ ଭାରତକୁ ଫେରି ଆସିଲେ ସେମାନେ ଏଠାରେ କର୍ମସଂସ୍ଥାନ ପାଇଲେ ନାହିଁ ଓ ଫେରିଥିବା ଲୋକମାନେ ସେଥି ପାଇଁ ଅନୁଶୋଚନା କରିଥିଲେ ।

“ମାଲେସିଆରେ ପେରିୟାର” ପୁସ୍ତକରୁ ପେରିୟାରଙ୍କ ମାଲେସିଆ ଓ ସିଂଗାପୁରରେ ଦେଇଥିବା ବିଭିନ୍ନ ଭାଷଣ ସେଠାରେ ଭାରତୀୟମାନଙ୍କ ଜୀବନଧାରାରେ କିପରି ପରିବର୍ତ୍ତନ ଆଣିଥିଲା ତାହାର ସୂଚନା ମିଳେ । ଜାତୀୟ ବିଶ୍ୱବିଦ୍ୟାଳୟ, ସିଙ୍ଗାପୁରର ଜଣେ ମହିଳା କେଂବ୍ରିଜ ବିଶ୍ୱବିଦ୍ୟାଳୟରେ ଏ ବିଷୟରେ ପିଏଚ. ଡି. କରିଛନ୍ତି । ସେ ମହିଳା ଭାରତକୁ ଆସିବା ଅବସରରେ ସେ ଲେଖକଙ୍କୁ ସାକ୍ଷାତ କରିଥିଲେ ଓ ତାଙ୍କର ସେହି ପୁସ୍ତକ ଦେଇଥିଲେ । ପେରିୟାର କେବଳ ଭାରତରେ ନୁହେଁ ବିଦେଶରେ ମଧ୍ୟ ଦେଇଥିବା ଭାଷଣଦ୍ୱାରା ସେଠାରେ ଉଲ୍ଲେଖନୀୟ ପରିବର୍ତ୍ତନ ହୋଇପାରିଛି ।

ସେହିପରି ଶ୍ରୀଲଙ୍କାରେ ବସବାସ କରୁଥିବା ତାମିଲମାନଙ୍କ ପାଇଁ ୧୯୩୫ରେ ପେରିୟାର ଏରୋଡରେ ଏକ ଆନୁଷ୍ଠାନିକ ପ୍ରସ୍ତାବ ଗ୍ରହଣ କରିଥିଲେ । ଶ୍ରୀଲଙ୍କାର ତାମିଲ ନେତା ସେଲଭମ ପେରିୟାରଙ୍କୁ ନିବେଦନ କରିଥିଲେ ।

ପେରିୟାର ତାଙ୍କୁ ଉତ୍ତରରେ କହିଥିଲେ – ଆମେ ୧୯୪୭ ରେ ସ୍ୱାଧୀନ ହେଲୁ । ହେଲେ ଏଥିରେ ସରକାର ମାତ୍ର ବଦଳିଛି । କିନ୍ତୁ ଲୋକମାନଙ୍କର ସ୍ଥିତିରେ ବିଶେଷ କିଛି ପରିବର୍ତ୍ତନ ହୋଇ ନାହିଁ ।

କାମରାଜ ତାଙ୍କ ପଦରୁ ଇସ୍ତଫା ନ ଦେବାକୁ ପେରିୟାର ତାଙ୍କୁ ନିବେଦନ କରିଥିଲେ । କାମରାଜ କିନ୍ତୁ ଇସ୍ତଫା ଦେଲେ । "ଆପଣ ଇସ୍ତଫା ନଦେବାକୁ ମୋତେ ପରାମର୍ଶ ଦେଇଥିଲେ, ମୁଁ କିନ୍ତୁ ତାହା ଗ୍ରହଣ କରିନଥିଲି । ମୋ ଇସ୍ତଫାର କୁଫଳ ଏବେ ମୁଁ ଅନୁଭବ କରୁଛି । "

# ୩୩. ପେରିୟାର ଜୀବନର ଶେଷ ପର୍ଯ୍ୟନ୍ତ ସମର୍ଥ ଥିଲେ

ଜୀବନର ଶେଷ ଦଶବର୍ଷ ଭଲଭାବେ ଚାଲିବାରେ ତାଙ୍କର ସମସ୍ୟା ହେଉଥିଲା । ତାଙ୍କର ହାର୍ନିଆ ଓ ମୁତ୍ର ନଳୀରେ ସମସ୍ୟା ମଧ୍ୟ ଥିଲା । ତାଙ୍କର ଏଥିପାଇଁ ଅସ୍ତ୍ରୋପଚାର ମଧ୍ୟ ହୋଇଥିଲା । ତାଙ୍କ ମୂତ୍ରାଶୟରେ ଏକ ନଳି ଦିଆଯାଇଥିଲା । ସେ ଏକ ହ୍ୱିଲ ଚେୟାରରେ ଯାଉଥିଲେ । ଏହି ଅବସ୍ଥାରେ ମଧ୍ୟ ସେ ବିଭିନ୍ନ ସଭା ସମିତିରେ ଯୋଗ ଦେଉଥିଲେ । ତାଙ୍କର ସମୟାନୁବର୍ତ୍ତିତା ରହିଥିଲା । ସଭା ସମିତି, ସମ୍ମିଳନୀରେ ସେ ନିର୍ଦ୍ଧାରିତ ସମୟ ପୂର୍ବରୁ ପହଞ୍ଚୁଥିଲେ । ଅନ୍ୟମାନେ ଯାହା କହୁଥିଲେ ସେ ମନଯୋଗ ସହକାରେ ଶୁଣୁଥିଲେ ।

ତାମିଲମାନଙ୍କର ଅସମ୍ମାନକୁ ଦୂର କରିବାକୁ ୧୯୭୩ ଡିସେମ୍ବର ୮,୯ ରେ ଏକ ସମ୍ମିଳନୀ ଆହୂତ କରିଥିଲେ । ଏଥି ପାଇଁ ଆନ୍ଦୋଳନ କରିବାକୁ ନିଷ୍ପତ୍ତି ହୋଇଥିଲା । ୧୯୭୩ ଡିସେମ୍ବର ୧୯ ଦିନ ଏକ ସାଧାରଣ ସଭାରେ ପେରିୟାର କହିଥିଲେ – " ଆମେ ସମ୍ମାନର ସହ ବଞ୍ଚିବା ଦରକାର । ଅସମ୍ମାନର ସହ ବଞ୍ଚିବା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର । ଆମ ଧର୍ମ, ଶାସ୍ତ୍ର ଆମକୁ ଶୂଦ୍ର ଭାବେ ନ୍ୟୂନକରି ରଖିଛି ।" ଏହା ଥିଲା ତାଙ୍କର ଶେଷ ଭାଷଣ ।

ସେ ସର୍ବଦା 'ହିନ୍ଦୁ କିଏ' ଏହି ପ୍ରଶ୍ନ ଉଠାଉଥିଲେ । ହିନ୍ଦୁର ଅର୍ଥ କ'ଣ ? ଏହି ଶବ୍ଦର ପ୍ରୟୋଗ କେବେଠାରୁ ଆରମ୍ଭ ହେଲା ? ତାଙ୍କ ମତରେ ହିନ୍ଦୁମାନେ ଦୁଇ ଭାଗରେ ବିଭକ୍ତ । ବ୍ରାହ୍ମଣମାନେ ଏକ ଜାତିର, ଶୂଦ୍ରମାନେ ଅନ୍ୟ ଏକ ଜାତିର । ବ୍ରାହ୍ମଣମାନେ ତାଙ୍କ ବେକରେ ଏକ ପଇତା ପକାନ୍ତି । ଯେଉଁମାନେ ପଇତା ପକାନ୍ତି ନାହିଁ ସେମାନେ ଛୋଟ ଜାତିର, ଶୂଦ୍ର । ପାଶ୍ଚାତ୍ୟ ଦେଶମାନଙ୍କୁ ଦେଖାଯାଉ । ସେମାନେ କାହିଁକି ଏତେ ବିକଶିତ ? ସେମାନଙ୍କ ତୁଳନାରେ ଆମେ ଏବେ ବି ଆଦିମ ସ୍ତରରେ ରହିଛେ । ଆତ୍ମମର୍ଯ୍ୟାଦା ଆନ୍ଦୋଳନ ପରେ ଲୋକମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଘଟିଛି ।

ସମ୍ବିଧାନରେ ଅସ୍ପୃଶ୍ୟତାକୁ ନିଷେଧ କରାଯାଇଛି । କିନ୍ତୁ ହିନ୍ଦୁମାନଙ୍କ ମଧ୍ୟରେ ଅସ୍ପୃଶ୍ୟତା ଏପର୍ଯ୍ୟନ୍ତ ଦୃଢ଼ ରହିଛି । ତାମିଲନାଡୁ ଏକ ସ୍ୱତନ୍ତ୍ର ଦେଶ ହେଲେ ଆମେ ଅସ୍ପୃଶ୍ୟତାର ସଂପୂର୍ଣ୍ଣ ନିରାକରଣ କରିବା ସହ ସମାଜରୁ ଜାତିପ୍ରଥାର ବିଲୋପ କରିପାରିବା । ଏହା ସହ ଆମର ବିକାଶ ମଧ୍ୟ ତ୍ୱରାନ୍ୱିତ ହୋଇପାରିବ ।

କରୁଣାନିଧି ମନ୍ଦିରରେ ସବୁ ଜାତିର ଲୋକମାନେ ପୂଜକ ହୋଇପାରିବେ ବୋଲି ଏକ ନିୟମ କଲେ । (ନିକଟରେ ସୁପ୍ରିମ କୋର୍ଟ ପୂର୍ବର ରାୟକୁ ସଂଶୋଧନ କଲେ ।) ଫଳରେ କେରଳ ସରକାର ନିମ୍ନ ଜାତିର ଲୋକମାନଙ୍କୁ ମନ୍ଦିରରେ ପୂଜକ ଭାବେ ନିଯୁକ୍ତି ଦେଲେ । ତାମିଲ ନାଡୁରେ ସରକାର ସୁପ୍ରିମ କୋର୍ଟ ରାୟ ଅନୁସାରେ ନିମ୍ନ ଜାତିର ଲୋକମାନଙ୍କୁ ନିଯୁକ୍ତି ଦେଇପାରନ୍ତି ।

ଶୂଦ୍ରମାନଙ୍କୁ ସମାଜରେ ଦିଆଯାଉଥିବା ନ୍ୟୂନ ସ୍ଥାନ ଭାବନାରେ ଦେଶରେ ପରିବର୍ତ୍ତନ ଆଣିବାରେ ପେରିୟାର ବଳିଷ୍ଠ ପଦକ୍ଷେପ ନେଇଥିଲେ । ଏହି ଉଦ୍ଦେଶ୍ୟରେ ସେ ଚେନାଇଠାରେ ଏକ ସମ୍ମିଳନୀର ଆୟୋଜନ କରିଥିଲେ । ତେବେ ଏହି ଲକ୍ଷ୍ୟ ହାସଲ ପୂର୍ବରୁ ପେରିୟାର ସଂସାରରୁ ବିଦାୟ ନେଲେ । ସମାଜର ସଂଖ୍ୟାଗରିଷ୍ଠ ଲୋକମାନେ କିପରି ସମ୍ମାନର ସହ ଜୀବନ ବଞ୍ଚିବେ ଏହା ତାଙ୍କର ସ୍ୱପ୍ନ ରହିଥିଲା । ସମ୍ମିଳନୀ ଶେଷରେ ଶୋଇଥିବା ଅବସ୍ଥାରେ ସେ ପେଟରେ ଯନ୍ତ୍ରଣା ଅନୁଭବ କଲେ । ତାଙ୍କୁ ଭେଲୋରସ୍ଥିତ ସି.ଏମେ.ସି ମେଡିକାଲକୁ ନିଆଗଲା । ତେବେ ୨୪ ଡିସେମ୍ବର ୧୯୭୩ ଦିନ ସେ ସେହି ହସ୍ପିଟାଲରେ ଶେଷ ନିଶ୍ୱାସ ତ୍ୟାଗ କଲେ । ଦୀର୍ଘ ପାଞ୍ଚ ଦଶନ୍ଧି ଧରି ସମାଜରୁ ଅପବିଶ୍ୱାସର ଦୂରୀକରଣ, ଜାତିଗତ ଭେଦଭାବର ବିଲୋପନ ଓ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ତାଙ୍କ ସଂଗ୍ରାମର ପରିସମାପ୍ତି ଘଟିଲା । ତାଙ୍କର ମର ଶରୀରକୁ ଚେନାଇସ୍ଥିତ ରାଜାଜୀ ହଲକୁ ଆଣି ରଖାଗଲା । ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦ, ସର୍ବସାଧାରଣ ବ୍ୟକ୍ତି ସେଠାକୁ ଲକ୍ଷାଧିକ ସଂଖ୍ୟାରେ ଆସି ପେରିୟାରଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କଲେ । ଯେଉଁମାନେ ଚେନାଇ ଆସିପାରିଲେ ନାହିଁ ସେମାନେ ନିଜ ନିଜ ସ୍ଥାନରେ ତାଙ୍କ ଉଦ୍ଦେଶ୍ୟରେ ସଭାମାନ ଆୟୋଜନକରି ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କଲେ । ସେହି ସମୟରେ

କରୁଣାନିଧି ତାମିଲନାଡୁର ମୁଖ୍ୟମନ୍ତ୍ରୀ ଥାନ୍ତି । ରାଷ୍ଟ୍ରୀୟ ମର୍ଯ୍ୟାଦା ସହକାରେ ତାଙ୍କର ଶବ ସତ୍କାର କରିବାକୁ ସେ ନିର୍ଦ୍ଦେଶ ଦେଲେ । ବିଦୁତଲାଇ ସମ୍ବାଦପତ୍ର ସେଦିନ ପେରିୟାରଙ୍କ ପ୍ରତି ସମ୍ମାନ ଜଣାଇ ତାହାର ସଂପାଦକୀୟଟି ଖାଲି ରଖିଥିଲା ।

କରୁଣାନିଧି ଏହି ବିବୃତ୍ତି ଦେଇଥିଲେ, "ପେରିୟାରଙ୍କ ଅବଦାନ ଯୋଗୁ ତାମିଲନାଡୁର ଜନସାଧାରଣ ମଥାଉନ୍ନତକରି ଛିଡା ହୋଇଛନ୍ତି । ଲକ୍ଷ ଲକ୍ଷ ବ୍ୟକ୍ତି ସାମାଜିକ ସ୍ତରରେ ସମ୍ମାନର ସହ ଜୀବନ ନିର୍ବାହ କରିବାକୁ ଓ ସ୍ୱାବଲମ୍ବୀ ହୋଇପାରିଛନ୍ତି । ପେରିୟାରଙ୍କ ବିୟୋଗ ସେମାନଙ୍କ ପାଇଁ ବଡ ବିପର୍ଯ୍ୟୟ ଓ ଦେଶ ପାଇଁ ବଡ କ୍ଷତି । ସମାଜର ନିମ୍ନବର୍ଗର ସୁରକ୍ଷା ଓ ସାମାଜିକ ନ୍ୟାୟ ପାଇଁ ତାଙ୍କର ଅବଦାନ ଅତୁଳନୀୟ । ଆମେ ଜଣେ ମହାନ ନେତାଙ୍କୁ ହରାଇଲୁ ।"

କାମରାଜ ତାଙ୍କ ଶୋକବାର୍ତ୍ତାରେ କହିଥିଲେ, "ତାମିଲ ନାଡୁରେ ସାମାଜିକ ଚେତନା ଜାଗ୍ରତ କରିବାରେ ପେରିୟାରଙ୍କ ଅବଦାନ ଅତୁଳନୀୟ । ସେ ସମାଜ ପାଇଁ ଯେଉଁ ଅବଦାନ ଦେଇଛନ୍ତି ତାହା ବହୁଦିନ ପାଇଁ ସ୍ମୃତିରେ ରହିବ ।" ସିପିଏମ ପାର୍ଟିର ନେତା ପି. ରାମମୂର୍ତ୍ତି ତାଙ୍କ ବକ୍ତବ୍ୟରେ କହିଥିଲେ, "ପେରିୟାର ଅବହେଳିତ ଲୋକମାନଙ୍କର ବିକାଶ ପାଇଁ ଜୀବନସାରା ସଂଗ୍ରାମ କରିଥିଲେ । ଏହି ଜନଗଣ ପେରିୟାରଙ୍କ ଦେହାନ୍ତରେ ସେମାନଙ୍କ ସବୁଠାରୁ ବଡ ସଂଗ୍ରାମୀଙ୍କୁ ହରାଇଲେ । ପେରିୟାର କେବଳ ତାମିଲନାଡୁରେ ନେତା ନଥିଲେ, ସେ ସମଗ୍ର ଦେଶରେ ତାଙ୍କର ପ୍ରଭାବ ସୃଷ୍ଟି କରିଥିଲେ" । ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଏକ ଶୋକବାର୍ତ୍ତା ପଠାଇଥିଲେ – "ପେରିୟାରଙ୍କ ଦେହାନ୍ତ ଖବର ପାଇ ମୁଁ ଦୁଃଖିତ । ସେ ବହୁ ବିବାଦୀୟ ପ୍ରସଙ୍ଗ ସହ ସଂପୃକ୍ତ ଥିଲେ ଓ ତାଙ୍କ ବିଚାର ପାଇଁ ସଂଗ୍ରାମ କରୁଥିଲେ । ସେ ଯାହା ଉଚିତ ମନେ କରୁଥିଲେ ସେ ପ୍ରତି ପ୍ରତିବଦ୍ଧ ଥିଲେ । ତାଙ୍କ ପାଇଁ ମୁଁ ମୋର ସମବେଦନା ତାଙ୍କର ସହଯୋଗୀ ମାନଙ୍କୁ ଜଣାଉଛି ।"

ଜୟପ୍ରକାଶ ନାରାୟଣ କହିଥିଲେ, "ପେରିୟାର ଜୀବନ ସାରା ନିଷ୍ଠାର ସହ ଜାତିପ୍ରଥା ଓ କୁସଂସ୍କାର ବିରୁଦ୍ଧରେ ସଂଗ୍ରାମ କରିଥିଲେ । ତାଙ୍କ ସମକକ୍ଷ ଆଉ

ଜଣେ ନେତା କେବେ ଦେଶରେ ବାହାରିବେ କହିହେବ ନାହିଁ । ସେ ସର୍ବଦା ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରୁଥିଲେ । ” ତାମିଲନାଡୁର ରାଜ୍ୟପାଳ କେ.କେ. ଶାହ ତାଙ୍କ ବିବୃତ୍ତିରେ କହିଥିଲେ : “ସେ ଥିଲେ ଜଣେ ଶକ୍ତିଶାଳୀ ସଂସ୍କାରକ । ମୁଁ ତାଙ୍କ ଦେହାନ୍ତରେ ଅତ୍ୟନ୍ତ ଦୁଃଖିତ ।”

କୁନାକୁଡି ଆଦିଗଲ ଏକ ବିବୃତ୍ତିରେ କହିଥିଲେ, “ ସେ ତାମିଲନାଡୁର ସୁରକ୍ଷାକାରୀ ଥିଲେ । ସେ ବିପ୍ଳବାତ୍ମକ ଚିନ୍ତକ ଓ ନେତା ଥିଲେ । ତାଙ୍କର ବିୟୋଗ ଏକ ଅପୂରଣୀୟ କ୍ଷତି । ସମାଜର ସେବା ପାଇଁ ସେ ତାଙ୍କ ଜୀବନକୁ ଉତ୍ସର୍ଗ କରିଥିଲେ । ତାମିଲ ନାଡୁର ଏପରି କୌଣସି କ୍ଷେତ୍ର ନାହିଁ ଯେଉଁ ସ୍ଥାନକୁ ସେ ତାଙ୍କର ସାଧାରଣ ଜୀବନରେ ପାଦପକାଇ ନାହାନ୍ତି । ସେ ତାଙ୍କ ଆଦର୍ଶରେ ଗଭୀର ବିଶ୍ୱାସ ରଖି ସେ ପ୍ରତି ସମର୍ପିତ ଥିଲେ । ସେ ଥିଲେ ଏକ ଅଦ୍ୱିତୀୟ ବ୍ୟକ୍ତି । ତାମିଲମାନଙ୍କର ବିକାଶ ପାଇଁ ସେ ଉତ୍ସର୍ଗୀକୃତ ଭାବରେ କାର୍ଯ୍ୟ କରିଛନ୍ତି । ତାମିଲମାନଙ୍କ ଭିତରେ ଆତ୍ମବିଶ୍ୱାସ ସୃଷ୍ଟି  କ୍ଷେତ୍ରରେ ସେ ଦୃଷ୍ଟାନ୍ତମୂଳକ ଭାବେ ପାଦବଢାଇଛନ୍ତି । ତାମିଲମାନଙ୍କ ଭିତରେ ସେ ସ୍ୱାଭିମାନ ସୃଷ୍ଟି କରିଛନ୍ତି । ସେ ତାମିଲନାଡୁରେ ସ୍ୱାଭିମାନର ଯେଉଁ ଗଛଟି ରୋପଣ କରିଥିଲେ ତାହା ଏବେ ବେଶ୍ ବୃଦ୍ଧି ପାଇଛି । କିନ୍ତୁ ପରିତାପର ବିଷୟ ସେ ସେହି ଫଳଫୁଲ୍ଭର ବୃକ୍ଷଟି ଦେଖିବାକୁ ନାହାନ୍ତି । ତାଙ୍କର ଅନ୍ୟମାନଙ୍କ ସହ ଯାହା ମତପାର୍ଥକ୍ୟ ରହିଥିଲେ ବି ସେ ଥିଲେ ଜଣେ ମାନବବାଦୀ  । ତାଙ୍କ ଭିତରର ଏହି ସଦ୍‌ଗୁଣକୁ କେହି ଅସ୍ୱୀକାର କରିପାରିବେ ନାହିଁ । ଏକ ଜାତିବିହୀନ ସମାଜ ଓ ତାମିଲ ମାନଙ୍କର ସ୍ୱାଭିମାନ ଥିଲା ତାଙ୍କର ବଡ ସଂପୃକ୍ତି । ଆମେ ସେହି ଲକ୍ଷ୍ୟ ହାସଲ ଦିଗରେ କାର୍ଯ୍ୟ କଲେ ତାଙ୍କ ପ୍ରତି ଆମର ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିପାରିବା ।

“କେଉଁଠି ଅନ୍ୟାୟ ଦେଖିଲେ ସେ ସିଂହପରି ଗର୍ଜନ କରୁଥିଲେ । ତାଙ୍କର ସ୍ୱର ଆଜି ନୀରବ ହୋଇଯାଇଛି । କିନ୍ତୁ ସେ ଯେଉଁ ଦୀପଶିଖାଟି ଜାଳିଛନ୍ତି ଓ ଯେଉଁ ଆଦର୍ଶ ସ୍ଥାପନ କରିଛନ୍ତି ତାହା ବିନା ପ୍ରତିବନ୍ଧକରେ ଅଗ୍ରଗତି କରିବ ।”

ଏମ. ଜି. ରାମଚନ୍ଦ୍ରନ (ଏମଜିଆର) କହିଥିଲେ "ତାମିଲ ସମାଜ ତାର ସୁରକ୍ଷାକାରୀଙ୍କୁ ହରାଇଲା । ସେ ସାମାଜିକ, ଭାଷାଗତ ଓ ଅର୍ଥନୈତିକ ବିକାଶ ପାଇଁ ତାମିଲନାଡୁରେ ସଂଗ୍ରାମ କରିଥିଲେ । ଏହି ଲକ୍ଷ୍ୟ ଉଦ୍ଦେଶ୍ୟରେ ସେ ଜୀବନସାରା କାର୍ଯ୍ୟ କରିଥିଲେ । ଭାରତୀୟ ଉପମହାଦେଶ ତାହାର ଶେଷ କର୍ମୀଙ୍କୁ ହରାଇଲା । ତାମିଲ ଆନ୍ଦୋଳନରେ ସଂପୃକ୍ତ ହୋଇଥିବା ଲକ୍ଷ ଲକ୍ଷ ପରିବାର ସେମାନଙ୍କର ପ୍ରିୟ ନେତାଙ୍କୁ ହରାଇଲେ । ମାନବଜାତି ଜଣେ ବିଶିଷ୍ଟ ଚିନ୍ତାନାୟକ ଓ ସମାଜର ପଥପ୍ରଦର୍ଶକଙ୍କୁ ହରାଇଲା ।"

ଡିସେମ୍ବର ୨୫, ୧୯୭୩ ଅପରାହ୍ନ ତିନିଟା ବେଳେ ଏକ ବଡ ଶବ ଶୋଭାଯାତ୍ରାରେ ପେରିୟାରଙ୍କ ମରଶରୀରକୁ ତାଙ୍କ ଅଫିସ ଭେପେରୀକୁ ଅଣାଗଲା । କୌଣସି କର୍ମକାଣ୍ଡ କରାନଯାଇ ତାଙ୍କ ଶରୀରକୁ ସେଠାରେ ସମାଧି ଦିଆଗଲା । ପେରିୟାର ଦୁନିଆରୁ ବିଦାୟ ନେଇଥିଲେ ବି ତାଙ୍କର ବିଚାର ଆଜି ସମଗ୍ର ପୃଥିବୀରେ ବିସ୍ତାରଲାଭ କରୁଛି ।

# ୩୪. ସମତ୍ୱପୁରମ କଲୋନି ପ୍ରତିଷ୍ଠା

ତାମିଲନାଡୁରେ ଡିଏମକେ ଶାସନକାଳରେ ଯେତେବେଳେ କରୁଣାନିଧି ମୁଖ୍ୟମନ୍ତ୍ରୀ ଥିଲେ, ପେରିୟାରଙ୍କ ସ୍ମୃତି ଉଦ୍ଦେଶ୍ୟରେ ସମତ୍ୱପୁରମ କଲୋନି (ବସ୍ତି) ସୃଷ୍ଟି କରିଥିଲେ, ଯେଉଁଠି ସବୁ ଜାତିର ଲୋକମାନେ ଏକାଠି ବାସ କରିବେ । ଏହା ପେରିୟାରଙ୍କର କଳ୍ପନା ଥିଲା । ପ୍ରତ୍ୟେକ କଲୋନିରେ ଏକ ଶହ ଘର ରହିଥିଲା । ପ୍ରତ୍ୟେକ ଘର ଏକ ଗୁଣ୍ଠ ଜାଗାରେ ରହିଥିଲା । ପ୍ରତ୍ୟେକ କଲୋନି ପାଇଁ ରୋଡ, ବିଶୁଦ୍ଧ ପାଣି, ପାର୍କ ଓ ସ୍କୁଲ ରହିଥିଲା । ପ୍ରତ୍ୟେକ କଲୋନିରେ ପେରିୟାରଙ୍କ ପ୍ରତିମୂର୍ତ୍ତି ବି ରହିଥିଲା । ଗୃହ ଆବଣ୍ଟନ କ୍ଷେତ୍ରରେ ସାମାଜିକ ନ୍ୟାୟକୁ ପ୍ରାଧାନ୍ୟ ଦିଆଯାଇଥିଲା । ଆସଦି ଦ୍ରାବିଡମାନଙ୍କୁ ୪୦ ଟି ଘର, ଅନଗ୍ରସର ଶ୍ରେଣୀର ଲୋକଙ୍କୁ ୨୫ଟି ଘର ଓ ସବୁଠାରୁ ପଛୁଆ ବର୍ଗର ଲୋକଙ୍କ ପାଇଁ ୨୫ ଘର ଓ ଅନ୍ୟ ୧୦ ଟି ଘର ଅନ୍ୟ ଜାତି ଓ ବ୍ରାହ୍ମଣମାନଙ୍କୁ ଦିଆଯାଇଥିଲା । ସେଠାରେ ସମସ୍ତଙ୍କ ପାଇଁ ଗୋଟିଏ ସାଧାରଣ ଶ୍ମଶାନ ରହିଥିଲା । କଲୋନି ଭିତରେ କୌଣସି ମନ୍ଦିର ନିର୍ମାଣ ପାଇଁ ଅନୁମତି ନଥିଲା । ଯେଉଁମାନେ ଚାହିଁବେ ନିଜ ନିଜ ଗୃହ ଭିତରେ ନିଜର ଦେବତାଙ୍କୁ ପୂଜା କରିପାରିବେ । କରୁଣାନିଧିଙ୍କ ପୂର୍ବରୁ ଦେଶର କୌଣସି ମୁଖ୍ୟମନ୍ତ୍ରୀ ଏପରି କଲୋନିର ପରିକଳ୍ପନା କରିନଥିଲେ । ଗୋଟିଏ ପଟେ ଜାତିଗତ ବିଭାଜନର ଭାବନାକୁ ସେ ଦୂର କରିବାକୁ ଚାହିଁଥିଲେ ଓ ବିଭିନ୍ନ ଜାତିର ଲୋକମାନେ ଗୋଟିଏ ବସ୍ତି ଭିତରେ ଏକତ୍ର ରହିବାର ପରିକଳ୍ପନା କରିଥିଲେ ।

ବିଗତ ବର୍ଷଗୁଡିକ ଭିତରେ କୌଣସି ସମତ୍ୱପୁରମ କଲୋନିରେ କେତେକ ଘଟଣା ଘଟି ନାହିଁ । ମଦୁରାଇ ଜିଲ୍ଲାର ପଚମପଟି ପଞ୍ଚାୟତର ସମତ୍ୱପୁରମ କଲୋନି ପାଖରେ କେତେକ ଧୂର୍ତ୍ତ ବ୍ୟକ୍ତି କିଛି ମନ୍ଦିର ନିର୍ମାଣ କରିବାକୁ ଚାହିଁଲେ । ଏହା ଜଣାପଡିବା ପରେ ଡି.କେ. ପାର୍ଟିର ଲୋକମାନେ ଯାଇ ସେଠାରେ ମନ୍ଦିର ନିର୍ମାଣ ବିରୁଦ୍ଧରେ ଧାରଣା ଦେଲେ । ଫଳରେ ନିକଟସ୍ଥ ବିସୁଲାମପଟିର ତହସିଲଦାର

ସେ ସ୍ଥାନକୁ ଯାଇ ତାକୁ ବନ୍ଦ କରିଦେଲେ । ପ୍ରଶାସନର ଏହି ପଦକ୍ଷେପକୁ ସମସ୍ତେ ସ୍ୱାଗତ କଲେ । ଲୋକମାନଙ୍କୁ କୁହାଗଲା ଯେ ଯେଉଁମାନେ ଆଗ୍ରହୀ ସେମାନେ ନିଜ ଗୃହ ଭିତରେ ପୂଜା କରିପାରିବେ ।

ସମତ୍ୱପୁରମ କଲୋନିମାନ ୧୯୯୭ରେ ଆରମ୍ଭ ହୋଇଥିଲା । ପ୍ରତ୍ୟେକ କଲୋନିର ଶହେଟି ଘର ଭିତରୁ ୪୦ ଟି ଅନୁସୂଚିତ ଜାତି ଓ ଜନଜାତିର ଲୋକଙ୍କୁ, ଅତି ପଛୁଆ ବର୍ଗର ଲୋକଙ୍କୁ ୨୫ଟି, ପଛୁଆ ବର୍ଗର ଲୋକଙ୍କ ପାଇଁ ୨୫ ଟି ଓ ଅନ୍ୟ ଜାତିର ଲୋକଙ୍କ ପାଇଁ ଦଶଟି ଘର ପ୍ରଦାନ କରା ଯାଇଥିଲା ।

୧୯୯୭ ରୁ ୨୦୦୧ ଭିତରେ ଏହିପରି ୧୪୫ ଟି ସମତ୍ୱପୁରମ ବସ୍ତି ନିର୍ମାଣ କରାଯାଇ ଲୋକମାନଙ୍କୁ ଥଇଥାନ କରାଯାଇଥିଲା । ଏହି ସମୟ ପରେ ଜୟଲଳିତା ତାମିଲନାଡୁର ମୁଖ୍ୟମନ୍ତ୍ରୀ ହେଲେ । ସେ ଏହି ପ୍ରସ୍ତାବକୁ ବନ୍ଦ କରିଦେଲେ । କରୁଣାନିଧିଙ୍କ ଦ୍ୱାରା ପ୍ରସ୍ତାବିତ କାର୍ଯ୍ୟକ୍ରମକୁ ସେ ବନ୍ଦ କରିବାକୁ ନିଷ୍ପତ୍ତି ନେଇଥିଲେ । ପୁଣି ଯେତେବେଳେ କରୁଣାନିଧି ମୁଖ୍ୟମନ୍ତ୍ରୀ ହେଲେ ସେ ଏହି ସମତ୍ୱପୁରମ କଲୋନି ପ୍ରତିଷ୍ଠା ପ୍ରକଳ୍ପ ପୁନଶ୍ଚ ଆରମ୍ଭ କଲେ । ପେରିୟାର ୯୫ ବର୍ଷ ବଞ୍ଚିଥିବାରୁ ସେ ଆଉ ୯୫ଟି ଏହିପରି କୋଲନି ନିର୍ମାଣ କରିବାକୁ ଚାହିଁଲେ । ୨୦୧୧ ସୁଦ୍ଧା ନୂଆ ୯୫ଟି କଲୋନିର କାର୍ଯ୍ୟ ଶେଷ କରିବାକୁ ସେ ପରିକଳ୍ପନା କଲେ । ଷ୍ଟାଲିନ ଏହି ସମତ୍ୱପୁରମ କଲୋନିମାନଙ୍କୁ ଉଦ୍‌ଘାଟନ କରିଥିଲେ । ଏହା ମାଧ୍ୟମରେ ସମାଜରେ ଏକ ଜାତିବିହୀନ ସମାଜର ପରିକଳ୍ପନା ନିହିତ ରହିଥିଲା ।

ଭାରତୀୟ ଉପମହାଦେଶରେ କେବଳ ତାମିଲନାଡୁରେ ଏହି ପ୍ରକଳ୍ପ କାର୍ଯ୍ୟକାରୀ ହୋଇଥିଲା । ପେରିୟାରଙ୍କ ଜନ୍ମିତ ରାଜ୍ୟରେ ତାଙ୍କ ଆଦର୍ଶରେ ପ୍ରଭାବିତ ମୁଖ୍ୟମନ୍ତ୍ରୀ କରୁଣାନିଧି ଏହା କାର୍ଯ୍ୟକାରୀ କରିଥିଲେ । କରୁଣାନିଧି ସମାଜରୁ ଜାତିପ୍ରଥାର ବିଲୋପ ପାଇଁ କିଛି ପ୍ରୟାସ କରିଥିଲେ । ଏହା ସହିତ ଦଳିତ ଓ ପଛୁଆ ବର୍ଗଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଓ ସେମାନଙ୍କୁ କିପରି ସ୍ୱାବଲମ୍ବୀ

କରାଯିବ ସେ ପାଇଁ ପଦକ୍ଷେପମାନ ନେଇଥିଲେ । ଏହି ପ୍ରକଳ୍ପ ତାମିଲନାଡୁରେ କରାଯାଇଥିଲେ ସୁଦ୍ଧା ଏହା ଉତ୍ତର ଭାରତରେ ଅଧିକ କରାଯିବାର ଯଥେଷ୍ଟ ଆବଶ୍ୟକତା ରହିଛି । ଯେଉଁ ଜାଗାରେ ଜାତିଆଣ ଭେଦଭାବମାନ ରହିଛି ସେ ଅଞ୍ଚଳରେ ସମତ୍ୱପୁରମ ଯୋଜନାର ଆବଶ୍ୟକତା ଅଧିକ ରହିଛି ।

ପ୍ରତ୍ୟେକ ସମତ୍ୱପୁରମଠାରେ ଏକ ପାଠାଗାର ରହିବା ଆବଶ୍ୟକ । ପାଠାଗାର ମାଧ୍ୟମରେ ଲୋକମାନଙ୍କ ଭିତରେ ଜାତିବିହୀନ ସମାଜ, ବୈଜ୍ଞାନିକ ମନୋଭାବ, ମହିଳାମାନଙ୍କ ଅଧିକାର ଓ ସମତାର ଭାବକୁ ପ୍ରସାର କରାଯିବ । ସମତ୍ୱପୁରମ କଲୋନିରେ ପୋଙ୍ଗଲ, ନବବର୍ଷ ପରି ଉତ୍ସବମାନ ପାଳନ କରାଯାଇ ପାରିବ । ଯେଉଁ ସମତ୍ୱପୁରମ କଲୋନି ଶ୍ରେଷ୍ଠ ବିବେଚିତ ହେବ ତାହାକୁ ପ୍ରତ୍ୟେକ ବର୍ଷ ପୁରସ୍କୃତ କରାଯିବ । ପ୍ରତ୍ୟେକ କଲୋନିକୁ ସମୟ ବ୍ୟବଧାନରେ ସ୍ଥାନୀୟ ତହସିଲଦାର ଓ ପ୍ରଶାସନିକ ଅଧିକାରୀ ପରିଦର୍ଶନ କରି ତାହାର ପରିଚାଳନା ଦେଖିବେ ।

# ୩୫. ପେରିୟାରଙ୍କ ଉପରେ ତାମିଲ ଚଳଚିତ୍ର

ଗୋଟିଏ ସିନେମା ପ୍ରସ୍ତୁତ କରିବାରେ କୋଟି କୋଟି ଟଙ୍କା ଖର୍ଚ୍ଚ ହୋଇଥାଏ ଓ ଅର୍ଥ ଖର୍ଚ୍ଚ ସତ୍ତ୍ୱେ ବେଳେବେଳେ ଏହା ଅଧିକ ଦିନ ଚାଲେ ନାହିଁ । ତେବେ ତାମିଲ ଭାଷାରେ ଅଳ୍ପ ଅର୍ଥରେ ପେରିୟାରଙ୍କ ଉପରେ ଚଳଚିତ୍ରଟିଏ ନିର୍ମିତ ହୋଇଥିଲା । ଏହି ଚଳଚିତ୍ରଟି ଗୋଟିଏ ଗୋଟିଏ ହଲରେ ଶହେଦିନ ଚାଲି ଦର୍ଶକୀୟ ଆଦର ଲାଭ କରିଥିଲା ।

ପେରିୟାରଙ୍କ ଜୀବନରେ ବହୁ ସୁଖକର ଘଟଣା ଘଟିଛି । ଏହାକୁ ସୁନ୍ଦର ଭାବରେ ଚିତ୍ରଣ କରାଯାଇଛି । ଯେଉଁମାନେ ଚଳଚିତ୍ରଟି ଦେଖିଛନ୍ତି ସେମାନେ ଏହାକୁ ପ୍ରଶଂସା କରିଛନ୍ତି । ସିନେମା ଜଗତରେ ଭଲ ଚଳଚିତ୍ରଟିଏ ପ୍ରସ୍ତୁତ କରି ସଫଳ ହେବା ଏକ ଜଟିଳ କାର୍ଯ୍ୟ । ସେ ଭିତରେ ଜଣେ ସମାଜସେବୀଙ୍କ ଜୀବନୀ ଉପରେ ଚଳଚିତ୍ରଟିଏ ପ୍ରସ୍ତୁତକରି ସେଥିରେ ସଫଳ ହେବା ଏକ କଠିନ ବ୍ୟାପାର । ତେବେ ଉପଯୁକ୍ତ ଲୋକମାନଙ୍କୁ ସେଥି ପାଇଁ ମନୋନୀତ କରାଯାଇଥିଲା ।

ଏହି ଚଳଚିତ୍ରଟି ନିର୍ମାଣ କରିବାରେ ସତ୍ୟ ରାଜଙ୍କୁ ପେରିୟାର ଓ କୁଶୁବୁଙ୍କୁ ମାନିଆମାଇ ଭୂମିକାରେ ଅଭିନୟ କରିବାକୁ ସ୍ଥିର କରାଯାଇଥିଲା । ସେହିପରି କ୍ୟାମେରାମାନ ବି ସୁନ୍ଦର ଭାବେ ତାଙ୍କ ଦାୟିତ୍ୱ ନିର୍ବାହ କରିଥିଲେ । ଏହି ଚଳଚିତ୍ରଟି ସିନେମା ହଲରେ ଏକକାଳୀନ ଶହେ ଦିନ ଚାଲି ଇତିହାସ ସୃଷ୍ଟି କରିଥିଲା ।

ତାଙ୍କ ଜୀବନର ଘଟଣାବଳୀ ସିନେମାପାଇଁ ମନୋନୀତ କରିବା କ୍ଷେତ୍ରରେ ଡି.କେ. ପାଟିର ସଭାପତି କେ ବୀରମଣିଙ୍କର ଯଥେଷ୍ଟ ଭୂମିକା ରହିଥିଲା ।

# ୩୬. ପେରିୟାର ପୃଥିବୀ

ତାମିଲନାଡୁର ତିରୁଚି ନିକଟ ସିରୁଗାନୁରଠାରେ ଏକ "ପେରିୟାର ପୃଥିବୀ" ନିର୍ମାଣ କରିବାକୁ ପ୍ରୟାସ ହୋଇଛି । ଡି.କେ. ପାର୍ଟିର ସଭାପତି କେ. ବୀରମଣିଙ୍କ ଉଦ୍ୟମରେ ଏହା କରାଯାଇଛି । ସେଠାରେ ୧୮୮ ଫୁଟର ଏକ ପ୍ରତିମୂର୍ତ୍ତି ପ୍ରତିଷ୍ଠା କରାଯିବ । ପ୍ରଥମେ ମୂର୍ତ୍ତିର ଉଚ୍ଚତାକୁ ୯୪ ଫୁଟ କରିବାକୁ ପରିକଳ୍ପନା କରାଯାଇଥିଲା, କାରଣ ସେ ୯୪ ବର୍ଷ ବଞ୍ଚିଥିଲେ । ପରେ ତାହାକୁ ପରିବର୍ତ୍ତନ କରି ୯୪ x ୨=୧୮୮ ଫୁଟ କରିବାକୁ ନିଷ୍ପତ୍ତି ହୋଇଛି । ଯାହା ଉପରେ ମୂର୍ତ୍ତି ସ୍ଥାପିତ ହେବ ତାହାର ଉଚ୍ଚତା ହେବ ୪୦ଫୁଟ ଓ ମୂର୍ତ୍ତିର ଉଚ୍ଚା ହେବ ୧୪୮ ଫୁଟ । ଏହିପରି ଭୂମି ଓ ମୂର୍ତ୍ତିର ଉଚ୍ଚତା ମିଶି ୧୮୮ ଫୁଟ ରହିବ ।

ଏହି ସ୍ଥାନରେ ପ୍ରଥମେ ଏକ ପାଚେରୀ ଚାରିପଟେ କରାଯାଉଛି । ଏହି ସମସ୍ତ କାର୍ଯ୍ୟ ଶେଷ କରିବାକୁ ୧୦୦ ଜଣ ବ୍ୟକ୍ତିଙ୍କୁ ନିୟୋଜିତ କରାଯାଇଛି ।

ଏହି ସ୍ଥାନକୁ ଆସିବା ପାଇଁ ପାର୍ଶ୍ୱବର୍ତ୍ତୀ ରୋଡ, ହାଇୱେର ଦୂରତ୍ୱ ଇତ୍ୟାଦି ସବୁ ବିଷୟକୁ ଧ୍ୟାନ ଦେଇ ସ୍ଥିର କରାଯାଇଛି । ପ୍ରତିମୂର୍ତ୍ତି ସାମ୍ନାରେ ଏକ ୱାଟର ଫଲ୍ ରହିବ । ଏସବୁର ନିର୍ମାଣ କାର୍ଯ୍ୟ ଏବେ ଅବ୍ୟାହତ ରହିଛି । ଚତୁଃପାର୍ଶ୍ୱରେ ବଗିଚା ଓ ବିସ୍ତୃତ ଅଞ୍ଚଳରେ ବୃକ୍ଷରୋପଣ କରାଯାଉଛି । 'ପେରିୟାର ପୃଥିବୀ' (Periyar World) ନିର୍ମାଣ ପାଇଁ ବହୁ ସ୍ତରରୁ ଅନୁମତି ନେବାକୁ ହେଉଛି । ବର୍ତ୍ତମାନ ସୁଦ୍ଧା ଅଗ୍ନି ନିର୍ବାପକ ବିଭାଗ, ନିର୍ମାଣ ବିଭାଗ, ଜଙ୍ଗଲ ବିଭାଗ ଓ ଭାରତୀୟ ବିମାନ ସେବା ଅଧିକାରୀଙ୍କ ପାଖରୁ ଅନୁମତି ମିଳିସାରିଛି । ଅନ୍ୟ କେତେକ ବିଭାଗର ଅନୁମତି ପାଇଁ ଉଦ୍ୟମ ଅବ୍ୟାହତ ରହିଛି ।

ପ୍ରତିମୂର୍ତ୍ତିର ନିର୍ମାଣ କାର୍ଯ ଚାଲିଛି । ମଝିରେ ପୂର୍ବ ନିଷ୍ପତ୍ତିରେ ସାମାନ୍ୟ ପରିବର୍ତ୍ତନ କରାଯାଇ ଏହା ଚୁଡାନ୍ତ ପର୍ଯ୍ୟାୟରେ ରହିଛି । କେ. ବୀରମଣି ସମସ୍ତ ବିଷୟଟିର ପରିଚାଳନା କରୁଛନ୍ତି ।

ତାଙ୍କର ୧୩୯ ତମ ଜନ୍ମ ଦିବସରେ ୨୧.୯.୨୦୧୭ ଦିନ ୧୩୯ × ୬= ୮୩୪ ଟି ସାଣ୍ଡର ପ୍ଲାଣ୍ଟ ସେଠରେ ରୋପଣ କରାଯାଇଛି । ପେରିୟାର ଜୀବନରେ ବିଚାରଶୀଳ ଦୃଷ୍ଟି, ସାମାଜିକ ସମତା, ପ୍ରଭୁତ୍ୱ ଭାବନାର ବିଲୋପ, ମାନବିକ ଅଧିକାର, ସମାନ ସୁଯୋଗ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଅନାବଶ୍ୟକ ଧର୍ମୀୟ କାମକାଣ୍ଡର ପ୍ରତ୍ୟାଖ୍ୟାନ ଇତ୍ୟାଦି ବହୁବିଧ କାର୍ଯ୍ୟ କରିଥିଲେ । ତାଙ୍କର ଏହି ସବୁ ଆଦର୍ଶକୁ ପ୍ରସାର କରିବା ଲକ୍ଷ୍ୟ ରଖି ପେରିୟାର ପୃଥିବୀର ପରିକଳ୍ପନା କରାଯାଇଛି । ସେଠାରେ ଅନ୍ୟାନ୍ୟ ଜିନିଷ ସହ ଆଉ ଯାହା ସବୁ ରହିବ ସେସବୁ ହେଲା : ବିଜ୍ଞାନର ଏକ ମ୍ୟୁଜିୟମ, ଶିଶୁ ଉଦ୍ୟାନ, ପାଠାଗାର, ପୁସ୍ତକ ଦୋକାନ, ଗବେଷଣା କେନ୍ଦ୍ର ଓ କ୍ୟାଣ୍ଟିନ । ପୃଥିବୀର ବିଭିନ୍ନ ପ୍ରାନ୍ତରରୁ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବାକୁ ଏସବୁ ବ୍ୟବସ୍ଥା କରାଯାଉଛି ।

# ୩୭. ପେରିୟାର ବିଶ୍ୱରେ ଜନପ୍ରିୟ ହେଉଛନ୍ତି

ଆର୍ଯ୍ୟ ବ୍ରାହ୍ମଣମାନେ ଭାରତୀୟ ସମାଜର ବହୁଜନ ମାନଙ୍କୁ ନ୍ୟୂନ କରିବାକୁ ଜାତି ବ୍ୟବସ୍ଥାର ପ୍ରଚଳନ କରିଥିଲେ । ଜାତିପ୍ରଥା ମାଧ୍ୟମରେ ସେମାନେ ବହୁଜନମାନଙ୍କର ଆତ୍ମମର୍ଯ୍ୟାଦାକୁ ଧ୍ୱଂସ କରିଥିଲେ ଯାହାଦ୍ୱାରା ସେମାନେ ସୁଖରେ ରହିପାରିବେ । ସେମାନେ କିଛି ଶାରୀରିକ ଶ୍ରମ କରିବେ ନାହିଁ, ଅନ୍ୟମାନଙ୍କର ଶ୍ରମର ଫଳ ଉପଭୋଗ କରିବେ । ଏହି ଉଦ୍ଦେଶ୍ୟରେ ସେମାନେ ଈଶ୍ୱର, ଧର୍ମ ଓ ଶାସ୍ତ୍ରମାନଙ୍କୁ ସୃଷ୍ଟି କରିଥିଲେ । ପେରିୟାର ଆର୍ଯ୍ୟ ବ୍ରାହ୍ମଣମାନଙ୍କର ଏହି ଅଭିସନ୍ଧିକୁ ପ୍ରକାଶକରି ବହୁଜନଙ୍କ ମଧ୍ୟରେ ଆତ୍ମମର୍ଯ୍ୟାଦା ସୃଷ୍ଟି କରିବାକୁ ପ୍ରୟାସୀ ହୋଇଥିଲେ । ବିଭିନ୍ନ ଭାଷଣ, ସମ୍ବାଦପତ୍ର ଲେଖା, ପୁସ୍ତକ ପ୍ରକାଶନ ମାଧ୍ୟମରେ ସେ ଲୋକମାନଙ୍କ ଭିତରେ ଆତ୍ମମର୍ଯ୍ୟାଦା ନେଇ ସାମାଜିକ ଚେତନା ଜାଗ୍ରତ କରିଥିଲେ ।

ପେରିୟାର ଯାହା ସବୁ କାର୍ଯ୍ୟ କରିଛନ୍ତି ତାହା ବିଶ୍ୱ ଦୃଶ୍ୟପଟରେ ଅଦ୍ୱିତୀୟ ମନେହୁଏ । ଯେତେବେଳେ ସମଗ୍ର ବିଶ୍ୱରେ ଆର୍ଥିକ ବିକାଶ ପାଇଁ ପ୍ରାଧାନ୍ୟ ଦିଆଯାଉଥିଲା, ସେତେବେଳେ ପେରିୟାର ଜନଗଣଙ୍କ ମଧ୍ୟରେ ଆତ୍ମମର୍ଯ୍ୟାଦାର ଭାବ ସୃଷ୍ଟି କରିବାକୁ ବେଶି ପ୍ରାଧାନ୍ୟ ଦେଉଥିଲେ । ଅର୍ଥ ଉପାର୍ଜନ ଅପେକ୍ଷା ସ୍ୱାଭିମାନ, ଆତ୍ମମର୍ଯ୍ୟାଦା ଭାବନା ଲୋକମାନଙ୍କ ଭିତରେ ଜାଗ୍ରତ କରିବାକୁ ପ୍ରୟାସ କରୁଥିଲେ । ଏହି ଆତ୍ମମର୍ଯ୍ୟାଦା ଆନ୍ଦୋଳନ ସମଗ୍ର ଦେଶରେ ଏକ କ୍ରାନ୍ତିକାରୀ ପଦକ୍ଷେପ ଥିଲା ଯାହା ତାଙ୍କୁ ଆନ୍ତର୍ଜାତିକ ସ୍ୱୀକୃତି ଆଣି ଦେଇଥିଲା । ଈଶ୍ୱର, ଆଧାରହୀନ ବିଶ୍ୱାସର ବିଲୋପ ତାଙ୍କ ଆତ୍ମମର୍ଯ୍ୟାଦା ଆନ୍ଦୋଳନର ଅଙ୍ଗ ବିଶେଷ ଥିଲା ।

ଜଣେ ବିଚାରଶୀଳ ବ୍ୟକ୍ତି କେବେହେଲେ ତଥାକଥିତ ଈଶ୍ୱର, ଧର୍ମ ଓ ଆଧାରହୀନ ବିଶ୍ୱାସଦ୍ୱାରା ପ୍ରଭାବିତ ହେବ ନାହିଁ । ଅନ୍ୟର ପ୍ରଭୁତ୍ୱ ଜନିତ ନିୟନ୍ତ୍ରଣରୁ ମୁକ୍ତ ହେବା ସହ ଏହି ସବୁ ଆଧାରହୀନ ବିଶ୍ୱାସରୁ ମୁକ୍ତ ହେବା ହିଁ ଆତ୍ମସମ୍ମାନର

ବିସ୍ତାରିତ ଅର୍ଥ । ସଂପ୍ରତି ପେରିୟାରଙ୍କର ଏହି ଭାବଧାରା ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ହେବାରେ ଲାଗିଛି ।

ବିକଶିତ ରାଷ୍ଟ୍ରମାନଙ୍କରେ ୬୦%ରୁ ଅଧିକ ଲୋକ ଧର୍ମ, ଈଶ୍ୱର ଆଦି ଭାବନାରେ ବିଶ୍ୱାସ କରୁନାହାନ୍ତି । ଆମେରିକା, ଇଂଲଣ୍ଡ, ସ୍କଟଲାଣ୍ଡ, ଚେକୋ, ଜାପାନ, ଜର୍ମାନୀ, ଇସ୍ରାଏଲ, ନରୱେ ଇତ୍ୟାଦି ଦେଶମାନଙ୍କରେ ୬୦%ରୁ ଅଧିକ ଲୋକ ଧର୍ମ, ଈଶ୍ୱର ଭାବନାରେ ବିଶ୍ୱାସ କରୁନାହାନ୍ତି ।

ଆମେରିକାରେ ୱାସିଙ୍ଗ୍‌ଟନ ଡି.ସି.ରେ ନିରୀଶ୍ୱରବାଦୀ ମାନଙ୍କର ଏକ ବିରାଟ ପ୍ରସେସନ କରାଯାଇଥିଲା । ସେଥିରେ ତିରିଶ ହଜାରରୁ ଅଧିକ ଲୋକ ଯୋଗ ଦେଇଥିଲେ । ସେଠାରେ ନିଷ୍ପତ୍ତି ହୋଇଥିଲା ଯେ ଯେଉଁମାନେ ରାଜନୀତିରେ ପ୍ରବେଶକରିବେ ସେମାନଙ୍କର କୌଣସି ଧାର୍ମିକ ବିଶ୍ୱାସ ରହିବ ନାହିଁ । ଯେଉଁମାନେ ଆମେରିକାର ରାଷ୍ଟ୍ରପତି ପଦ ପାଇଁ ହେଉଥିବା ନିର୍ବାଚନରେ ଅଂଶଗ୍ରହଣ କରିବେ ସେମାନଙ୍କର କିଛି ଧାର୍ମିକ ଆନୁଗତ୍ୟ ରହିବ ନାହିଁ । ସାରା ବିଶ୍ୱରେ ନିରୀଶ୍ୱରବାଦୀମାନଙ୍କର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ବିଶେଷକରି ଧାର୍ମିକ ବିଶ୍ୱାସ ପ୍ରତି କୌଣସି ଆନୁଗତ୍ୟ ନ ରଖି ରାଷ୍ଟ୍ରୀୟ ଆଇନମାନ ନିର୍ଦ୍ଧାରିତ ହେବ । ଏହି ପରିପ୍ରେକ୍ଷୀରେ ଏସିଆ, ମଧ୍ୟପ୍ରାଚ୍ୟ ଓ ଇଉରୋପରେ ଧର୍ମକୁ ନେଇ ସନ୍ତ୍ରାସବାଦ ବୃଦ୍ଧି ପାଇବାରେ ଲାଗିଛି । ଧାର୍ମିକ ମୌଳବାଦ ଓ ସାଂପ୍ରଦାୟିକତାବାଦ ଆଧାରରେ ପୃଥିବୀରେ ହିଂସା, ସନ୍ତ୍ରାସବାଦ ବୃଦ୍ଧି ପାଇବାରେ ଲାଗିଛି । ଆମେରିକାର ନିରୀଶ୍ୱରବାଦୀମାନେ ପ୍ରସେସନ ଓ ସଭାକରି ଏସବୁକୁ ନିନ୍ଦା କରିଥିଲେ । ଯେଉଁମାନେ ସେହି ସଭାରେ ଯୋଗଦେଇଥିଲେ ସେମାନେ କୌଣସି ଧର୍ମରେ ବିଶ୍ୱାସ କରୁନାହାନ୍ତି ବୋଲି ଏକ ଘୋଷଣାପତ୍ରରେ ଦସ୍ତଖତ କରିଥିଲେ । ଈଶ୍ୱର ବିଶ୍ୱାସ ସବୁଠାରୁ ବଡ ଅନ୍ଧବିଶ୍ୱାସ ବୋଲି ସେଠାରେ ମତ ପ୍ରକାଶ ପାଇଥିଲା ।

ଏ ସଂପର୍କରେ ଏହି ସମ୍ମିଳନୀର ଆବାହକ ଲୋରି ଡକ୍କର କହିଥିଲେ – "ଏହି ପ୍ରସେସନରେ ଶାସକ ଦଳର ଏକ ତୃତୀୟାଂଶ ସଂସଦ ଅଂଶଗ୍ରହଣ କରିଛନ୍ତି ।

ଏଥିରୁ ଏହା ଜଣାଯାଏ ଯେ ଅଧାର୍ମିକ ଓ ନିରୀଶ୍ୱରବାଦୀମାନଙ୍କର ସଂଖ୍ୟା ଆମେରିକା ରାଜନୀତିରେ ବୃଦ୍ଧି ପାଇବାରେ ଲାଗିଛି ।"

ଆମେରିକାରେ ଶତକଡା ଷାଠିଏ ଭାଗ ଲୋକ ଆଶା କରନ୍ତି ଯେ ଆମେରିକାରେ ଯିଏ ରାଷ୍ଟ୍ରପତି ହେବେ ସେ ନିରୀଶ୍ୱରବାଦକୁ ସମର୍ଥନ କରୁଥିବେ । ଆଧୁନିକ ଆମେରିକୀୟ ସମାଜରେ ନିରୀଶ୍ୱରବାଦୀମାନଙ୍କର ସଂଖ୍ୟା ବିଶେଷ ବୃଦ୍ଧି ପାଇନାହିଁ । ସେମାନେ ସଂଖ୍ୟାଲଘୁ ଗୋଷ୍ଠୀରେ ହେଲେ ବି ଆମେରିକାରେ ଅନେକ ରାଜନୈତିକ ବିକାଶ ସମ୍ଭବ ହୋଇଛି । ଦିନକୁ ଦିନ ଆମେରିକାରେ ନିରୀଶ୍ୱରବାଦୀଙ୍କର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି ଓ ଇଶ୍ୱର-ବିଶ୍ୱାସୀ ମାନଙ୍କର ସଂଖ୍ୟା ହ୍ରାସ ହୋଇଚାଲିଛି । ଆମେରିକାର ସମସ୍ତ ଶିକ୍ଷିତ ଲୋକମାନେ ସେମାନଙ୍କ ନିତିଦିନିଆ ଜୀବନରୁ ଧାର୍ମିକ କାର୍ଯ୍ୟକୁ ଦୂର କରିବାରେ ଲାଗିଛନ୍ତି ।

ଆବାହକ ଡକର ମଧ କହିଥିଲେ -"ମୁଁ ଧାର୍ମିକ ଲୋକଙ୍କ ଅପେକ୍ଷା ନିରୀଶ୍ୱରବାଦୀଙ୍କ ମେଳରେ ଅଧିକ ସୁସ୍ଥ ଅନୁଭବ କରିଥାଏ । ଯେତେବେଳେ ଦୁଇଟି ପୃଥକ୍ ଧର୍ମର ଲୋକଙ୍କ ମଧରେ ସାକ୍ଷାତ ଆଲୋଚନା ହୁଏ ସେମାନଙ୍କ ମଧରେ ମତଦ୍ୱୈଧ ହେବାର ସମ୍ଭାବନା ରହିଥାଏ । ଏହାଦ୍ୱାରା ସେମାନଙ୍କର ବନ୍ଧୁତ୍ୱ ନଷ୍ଟ ହୋଇଥାଏ । କିନ୍ତୁ ଯେତେବେଳେ ନିରୀଶ୍ୱରବାଦୀଙ୍କ ମଧରେ ସାକ୍ଷାତ ହୁଏ ସେତେବେଳେ ସେମାନଙ୍କ ମଧରେ କୌଣସି ପାର୍ଥକ୍ୟ ହେବାର ସମ୍ଭାବନା ନଥାଏ । ଆମେରିକାରେ ରାଷ୍ଟ୍ରପତି ପ୍ରାର୍ଥୀଙ୍କର ନିର୍ବାଚନ ଇତିହାସକୁ ଯଦି ଦେଖିବେ, ଆପଣ ଜାଣିବାକୁ ପାଇବେ ଯେ ଧର୍ମ ବିଶ୍ୱାସୀ ବ୍ୟକ୍ତିମାନେ ଆସ୍ତେ ଆସ୍ତେ ଚାଲି ଯାଉଛନ୍ତି । ସେମାନଙ୍କ ମଧରୁ ଜନ କାସିଚ କହିଥିଲେ, "ଇଶ୍ୱର ଆମେରିକାର ରାଷ୍ଟ୍ରପତି ଜଣେ ଇଶ୍ୱରବିଶ୍ୱାସୀ ବ୍ୟକ୍ତି ହୁଅନ୍ତୁ ଏହା ଚାହାନ୍ତି ନାହିଁ । ସେ ଥିଲେ ଜଣେ ଇଶ୍ୱର-ବିଶ୍ୱାସୀ ବ୍ୟକ୍ତି ।" (ୱାସିଂଟନ ପୋଷ୍ଟ, ସି.ଏନ.ଏନ.୪.୧.୨୦୧୬)"

## ବ୍ରିଟେନରେ ନିରୀଶ୍ୱରବାଦୀଙ୍କର ସଂଖ୍ୟା ବୃଦ୍ଧିପାଉଛି :

୨୦୧୧ରେ ବ୍ରିଟେନରେ ନିରୀଶ୍ୱରବାଦୀଙ୍କର ସଂଖ୍ୟା ୪୮% ଥିଲା । ପାଞ୍ଚ ବର୍ଷ ପରେ ଏହି ସଂଖ୍ୟାରେ ବହୁ ଅଭିବୃଦ୍ଧି ଘଟିବା ଜଣାଯାଏ । ଏକଦା ଅତ୍ୟନ୍ତ କଟ୍ଟରପନ୍ଥୀ ଧର୍ମ ବିଶ୍ୱାସୀ ରହିଥିବା ଲୋକଙ୍କ ସଂଖ୍ୟାରେ ଦ୍ରୁତ ହ୍ରାସ ହେଉଥିବା ଯୋଗୁ ଚର୍ଚ୍ଚର ପରିଚାଳନା ନେଇ ଉତ୍କଣ୍ଠା ପ୍ରକାଶ ପାଉଛି । ଇଂଲଣ୍ଡରେ ଉଭୟ କ୍ୟାଥୋଲିକ ଓ ଅନ୍ୟ ଗୋଷ୍ଠୀର ଖ୍ରୀଷ୍ଟିଆନମାନେ ରହୁଛନ୍ତି । ଇଂଲଣ୍ଡରେ ଦକ୍ଷିଣ ଭାଗରେ ରହୁଥିବା ଖ୍ରୀଷ୍ଟିଆନମାନେ ଏକଦା ଗଭୀର ଧର୍ମବିଶ୍ୱାସୀ ବ୍ୟକ୍ତି ରହିଥିଲେ, କିନ୍ତୁ ସମୟର ପରିବର୍ତ୍ତନ ସହ ସେଥିରେ ଏବେ ବହୁ ପରିବର୍ତ୍ତନ ଦେଖାଯାଉଛି ।

ଇଂଲଣ୍ଡର ଡୁଉଚେକମଠାରେ ରହିଥିବା କ୍ୟାଥୋଲିକ ବିଶ୍ୱବିଦ୍ୟାଳୟର ପ୍ରଫେସର ଷ୍ଟିଫେନ ବଲଭାଣ୍ଟ ନିରୀଶ୍ୱରବାଦୀଙ୍କ ସଂଖ୍ୟା ବୃଦ୍ଧି ନେଇ କହିଥିଲେ, "ବର୍ଦ୍ଧିଷ୍ଣୁ ଲୋକମାନଙ୍କ ଚିନ୍ତାଧାରା ସ୍ୱଷ୍ଟ । ଗତ କିଛି ବର୍ଷ ଧରି ବୈଜ୍ଞାନିକ ବିଚାର ଧାର୍ମିକ ବିଶ୍ୱାସକୁ ନଷ୍ଟକରି ଚାଲିଛି । ଏହି କାରଣରୁ ଯୁବକମାନେ ଓ ସେହି ପିଢ଼ିର ଲୋକମାନେ ନିରୀଶ୍ୱରବାଦୀ ହେବାରେ ଲାଗିଛନ୍ତ ।" ଯୁବବର୍ଗର ଲୋକମାନେ ଏହି ପ୍ରଶ୍ନ ଉଠାଉଛନ୍ତି : ଲୋକମାନଙ୍କ ମଧ୍ୟରେ ଧର୍ମ କେତେ ଦୂର ସଦ୍‌ଭାବନା ସୃଷ୍ଟି କରିପାରୁଛି ? ଏହାର ମୁଖ୍ୟ କାରଣ ହେଉଛି ଧର୍ମ ନାମରେ ଲୋକମାନେ ଅହେତୁକ ଭାବରେ କାର୍ଯ୍ୟ କରୁଛନ୍ତି ଓ ସେମାନେ ସାରା ପୃଥିବୀରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ବିସ୍ତାର କରିବାରେ ଲାଗିଛନ୍ତି ।

କେବଳ ଇଂଲଣ୍ଡ ନୁହେଁ, ଏପରିକି ସ୍କଟଲାଣ୍ଡ ଓ ଦକ୍ଷିଣପୂର୍ବ ଆୟେରଲାଣ୍ଡରେ ୫୨% ଲୋକ ଧର୍ମରେ ବିଶ୍ୱାସ କରୁନାହାନ୍ତି ବୋଲି ଘୋଷଣା କରିଛନ୍ତି ।୧୯୯୯ରେ ୨୯% ଲୋକ ନିଜକୁ ନିରୀଶ୍ୱରବାଦୀ କହୁଥିଲେ । ସ୍କଟଲାଣ୍ଡପରି ଏକ ରକ୍ଷଣଶୀଳ ରାଷ୍ଟ୍ରରେ ଦିନକୁ ଦିନ ନିରୀଶ୍ୱରବାଦୀମାନଙ୍କର ସଂଖ୍ୟା ବୃଦ୍ଧି ପାଇବା ଚିନ୍ତାର ବିଷୟ । ଇଂଲଣ୍ଡର କ୍ୟାଥୋଲିକ ପ୍ରିଷ୍ଟ ମାନେ

କ୍ରମବର୍ଦ୍ଧିଷ୍ଣୁ ନିରୀଶ୍ୱରବାଦୀ ମାନଙ୍କ ସଂପର୍କରେ କହିଥିଲେ, "ଗତ କେତେ ବର୍ଷ ଧରି ଚର୍ଚ୍ଚକୁ ଆସୁଥିବା ଲୋକମାନଙ୍କର ସଂଖ୍ୟା ଦ୍ରୁତଗତିରେ କମିବାରେ ଲାଗିଛି । ଏପରିକି ଆଗନ୍ତୁକମାନଙ୍କର ସଂଖ୍ୟା ଗୋଟିଏ ପୃଷ୍ଠା ମଧ୍ୟ ପୂର୍ଣ୍ଣ ହେଉନାହିଁ । କ୍ୟାଥେଲିକ ଚର୍ଚ୍ଚ ଓ ଅନ୍ୟାନ୍ୟ ଧର୍ମପୀଠ ତରଫରୁ ଅତିଥି ଭ୍ରମଣକାରୀମାନଙ୍କର ସଂଖ୍ୟା ଦ୍ରୁତଗତିରେ କମୁଥିବାରୁ ଉତ୍କଣ୍ଠା ପ୍ରକାଶ ପାଉଛି । ଇଂଲଣ୍ଡରେ ପ୍ରତି ଦଶଜଣରେ ଚାରିଜଣ ଲୋକ ଯୁବପିଢ଼ିମାନଙ୍କ ମଧ୍ୟରେ ଧର୍ମକୁ ନେଇ ପ୍ରଶ୍ନ ଉଠାଉଛନ୍ତି । ଭବିଷ୍ୟତରେ ଏମାନେ ନିଜକୁ ନିରୀଶ୍ୱରବାଦୀ ଘୋଷଣା କରିପାରନ୍ତି । ଇଂଲଣ୍ଡରେ ଚର୍ଚ୍ଚମାନେ କିପରି ପିଲା ଓ ଯୁବକମାନେ ଚର୍ଚ୍ଚକୁ ନିୟମିତ ଆସିବେ ସେ ପାଇଁ ପ୍ରଚାର କରୁଛନ୍ତି । ଯଦିବି ସେମାନେ ଚର୍ଚ୍ଚକୁ ଆସୁଛନ୍ତି ତେବେ ସେମାନେ ଯେଉଁ ସବୁ ପ୍ରଶ୍ନ ଉଠାଉଛନ୍ତି ପ୍ରିଷ୍ଟମାନେ ସେମାନଙ୍କ ପ୍ରଶ୍ନର ଉତ୍ତର ଦେବାକୁ ସମର୍ଥ ହୋଇପାରୁ ନାହାନ୍ତି । ଇଂଲଣ୍ଡର ରକ୍ଷଣଶୀଳ ଲୋକଙ୍କ ମଧ୍ୟରେ ବି ନିରୀଶ୍ୱରବାଦୀମାନଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ଇଂଲଣ୍ଡରେ ଖ୍ରୀଷ୍ଟିଆନ, ହିନ୍ଦୁ ଓ ମୁସଲମାନ ଲୋକଙ୍କ ମଧ୍ୟରେ ଈଶ୍ୱରଙ୍କ ଉପରେ ବିଶ୍ୱାସ କରୁନଥିବା ଲୋକଙ୍କର ସଂଖ୍ୟା ଦ୍ରୁତଗତିରେ ହ୍ରାସ ପାଇବାରେ ଲାଗିଛି । ପରିସଂଖ୍ୟାନରୁ ଜଣାଯାଏ ଯେ ବିଭିନ୍ନ ଧର୍ମାବଲମ୍ବୀ ଲୋକମାନେ ସେମାନଙ୍କ ଧର୍ମରେ ଆସ୍ଥା ରଖୁନାହାନ୍ତି ।

ଇଂଲଣ୍ଡ ଓ ୱେଲସରେ ୪୮.୫ ଭାଗ ଲୋକ କୌଣସି ଧର୍ମରେ ବିଶ୍ୱାସ ରଖିନାହାନ୍ତି । ସ୍କଟଲାଣ୍ଡରେ ୫୨% ଲୋକ ଧର୍ମରେ ଆସ୍ଥା ରଖିନଥିବା ଘୋଷଣା କରିଛନ୍ତି । ଚେକ ରିପବ୍ଲିକ ଏକଦା ରୁଷର ଅଂଶବିଶେଷ ଥିଲା । ପରେ ଏହା ରୁଷରୁ ଚାଲିଆସିଲା । ଅନ୍ୟାନ୍ୟ ଇଉରୋପୀୟ ରାଷ୍ଟ୍ର ତୁଳନାରେ ଚେକ ରିପବ୍ଲିକରେ ଅଧିକ ଲୋକ ନିରୀଶ୍ୱରବାଦୀ ଥିବା ଜଣାଯାଏ । ବହୁଦିନରୁ ଏଠାରେ ୪୫% ଲୋକ ନିଜକୁ ନିରୀଶ୍ୱରବାଦୀ ବୋଲି ଘୋଷଣା କରିଛନ୍ତି । ପୂର୍ବରୁ ଈଶ୍ୱରଙ୍କ ଉପରେ ବିଶ୍ୱାସ ରଖିଥିବା ଲୋକଙ୍କ ମଧ୍ୟରୁ ୩୦% ଲୋକ ଏବେ ନିରୀଶ୍ୱରବାଦୀ ହୋଇଥିବା ଜଣାଯାଏ । ସୁତରାଂ ସେଠାରେ ୭୫% ଲୋକ ନିରୀଶ୍ୱରବାଦୀ

ହୋଇଥିବା ଜଣାଯାଏ । ଜାପାନରେ ୨୫% ଲୋକ ସମସ୍ତ ଧାର୍ମିକ କାର୍ଯ୍ୟରୁ ସଂପୂର୍ଣ୍ଣ ମୁକ୍ତ ଥିବା ଜଣାଯାଏ । ୩୧% ଲୋକଙ୍କ ମତରେ କୌଣସି ଅତୀନ୍ଦ୍ରିୟ ଶକ୍ତି ଆମର ଜୀବନଧାରାକୁ ନିୟନ୍ତ୍ରଣ କରିବା ଭାବନାରେ ସେମାନଙ୍କର ଆଦୌ ବିଶ୍ୱାସ ନଥିବା ସେମାନେ ଘୋଷଣା କରିଛନ୍ତି । ଜର୍ମାନୀରେ ୬୦% ଭାଗ ଲୋକ ନିରୀଶ୍ୱରବାଦୀ ବୋଲି ନିଜକୁ ଘୋଷଣା କରିଛନ୍ତି । ଇସ୍ରାଏଲରେ ୫୭% ଲୋକ କୌଣସି ଧର୍ମରେ ସେମାନେ ବିଶ୍ୱାସ କରୁନଥିବା ଘୋଷଣା କରିଛନ୍ତି । ଏହାଛଡା ୮% ଲୋକ ସାଧାରଣରେ ନିଜକୁ ନିରୀଶ୍ୱରବାଦୀ ବୋଲି କହିଛନ୍ତି । ନରୱେରେ ଗତ ଦୁଇବର୍ଷରେ ଅନେକ ପରିବର୍ତ୍ତନ ସଂଘଟିତ ହୋଇଛି । ଦୁଇ ବର୍ଷ ତଳେ ସେଠାରେ ନରୱେରେ ଅଧା ଲୋକ ନିରୀଶ୍ୱରବାଦୀ ଥିଲେ ଓ ଅଧା ଲୋକ ଧର୍ମରେ ବିଶ୍ୱାସ କରୁଥିଲେ । ତେବେ ନିକଟରେ ନିରୀଶ୍ୱରବାଦୀଙ୍କର ସଂଖ୍ୟା ବହୁତ ବୃଦ୍ଧି ପାଇଛି ।

## ନିରୀଶ୍ୱରବାଦର ପ୍ରଥମ ଚେୟାର

ଆମେରିକାରେ ଧର୍ମର ପ୍ରତ୍ୟାଖ୍ୟାନ ଲୋକଙ୍କ ସଂଖ୍ୟା ଦିନକୁ ଦିନ ବୃଦ୍ଧି ପାଉଛି । ମିଆମି ବିଶ୍ୱବିଦ୍ୟାଳୟ ନିରୀଶ୍ୱରବାଦ ଉପରେ ଗବେଷଣା ପାଇଁ ଏକ ଚେୟାର ସୃଷ୍ଟିକରିଛି । ୮୩ ବର୍ଷୀୟ ଲୁଇସ ଜେ. ଅବିକାନୀ ଏହି ଚେୟାର ସୃଷ୍ଟି ପାଇଁ ୨୨ ଲକ୍ଷ ଡଲାର ଅବାଦନ ଦେଇଛନ୍ତି । ପୂର୍ବରୁ ସେ ବାର୍ବିସନ ଇଣ୍ଟରନେସନାଲ ମଡେଲ ସ୍କୁଲର ମୁଖ୍ୟ ଥିଲେ । ସେ ଆମେରିକାରେ ଫ୍ଲୋରିଡାରେ ବାସକରନ୍ତି । ସେ ଜଣେ ଅବସରପ୍ରାପ୍ତ ବ୍ୟବସାୟୀ । ସେ ଜଣେ ନିରୀଶ୍ୱରବାଦୀ ।

ରିଚାର୍ଡ ଡକିନ୍‌ସ "ଦି ଗଡ୍ ଡିଲୁଜନ" ନାମରେ ଏକ ସୁନ୍ଦର ପୁସ୍ତକ ଲେଖିଛନ୍ତି । ସେ ବି ଜଣେ ପ୍ରଖ୍ୟାତ ନିରୀଶ୍ୱରବାଦୀ । ମିଆମି ବିଶ୍ୱବିଦ୍ୟାଳୟରେ ନିରୀଶ୍ୱରବାଦ ଗବେଷଣା ପାଇଁ ଖୋଲା ଯାଇଥିବା ଚେୟାର ଏକ ବଳିଷ୍ଠ ପଦକ୍ଷେପ ବୋଲି ଡକିନ୍‌ସ ମତପୋଷଣ କରିଛନ୍ତି । ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟ ମଧ୍

ନିରୀଶ୍ୱରବାଦକୁ କଲେଜ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ କରିବା ପାଇଁ ମତପୋଷଣ କରିଛନ୍ତି ।

ଏହି ସବୁ ଘଟଣାରୁ ଜଣାପଡେ ଯେ ପୃଥିବୀରେ ଧର୍ମକୁ ବିଶ୍ୱାସ କରୁନଥିବା ଲୋକମାନଙ୍କ ସଂଖ୍ୟା ଧୀରେ ଧୀରେ ବୃଦ୍ଧି ପାଉଛି । ଏହା ସହିତ ନିରୀଶ୍ୱରବାଦୀଙ୍କ ସଂଖ୍ୟା ମଧ୍ୟ ବଢିଚାଲିଛି । ଏହା ନିଃସନ୍ଦେହ ଯେ ପେରିୟାର ଯେଉଁ ଭାବଧାରା ଭାରତରେ ସୂତ୍ରପାତ କରିଥିଲେ ତାହା କାଳକ୍ରମେ ଆନ୍ତର୍ଜାତିକ ସ୍ତରରେ ଅଧିକରୁ ଅଧିକ ସ୍ୱୀକୃତ ହୋଇଚାଲିଛି । ପେରିୟାରଙ୍କ ଏହି ବିଚାରଧାରାକୁ ଅବଦାନ ସଂପର୍କରେ ଜର୍ମାନୀରେ ଏକ ସମ୍ମିଳନୀ ହୋଇଥିଲା । ପେରିୟାର ଆତ୍ମମର୍ଯ୍ୟାଦା ଆନ୍ଦୋଳନ ସଂଗଠନ ତରଫରୁ ଏହା ଆୟୋଜିତ ହୋଇଥିଲା । ପେରିୟାରଙ୍କ ଉପରେ ଏହା ଥିଲା ପ୍ରଥମ ଆନ୍ତର୍ଜାତିକ ସମ୍ମିଳନୀ । ଏହି ସମ୍ମିଳନୀକୁ ଆମେରିକାର ପେରିୟାର ଆନ୍ତର୍ଜାତିକ ସଂଗଠନ, ପେରିୟାର ଆନ୍ତର୍ଜାତିକ ସଂଗଠନର ଜର୍ମାନୀ ଶାଖା ଓ ତାମିଲନାଡୁ ତାଂଜବୁରସ୍ଥିତି ପେରିୟାର ମାନିଆମାଇ ବିଶ୍ୱବିଦ୍ୟାଳୟର ସମ୍ମିଳିତ ଉଦ୍ୟମରେ କରାଯାଇଥିଲା । ଏହି ସମ୍ମିଳନୀରେ ଆମେରିକା, ଇଂଲଣ୍ଡ, ନରୱେ, ସ୍ୱିଡେନ, ଫିନଲାଣ୍ଡ, ଫ୍ରାନ୍ସ ଓ ସୁଇଜରଲାଣ୍ଡରୁ ପ୍ରତିନିଧିମାନେ ବ୍ୟକ୍ତିଗତ ଉଦ୍ୟମରେ କିମ୍ବା ବିଭିନ୍ନ ଦେଶର ସଂଗଠନର ପ୍ରତିନିଧି ଭାବେ ଯୋଗଦେଇଥିଲେ । ତାମିଲନାଡୁ ଡିକେ ପାର୍ଟି ତରଫରୁ କେତେକ ପ୍ରତିନିଧି ସେହି ସମ୍ମିଳନୀକୁ ନିଜସ୍ୱ ଖର୍ଚ୍ଚରେ ଯାଇଥିଲେ ।

ଏହି ସମ୍ମିଳନୀ ତିନିଦିନ ଧରି ହୋଇଥିଲା । ପ୍ରଥମ ଦିନର ଅପରାହ୍ନରେ ଡି.କେ ପାର୍ଟିର ସଭାପତି କେ. ବୀରମଣି ଏହି ସମ୍ମିଳନୀକୁ ଉଦ୍‌ଘାଟନ କରିଥିଲେ । ଦ୍ୱିତୀୟ ଦିନରେ ଜର୍ମାନୀର ବିଭିନ୍ନ ବିଶ୍ୱବିଦ୍ୟାଳୟର ଶିକ୍ଷାବିତ୍‌ମାନେ ଯୋଗ ଦେଇଥିଲେ । ସେମାନେ ପେରିୟାରଙ୍କ ଆତ୍ମମର୍ଯ୍ୟାଦା ଆନ୍ଦୋଳନ, ଜାତିପ୍ରଥାର ବିଲୋପ, ମହିଳା ସଶକ୍ତୀକରଣ ଓ କୁସଂସ୍କାର ବିଲୋପନ ନେଇ ନିବନ୍ଧମାନ ଉପସ୍ଥାପନ କରିଥିଲେ । ଏହି ପ୍ରସଙ୍ଗମାନଙ୍କ ଉପରେ ସେମାନେ ମଧ୍ୟ ଗମ୍ଭୀର

ଆଲୋଚନା କରିଥିଲେ ।

ତୃତୀୟ ଦିବସରେ ବିଭିନ୍ନ ଦେଶରୁ ଆସିଥିବା ହେତୁବାଦୀ ଓ ମୁକ୍ତଚିନ୍ତକମାନେ ୯୦ ବର୍ଷ ତଳେ ପେରିୟାର ସୃଷ୍ଟି କରିଥିବା ଆତ୍ମ- ମର୍ଯ୍ୟାଦା ଆନ୍ଦୋଳନ ଉପରେ ବିସ୍ତୃତ ଆଲୋଚନା କରିଥିଲେ ।

ଏହି ଆନ୍ତର୍ଜାତିକ ସମ୍ମିଳନୀରେ ପେରିୟାରଙ୍କ ଆତ୍ମମର୍ଯ୍ୟାଦା ଆନ୍ଦୋଳନକୁ କିପରି ବିଶ୍ୱରେ ପ୍ରସାର କରାଯିବ ସେ ବିଷୟରେ ଆଲୋଚନା ହୋଇଥିଲା । ଏହି ଉଦ୍ଦେଶ୍ୟରେ ଏକ ବିସ୍ତୃତ ଯୋଜନା ପ୍ରସ୍ତୁତ କରାଯାଇଥିଲା । ପେରିୟାରଙ୍କ ଅନୁଗତ କେ. ବୀରମଣି ପେରିୟାରଙ୍କ ଆଦର୍ଶକୁ ଆନ୍ତର୍ଜାତିକ ସ୍ତରରେ ବିସ୍ତାର କରିବା ପାଇଁ ନିଷ୍ଠାପର ଉଦ୍ୟମ କରୁଛନ୍ତି । ତାଙ୍କର ଏହି ପ୍ରୟାସ ଧନ୍ୟବାଦାର୍ହ । ଏହି ଆନ୍ତର୍ଜାତିକ ସମ୍ମିଳନୀ ବିଷୟରେ ବିସ୍ତୃତ ଭାବେ ଜାଣିବାକୁ ଇଣ୍ଟରନେଟ୍‌ର ସହାୟତା ନେଇପାରନ୍ତି । ଏହା www.periyarinternational.com ରେ ଉପଲବ୍ଧ ।

# ୩୮. ପେରିୟାରଙ୍କ ନାମରେ ଦିଆଯାଉଥିବା ସମ୍ମାନ/ପୁରସ୍କାର

ପେରିୟାର ପୁରସ୍କାର ପ୍ରତିବର୍ଷ ଡି.କେ ପାର୍ଟିଦ୍ୱାରା ଓ ଅନ୍ୟାନ୍ୟ ରାଜନୈତିକ ସଂଗଠନଦ୍ୱାରା ପ୍ରଦାନ କରାଯାଉଛି । ଯେଉଁମାନେ ଏହି ପୁରସ୍କାର ଲାଭକରୁଛନ୍ତି ସେମାନେ ଏହାକୁ ଏକ ଗୌରବ ଭାବେ ନେଉଛନ୍ତି ।

ପ୍ରତିବର୍ଷ ତାମିଲ ନୂଆବର୍ଷ ଦିନ ଡି.କେ. ପାର୍ଟି ତରଫରୁ ପେରିୟାରଙ୍କ ନାମରେ ଏକ ପୁରସ୍କାର ଦିଆଯାଏ । କୌଣସି କ୍ଷେତ୍ରରେ ଯିଏ କୌଣସି ଅସାମାନ୍ୟ କୃତିତ୍ୱ ପ୍ରଦର୍ଶନ କରିଥାନ୍ତି ତାଙ୍କୁ ଏହି ପୁରସ୍କାର ଦିଆଯାଇଥାଏ ।

ତାମିଲନାଡୁ ସରକାର ପ୍ରତିବର୍ଷ ସରକାରଙ୍କ ତରଫରୁ ଏକ ପୁରସ୍କାର ପେରିୟାରଙ୍କ ନାମରେ ଦେଇଥାଏ । ଯିଏ ପେରିୟାରଙ୍କ ଭାବଧାରାର ପ୍ରସାର କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ଦେଇଥାନ୍ତି ତାଙ୍କୁ ସରକାରଙ୍କ ତରଫରୁ ସମ୍ମାନିତ କରାଯାଏ । ଡିଏମକେ ପାର୍ଟି ପ୍ରତିବର୍ଷ ଏକ ଉତ୍ସବ ପାଳନ କରିଥାଏ । ସେହି ସମୟରେ ଏହି ଦଳ ପେରିୟାରଙ୍କ ନାମରେ ଏକ ପୁରସ୍କାର ଦେଇଥାଏ । ଯିଏ ପେରିୟାରଙ୍କ ଚିନ୍ତାଧାରା ଓ ଦର୍ଶନ ପ୍ରସାର ପାଇଁ ଅବଦାନ ଦେଇଛନ୍ତି ତାଙ୍କୁ ସମ୍ମାନିତ କରାଯାଏ । ଏହି ପୁରସ୍କାରକୁ 'ପେରିୟାର ଆଲୋକ' (Periyar Light) କୁହାଯାଏ । ବିଦୁତଲାଲ ଚିରୁତାଇ ପାର୍ଟି ପ୍ରତିବର୍ଷ ମଧ୍ୟ ଏକ ପୁରସ୍କାର ପ୍ରଦାନ କରିଥାଏ । ପେରିୟାରଙ୍କ ଆଦର୍ଶ ପ୍ରସାର କ୍ଷେତ୍ରରେ ନିଜର ଅବଦାନ ଦେଇଥିବା ବ୍ୟକ୍ତିଙ୍କୁ ଏହା ଦିଆଯାଏ । ପ୍ରତ୍ୟେକ ପୁରସ୍କାରରେ ମାନପତ୍ର, ଅର୍ଥ ବିଜେତାଙ୍କୁ ପ୍ରଦାନ କରାଯାଇଥାଏ ।



ଧନେଶ୍ୱର ସାହୁ (ଜନ୍ମ ୧୯୪୯) ୧୯୭୪ ରୁ ଦର୍ଶନ ବିଭାଗର ଅଧ୍ୟାପକ ଭାବେ କାର୍ଯ୍ୟକରି ୨୦୦୭ ରେ ବିଜେବି ମହାବିଦ୍ୟାଳୟ, ଭୁବନେଶ୍ୱରରୁ ଅବସର ନେଇଛନ୍ତି ।

ଜଣେ ପ୍ରାବନ୍ଧିକ, ସ୍ତମ୍ଭକାର, ଅନୁବାଦକ ଓ ପ୍ରଗତିଶୀଳ ବୁଦ୍ଧିଜୀବୀ ଭାବରେ ଓଡ଼ିଶାରେ ପରିଚିତ । ଜଣେ ହେତୁବାଦୀ ଚିନ୍ତକ ଭାବେ ଜାତୀୟ ସ୍ତରରେ ମଧ୍ୟ ବେଶ୍ ଜଣାଶୁଣା ।

ବର୍ତ୍ତମାନ ସୁଦ୍ଧା ତାଙ୍କର ନ'ଟି ପ୍ରବନ୍ଧ ସଙ୍କଳନ, ପାଞ୍ଚଟି ଇଂରାଜୀରୁ ଓଡ଼ିଆ ଅନୁବାଦ ପୁସ୍ତକ, ଚାରିଟି ଗବେଷଣାମୂଳକ ପୁସ୍ତକ ଓ ଚାରିଟି ଇଂରାଜୀ ପୁସ୍ତକ ତାଙ୍କର ସୃଜନ ଅବଦାନ । ତାଙ୍କ ରଚିତ ଅନ୍ୟ କେତେକ ପୁସ୍ତକ ପ୍ରକାଶ ଅପେକ୍ଷାରେ ରହିଛି ।

ଲେଖକ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ, ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର (ପ୍ରବନ୍ଧ ପାଇଁ ୨୦୧୦ ରେ), ପେରିୟାର ଇଣ୍ଟରନେସନାଲ ଆୱାର୍ଡ଼, ବୟୋଜ୍ୟେଷ୍ଠ ନାଗରିକ ସମ୍ମାନ, ଗୋରା ସରସ୍ୱତୀ ଗୋରା ଇଣ୍ଟରନେସନାଲ ଆଥେଇଷ୍ଟ ସେଣ୍ଟର ପୁରସ୍କାର ଲାଭକରିବା ସହ ବିଭିନ୍ନ ସାହିତ୍ୟ ଅନୁଷ୍ଠାନଦ୍ୱାରା ସମ୍ମାନିତ ହୋଇଛନ୍ତି ।